# ବହିତ୍ର-୪

୧୯୮୭

ଭଂଜ ଯୁବ ସାହିତ୍ୟ ସଂସଦ : ମୁଖପତ୍ର

॥ ସଂପାଦକ ॥

ଅଧ୍ୟାପକ ନିଶାକର ପାଢ଼ୀ

॥ ପ୍ରଚ୍ଛଦ ॥

ବସନ୍ତ ପଟ୍ଟନାୟକ

Digitized by PPRACHIN, SOA

## ॥ ଆମର ପରବର୍ତ୍ତୀ ସଂଖ୍ୟା ॥

- ବହ୍ନିତ୍ର—୬ : ପ୍ରେମ ସୁଧାନିଧି ବିଶେଷାଙ୍କ
- ବହ୍ନିତ୍ର—୭ : ସୁଭଦ୍ରା ପରିଣୟ ବିଶେଷାଙ୍କ
- ବହ୍ନିତ୍ର—୮ : ରସିକ ହାରାବଳୀ ବିଶେଷାଙ୍କ
- ବହ୍ନିତ୍ର—୯ : ବୈଦେହୀଶ ବିଳାସ ବିଶେଷାଙ୍କ:

ଦ୍ୱିତୀୟ ଭାଗ

---

—ଲେଖକ, ପାଠକ ଏବଂ ଶୁଭେଚ୍ଛୁଙ୍କୁ......

॥ କେତେକ ଅନିବାର୍ଯ୍ୟ କାରଣ ବଶତଃ 'ବହ୍ନିହ'ର ପରବର୍ତ୍ତୀ ସଂଖ୍ୟା ପ୍ରକାଶ ପାଇବାରେ ସାମାନ୍ୟ ବିଳମ୍ବ ଘଟିପାରେ । ପୂର୍ବରୁ ସେଥିପାଇଁ ଆମେ କ୍ଷମା ମାଗି ନେଉଛୁ ॥

—ସଂପାଦକ—

---

॥ ଯୋଗାଯୋଗ ॥

ସଂପାଦକ : ବହ୍ନିହ
ଭଂଜନଗର-୭୬୧୧୨୬
ଗଂଜାମ



Digitized by PPRACHIN, SOA



ଶ୍ରୀ ଶ୍ରୀ ଶ୍ରୀ ବାଘ୍‌ଦେବୀ (ବ୍ୟାଘ୍ରଦେବୀ)

କୁଲଡ଼



॥ ବନ୍ଦନ ॥

Digitized by PPRACHIN, SOA

ଭଂଜ ଯୁବ ସାହିତ୍ୟ ସଂସଦ

ଭଂଜନଗର

ଗଂଜାମ



ଉପଦେଷ୍ଟା

ସତ୍ୟେନ୍ଦ୍ର ରଞ୍ଜନ ଦାସ

ସଭାପତି :

ରବୀନ୍ଦ୍ର ନାଥ ଜେନା

ଉପ-ସଭାପତି :

ପ୍ରଶାନ୍ତ ମହାନ୍ତି

ସଂପାଦକ :

ଅଧ୍ୟାପକ ଲମ୍ବୋଦର ପାଣିଗ୍ରାହୀ

ସହ-ସଂପାଦକ :

ସଚ୍ଚିଦାନନ୍ଦ ସ୍ୱାଇଁ

ଶୂଳପାଣି ଶତପଥୀ





ସଭ୍ୟବୃନ୍ଦ :

ଅଧ୍ୟାପକ କୁମୁଦକାନ୍ତ ରଥ

ଏ. ବିଶ୍ୱନାଥ ପାତ୍ର

କୈଳାସ ଚନ୍ଦ୍ର ବେହେରା

ଦୁଃଖୀଶ୍ୟାମ ପ୍ରଧାନ

ବଂଶୀଧର ଷଡ଼ଙ୍ଗୀ

ପଞ୍ଚାନନ ପାଳ

ଲକ୍ଷ୍ମୀକାନ୍ତ ପଣ୍ଡା

ସୀମାଞ୍ଚଳ ବେହେରା

କୃଷ୍ଣଚନ୍ଦ୍ର ପ୍ରଧାନ

ପ୍ରଦୀପ ପଟ୍ଟନାୟକ



Digitized by PPRACHIN, SOA

ଆପଣ ପଢ଼ିଲେଣି କି ?

ଭଂଜ ଯୁବ ସାହିତ୍ୟ ସଂସଦର ସଭାପତି

କବି ରବି ଜେନାଙ୍କର

କବିତା ସଂକଳନ

# ॥ ଅନେକ ଲୁହର କାନ୍ଦ ॥

ଅନନ୍ୟ କବିତାର ବନ୍ୟା
ସ୍ରୋତରେ ଭସାଇନେବ ଆପଣଙ୍କୁ...

---

॥ ପ୍ରକାଶ ପାଇଲା — ପ୍ରକାଶ ପାଇଲା ॥

# ॥ ପିଂଡଦାନ ॥

ଏକ ମନୋଜ୍ଞ କବିତା ସଂକଳନ

କବି ପ୍ରଶାଂତ ମହାଂତି

(ଭଂଜଯୁବ ସାହିତ୍ୟ ସଂସଦର ଉପ-ସଭାପତି)

ଅନିର୍ବଚନୀୟ ଦାର୍ଶନିକତା...
...ଦୁର୍ଲଭ ଧାବର ଭୁବନରେ ଏଇ ପିଂଡଦାନ

Digitized by PPRACHIN, SOA

# ବହ୍ନିତ୍ର ସମ୍ବାଦ

## ।। ପ୍ରକାଶିତ ପତ୍ରିକା ।।

୧—ବହ୍ନିତ୍ର— ୧ ଉପେନ୍ଦ୍ର ଭଞ୍ଜ ବିଶେଷାଙ୍କ
୨—ବହ୍ନିତ୍ର— ୨ ଲାବଣ୍ୟବତୀ ବିଶେଷାଙ୍କ—୧
୩—ବହ୍ନିତ୍ର— ୩ ଲାବଣ୍ୟବତୀ ବିଶେଷାଙ୍କ—୨
୪—ବହ୍ନିତ୍ର— ୪ ବୈଦେହୀଶ ବିଳାସ ବିଶେଷାଙ୍କ
୫—ବହ୍ନିତ୍ର— ୫ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ବିଶେଷାଙ୍କ

## ।। ପ୍ରକାଶିତ ଗ୍ରନ୍ଥ ।।

୧—ଉପେନ୍ଦ୍ର ଭଞ୍ଜ — ବଂଶାବଳୀ ଓ ସୃଷ୍ଟି ସୌନ୍ଦର୍ଯ୍ୟ
ମୂଲ୍ୟ ୩୦/- ଟଙ୍କା

୨—ଲାବଣ୍ୟବତୀ — ସୃଷ୍ଟି ସୌନ୍ଦର୍ଯ୍ୟ
ମୂଲ୍ୟ ୪୫/- ଟଙ୍କା

୩—ବୈଦେହୀଶ ବିଳାସ — ସୃଷ୍ଟି ସୌନ୍ଦର୍ଯ୍ୟ
ମୂଲ୍ୟ ୨୫/- ଟଙ୍କା

---

"While giving an account of Oriya literature, speaks of Ghumusar, a division in Ganjam, as a tract, "which even to the present day is celebrated as the home of the purest form of the language",

—John Beams.

Comparative Grammer of Modern Aryan Languages,
Vol—1, P 88

(An extract from 'The Oriya Movement'—P-105)

Digitized by PPRACHIN, SOA

## କୃତଜ୍ଞତା ସ୍ୱୀକାର

ଅଧ୍ୟକ୍ଷ ଶ୍ରୀଯୁକ୍ତ ଲକ୍ଷ୍ମଣ କୁମାର ପରିଡ଼ା
ପ୍ରାଧ୍ୟାପକ ଶ୍ରୀଯୁକ୍ତ ଏମ୍. ଶଙ୍କର ରାଓ
ଶ୍ରୀଯୁକ୍ତ ରାଧାମୋହନ ଷଡ଼ଙ୍ଗୀ
ଡକ୍ଟର ସୁରେନ୍ଦ୍ରନାଥ ଚନ୍ଦ୍ର
ଅଧ୍ୟାପକ ରାଧାମୋହନ ଦାସ
ଡକ୍ଟର ହରିହର ମିଶ୍ର
ଶ୍ରୀମାନ୍ ରାଧାମୋହନ ବେହେରା
ଶ୍ରୀମାନ୍ ଏସ୍. ଇନ୍ଦ୍ରମଣି ରେଡ୍ଡି
ଶ୍ରୀମାନ୍ ବିଭୂତି ଭୂଷଣ ଆଚାର୍ଯ୍ୟ
ଶ୍ରୀମାନ୍ ଶ୍ରୀରାମ ପାଲ

---

ଓଡ଼ିଶା ସାହିତ୍ୟ ଏକାଡ଼େମୀ "ବନ୍ଧନ" ପଞ୍ଚମ ସଂଖ୍ୟା ନିମନ୍ତେ ସାତଶହ ଟଙ୍କାର ଆର୍ଥିକ ଅନୁଦାନ ଦେଇଥିବାରୁ ଭଂଜ ଯୁବ ସାହିତ୍ୟ ସଂସଦ ଏକାଡ଼େମୀର ସଂପାଦକ ଏବଂ କର୍ମକର୍ତ୍ତାଙ୍କୁ କୃତଜ୍ଞତାର ସହିତ ଧନ୍ୟବାଦ ଜ୍ଞାପନ କରୁଛି ।

॥ ସଂପାଦକ ॥

Digitized by PPRACHIN, SOA

॥ କହେ ଉପଇନ୍ଦ୍ର ମୋ' ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ
ଜାତକଲେ କ୍ଷୀରାର୍ଣ୍ଣବୁଁ ସୁଧା ମୋର ଗିରାର୍ଣ୍ଣବୁଁ ରସଗୀତ ॥

● କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ଷୋଡ଼ଶ ଛାନ୍ଦ : ତ୍ରିଂଶ ପଦ ●

Digitized by PPRACHIN, SOA

"ଏକ କଥାରେ କହିଲେ ବୁଝାଯିବ, ଉପେନ୍ଦ୍ର ଯେପରି କି ନିଜ ସାହିତ୍ୟ ସାଧନାରେ ଜାତିକି କହିଦେଲେ—"ଆରେ ଓଡ଼ିଆଏ, ଧର୍ମ ନାମରେ ପର ଛାଟି ଫିଟାଅ ନାଇ-ପର ଘର ଭାଙ୍ଗ-ନାଇ-ନିଜ ଘରେ ବିଭ୍ରାଟ, ବିପ୍ଳାତ ସୃଷ୍ଟି କରନାଇ । ଏହା ଓଡ଼ିଆ ଧର୍ମ ନୁହେ । ଯୌନ-ଚର୍ଯ୍ୟାର ବିଳାସ ଯେବେ ଗୃହଁ, ତେବେ ଧର୍ମ ନାମରେ, କୃଷ୍ଣଙ୍କ ନାମରେ, ଏକଥା କାହିଁକି ? ପୂର୍ଣ୍ଣ ସାମାଜିକ ଓ ଗାର୍ହସ୍ଥ୍ୟ ସଂଯମରେ ରହି ଘରେ ମଧ୍ୟ ସେ ସୁବିଧା କରାଯାଇପାରେ ।"

**॥ ପଣ୍ଡିତ ନୀଳକଣ୍ଠ ଦାସ ॥**

ଓଡ଼ିଆ ସାହିତ୍ୟର କ୍ରମପରିଣାମ,
ପୃ—୭୩୮
(ନବଭାରତ : ଏପ୍ରିଲ : ୧୯୫୦)



Digitized by PPRACHIN, SOA



RAJ BHAVAN
BHUBANESWAR
January 13, 1986

**Dr. B. N. Pande**
**Hon'ble Governor of Orissa**

## MESSAGE

I am glad that the Bhanja Yuba Sahitya Sansad, Bhanjanagar is bringing out a quarterly publication entitled 'Bahitra' to acquaint the readers with the richness and proveundity of Bhanja Literature.

Kabi Samrat Upendra Bhanja, who is known as the poet laureate of Oriya literature, is acknowledged as the most popular poet of Orissa. His compositions which are unique for their rhythmical structure and sweet lyricism are universally acclaimed and are sung by the farmer as well as by the coutesan, by the elite as well as by the under-privileged with the same depth and animation.

I commend the sincere efforts made by the above organisation to acquaint the public with Bhanja literature and earnestly hope that their efforts will succeed in focussing the sublime beauty and universal appeal in the poetry of Kabi Samrat Upendra Bhanja.

I wish the organisers all success in their noble endeavour.

B. N. PANDE
Governor, Orissa.

Digitized by PPRACHIN, SOA

ଡ଼ଃ କୃଷ୍ଣବିହାରୀ ତ୍ରିପାଠୀ— ପ୍ରଫେସର୍, ପଡ଼ା: କଟକ ।

"× / × । 'ବନ୍ଧନ' × × ପ୍ରକାଶିତ ହେବା ଦ୍ୱାରା ଭଞ୍ଜୀୟ ସମାଲୋଚନା ସାହିତ୍ୟ ବିଶେଷତଃ ସମୃଦ୍ଧି ଲାଭ କରିଅଛି । ଓଡ଼ିଆ ଏମ୍. ଏ. କକ୍ଷର ପ୍ରତ୍ୟେକ ଛାତ୍ର ଓ ଛାତ୍ରୀ, ବି.ଏ., ଏମ୍.ଏ ଶ୍ରେଣୀରେ ପଢ଼ାଉଥିବା ଓଡ଼ିଆ ଅଧ୍ୟାପକମାନେ ଓ ଭଞ୍ଜୀୟ ରଚନା ବଳୀର ପାଠକମାନେ ବନ୍ଧନ-ସମୂହରେ ଯାହାଙ୍କର ନୂତନ ଅବଲୋକର ଦିଗ୍‌ଦର୍ଶନ ଲାଭ କରିବେ । XXX ।"

ଡ଼ଃ କୃଷ୍ଣବିହାରୀ ଧାଶ— କଟକ - ୧୨ ।

"XXX । 'ବନ୍ଧନ' ଯଥା ସମ୍ଭବ ପୂର୍ବମାନ ରକ୍ଷା କରିଅଛି । କିନ୍ତୁ ତାରିଖ ନ ମିଳିଲା ବୋଲି ଖାଲି ହେବା ଉଚିତ ନୁହେଁ । କେଉଁ ବଡ଼ କବିଙ୍କର ତାହା ଠିକ୍‌ଭାବେ ମିଳିଛି ? XXX ସମ୍ପାଦକୀୟରେ 'ଅସମାଧିତ' ସବୁ ବିଜ୍ଞ ଗବେଷକଗଣଙ୍କୁ ଲେଖିବା ଠିକ୍ ହେବ କି ? XXX ।"

ଡ଼ଃ କାହ୍ନୁଚରଣ ମିଶ୍ର— ବିବେକାନନ୍ଦ ମାର୍ଗ - ଭୁବନେଶ୍ୱର ।

"XXX । ଏପରି ଏକ ସାଧୁପ୍ରୟାସ ଓ ଅଭିନବ ପରିକଳ୍ପନା ଏଥିପୂର୍ବରୁ ଆଉ କୌଣସି ଅନୁଷ୍ଠାନ ବା ବ୍ୟକ୍ତି ବିଶେଷ କଲାଭଳି ମୋର ଦୃଷ୍ଟିରେ ପଡ଼ିନାହିଁ । XXX ଭବିଷ୍ୟତରେ ତୁମେ ସାରା ଓଡ଼ିଶାର ପାଠକସମାଜକୁ ଆକୃଷ୍ଟ କରିପାରିବ । ଆଲୋଚନା କେବଳ ଗଭୀର ହୋଇନାହିଁ । ଏହା ସୁଦୂର ପ୍ରସାରୀ ମଧ୍ୟ ହୋଇପାରିଛି । XXX ।"

ଡ଼ଃ ବେଣୀ ମାଧବ ପାଢ଼ୀ— ଅଧ୍ୟକ୍ଷ - ସିଟିକଲେଜ - ବ୍ରହ୍ମପୁର ।

"XXX । ଏତାଦୃଶ ଉଦ୍ୟମ ଯେ ସର୍ବଥା ପ୍ରଶଂସନୀୟ, କହିବା ଅନାବଶ୍ୟକ ସମୀକ୍ଷା ଗୁଡ଼ିକ ଅତି ଉପାଦେୟ ହୋଇଛି । କିନ୍ତୁ, ମୋର ମନେହୁଏ, ଭଞ୍ଜ ସାହିତ୍ୟର ଯେଉଁ ଦିଗ ଗୁଡ଼ିକ ଅଦ୍ୟାପି ଅଗୋଚର ରହିଛି; ଯଥା—ଭଞ୍ଜୀୟ କାବ୍ୟରେ ଧ୍ୱନି ପ୍ରୟୋଗ, ଭଞ୍ଜ ସାହିତ୍ୟର ଚିରନ୍ତନତା, ଭଞ୍ଜୀୟ କାବ୍ୟରେ ମାନବିକ ମୂଲ୍ୟବୋଧ ପ୍ରଭୃତି, ସେ ଗୁଡ଼ିକ ଉପରେ ଦୃଷ୍ଟି ରଖି ଭଞ୍ଜୀୟ ନିବନ୍ଧ



Digitized by PPRACHIN, SOA

ଉପସ୍ଥାପନାର ସମସ୍ତ ଆସିଛୁ । ଏ ଦଗରେ 'ବନ୍ଧନ'ର ଯେଉଁ ଦାୟିତ୍ୱ,ତାହା ସେ ସୁରୂରୁ ରୂପେ ସମ୍ପନ୍ନ କରିପାରିବ ବୋଲି ମୋର ବିଶ୍ୱାସ । X X X ।"

ଡ଼ଃ ଗୋପାଳଚନ୍ଦ୍ର ମିଶ୍ର— ମଧୁପାଟଣା-କଟକ ।

" X X X । ସଂକଳନରେ ଆଉ ଗୋଟିଏ ଦୁଇଟି ପାମାଣିକ ପ୍ରବନ୍ଧ ସ୍ଥାନ ପାଇଥିଲେ ଭଲ ହୋଇଥାନ୍ତା । ଯାହା ହେଉ ତୁମର ଦଶଶ୍ରମ ଓ ନିଷ୍ଠା ସ୍ୱୀକାର୍ଯ୍ୟ । X X X ।"

ଅଧ୍ୟକ୍ଷ ପ୍ରାଧ୍ୟାପକ ପଠାଣି ପଟ୍ଟନାୟକ— ଖ୍ରୀଷ୍ଟ କଲେଜ-କଟକ ।

"X X X । 'ବନ୍ଧନ'ର ଅନ୍ତରାଳରେ ସମସ୍ତ ସାଧନା ଓ ପ୍ରଚେଷ୍ଟାକୁ ସାଧୁବାଦ ଜଣାଉଛୁ । X X X ।"

ଡ଼ଃ ତାରିଣୀଚରଣ ଦାସ— ରେଭେନ୍‌ସା କଲେଜ-କଟକ ।

"ଆପଣଙ୍କ ଉଦ୍ୟମ ଅତ୍ୟନ୍ତ ପ୍ରଶଂସନୀୟ । X X X । କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ "ମଧ୍ୟଯୁଗୀୟ କାବ୍ୟ ରୂଢ଼ି"ର ଆକର କହିହେବ । ଏହି ଦୃଷ୍ଟିରୁ କେହି ଲେଖାଟିଏ ଲେଖି ପାରିଲେ ଭଲ ହୁଅନ୍ତା ।"

ଡଃ ବନମାଳୀ ରଥ—ପାରଳାଖେମୁଣ୍ଡି-ଗଞ୍ଜାମ ।

X X X X X X X X X ।

ବନ୍ଧନ ପ୍ରକାଶନ ଗୋଟିଏ ସଦୁଦ୍ୟମ । ଏଥିପାଇଁ ଭଞ୍ଜ ଯୁବ ସାହିତ୍ୟ ସଂସଦର ନିଷ୍ଠା ନିଶ୍ଚୟ ଅଭିନନ୍ଦନୀୟ । ମୋଟାମୋଟି ଭାବେ ଲେଖା ଗୁଡ଼ିକର ମାନ ଉନ୍ନତ ଓ ରୁଚିପୂର୍ଣ୍ଣ । ଓଡ଼ିଆ ସମାଲୋଚନା ସାହିତ୍ୟରେ ଏ ଅକ୍ଷର-କୀର୍ତ୍ତିର ସ୍ୱାକ୍ଷର ଚିରଦିନ ପାଇଁ ଅମର ହୋଇ ରହିବ । ଭଞ୍ଜୀୟ ପ୍ରତିଭା ପ୍ରକାଶନରେ ଏହାର ମହାର୍ଘ ଅବଦାନ ଅବିସମ୍ବାଦିତ ।"

ଡଃ କୃଷ୍ଣଚରଣ ବେହେରା— ଫୁଲବାଣୀ କଲେଜ, ଫୁଲବାଣୀ ।

"X X X । ଆପଣମାନେ ମୁଖ୍ୟତଃ ମୁଗ୍‌ଧ ଦୃଷ୍ଟିରେ ଭଞ୍ଜଙ୍କର ବିଗ୍ରହ କରି ଚାଲିଛନ୍ତି X X X ମୁଗ୍‌ଧ ଦୃଷ୍ଟିରେ ନୁହେଁ, ମୁକ୍ତ ଦୃଷ୍ଟିରେ ହିଁ ଭଞ୍ଜଙ୍କର ବିଗ୍ରହ କରିବାକୁ ହେବ । ତାହାହେଲେ ଯାଇଁ ଭଞ୍ଜ ସାହିତ୍ୟର ଯଥାର୍ଥ ମୂଲ୍ୟାଙ୍କନ ହୋଇପାରିବ । X X X ।"



Digitized by PPRACHIN, SOA

ଡଃ ରଘବାନନ୍ଦ ନାୟକ— ଅଧ୍ୟକ୍ଷ-ସମ୍ବଲପୁର ।

"X X X । 'ବନ୍ଧନ' ପତ୍ରିକାଟି ପ୍ରକୃତରେ ଭଞ୍ଜ ସାହିତ୍ୟ ଗବେଷଣା କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ତେଣୁ ଆପଣମାନଙ୍କୁ ମୁଁ ଅଭିନନ୍ଦନ ଜଣାଉଛି ।"

ଶ୍ରୀଯୁକ୍ତ କେଶବ ଚନ୍ଦ୍ର ମେହେର— ସୋନପୁର ରାଜ-ବଲାଙ୍ଗୀର ।

"X X X । ଆପଣମାନଙ୍କ ଏତାଦୃଶ ମହତ୍ ଉଦ୍ୟମ ଏକାନ୍ତ ଅଭି-ନନ୍ଦନୀୟ । X X X ।"

ଡଃ ଅଭିରାମ ସାହୁ— ରାଉରକେଲା-ସୁନ୍ଦରଗଡ଼ ।

"X X X । ଭଞ୍ଜ ସାହିତ୍ୟ ଅନୁରାଗୀମାନଙ୍କ ବୈଦେଶିକ ଶଳାବର ଉଚ୍ଚ କୋଟୀର ଆଲୋଚନାଗୁଡ଼ିକ ବହୁ ଦିଗ୍‌ଦର୍ଶନର ସୂଚନା ଦେଇଅଛି । X X X ଦୁଃଖର ବିଷୟ ସେହି ଆଲୋଚନା ଗୁଡ଼ିକ 'ବନ୍ଧନ' ପରି ସଙ୍କଳିତ ନ ହୋଇ ପାରୁଥିବାରୁ ସାହିତ୍ୟ ଗ୍ରନ୍ଥାଗାରରେ ତାହାର ଅଭାବ ଅନୁଭୂତ ହୁଏ । X XX ଏହା ନିଃସନ୍ଦେହରେ ଭଞ୍ଜ ସାହିତ୍ୟର ପାଠକ,ସମାଲୋଚକ ତଥା ଗବେଷକଙ୍କ ପାଇଁ ଏକ ଉପାଦେୟ ପତ୍ରିକା । X X X ।"

ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ— ଶ୍ରୀକାକୁଳମ୍-ଅନ୍ଧ୍ର

"X X X । ଲୋକଲୋଚନ ଅଗୋଚର ରତ୍ନରାଜିକୁ ଲୋକଲୋଚନ ଗୋଚର କରାଇବାରେ ସମର୍ଥ ହୋଇଛି— ଏହା ଏହାର ପ୍ରଥମ ପ୍ରକାଶରୁ ହିଁ ପ୍ରମାଣିତ ହୋଇଛି । ଏହାର ଗନ୍ଧ ଚିର ନିରବଚ୍ଛିନ୍ନ ରହି ଭଞ୍ଜନଗରକୁ ସାର୍ଥକନାମା କରିବ, ଏହି ଆଶା ପୋଷଣ କରୁଛି । X X X ।"

ଡଃ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି— ଯାଜପୁର ରୋଡ଼-କଟକ ।

"X X X । ଆର୍ତ୍ତିବାବୁ ଏବଂ ବଛନ୍ଦ ବାବୁଙ୍କ ପରେ ତୁମେ ହେଉଛ ତୃତୀୟ ବ୍ୟକ୍ତି, ଯେ' କି ଭଞ୍ଜଙ୍କୁ ଯଥାର୍ଥ ଦିଗରୁ ଚିହ୍ନିବାର ଆୟୋଜନ କରିପାରିଛ । 'ବନ୍ଧନ'ର ସମସ୍ତ ସ୍ରଷ୍ଟା ଯେପରି ପ୍ରଶଂସା ଭାଜନ— ସେ ସମସ୍ତଙ୍କ ସମ-ସ୍ତରରେ ବାଦ୍ଧ ଏକାନ୍ତ ପରିବେଷଣରେ ଯେହିପରି ତୁମର ସାଧନା ପ୍ରଶଂସାର୍ହ । X X X ।"



Digitized by PPRACHIN, SOA

ଡ଼ାକ୍ତର ଶୈଳେଶ୍ୱର ନନ୍ଦ— ସଂପାଦକ : କଳିଙ୍ଗ ଭାରତୀ-କଟକ ।

" X X X । ଅତ୍ୟନ୍ତ ଆନନ୍ଦିତ ହେଲି ଆପଣଙ୍କର ଏକାଗ୍ର ପ୍ରଚେଷ୍ଟା ଦେଖି । X X X ଆପଣମାନେ ଯେ ଆପଣଙ୍କର ନିରବଚ୍ଛିନ୍ନ ସାଧନାରେ ଆଗେଇ ଚାଲିଛନ୍ତି, ଏହା ନିଶ୍ଚୟ ଗର୍ବ ଓ ଗୌରବର ବିଷୟ । X X X ।"

ଡ଼ଃ ସରୋଜ କୁମାର ସୁଆର—ଲରମ୍ବା-ସମ୍ବଲପୁର ।

" X X X । 'ବନ୍ଧନ'ର ପ୍ରକାଶିତ ବିଶେଷାଙ୍କ ମାନଙ୍କର ମାନ ସବୁ ଦୃଷ୍ଟିରୁ ଖୁବ୍ ଉଚ୍ଚକୋଟୀର— ଏଥିରେ ସନ୍ଦେହ ନାହିଁ । ଆମ ପଶ୍ଚିମାଞ୍ଚଳର ସହର ମାନଙ୍କରେ 'ବନ୍ଧନ'ର ବ୍ୟାପକ ପ୍ରଚାରର ଆବଶ୍ୟକତା ରହିଛି । X X X ।"

ଶ୍ରୀମାନ୍ ଶିଶିର କାନ୍ତ ଷଡ଼ଙ୍ଗୀ— ବାଣୀବିହାର- ଭୁବନେଶ୍ୱର ।

" X X X 'ବନ୍ଧନ' ଗୁଡ଼ିକ ଏଠି ବହୁତ ପ୍ରଶଂସନୀୟ ହୋଇଛି । X X X ଓଡ଼ିଆ ସାହିତ୍ୟରେ ଭବିଷ୍ୟତରେ ଯଦି ଭକ୍ତି ବଞ୍ଚି ରହିବେ, ତାହାହେଲେ ଏହି "ବନ୍ଧନ" ମାଧ୍ୟମରେ ହିଁ ବଞ୍ଚି ରହିବେ । X X X ।"

ଶ୍ରୀମାନ୍ ବିଭୂତି ଭୂଷଣ ଆଚାର୍ଯ୍ୟ – ନୟାଗଡ଼-ପୁରୀ ।

" X X X । ବନ୍ଧନ-୧ ଯେତିକି ଉତ୍ତମ, ବନ୍ଧନ-୨ ସେତିକି ରସସିକ୍ତ, ବନ୍ଧନ-୩ ଅତ୍ୟଧିକ ରସ ଜୁଡ଼ବୁଡ଼, ପୁଣି ବନ୍ଧନ-୪ ତତୋଽଧିକ ବିଳାସ ଓ ପ୍ରାଚୁର୍ଯ୍ୟଭରା । X X X 'ବନ୍ଧନ'ର ୫ମ ସଂଖ୍ୟାରେ ଶ୍ରୀଜଗନ୍ନାଥଙ୍କର ୧୦୦୦ ବର୍ଷରେ ଥରେ ହେଉଥିବା 'ରଘୁନାଥ ବେଶ'ର ତୈଳଚିତ୍ର କିମ୍ବା ରଘୁନାଥ ଜୀଉଙ୍କ ଫଟୋ ସାଙ୍ଗକୁ ଶ୍ରୀଜଗନ୍ନାଥଜୀଉଙ୍କ ଫଟୋ ସ୍ଥାନ ଦିଆଯାଉ । XXX ।





Digitized by PPRACHIN, SOA

# ସମ୍ପାଦକୀୟ

ଚିଠିରେ ଶ୍ରେଷ୍ଠ ପ୍ରସ୍ତାବଟିଏ ଆମକୁ— 'ଭଂଜ ଯୁବ ସାହିତ୍ୟ ସଂସଦ ତରଫରୁ ପ୍ରତିବର୍ଷ ଭଂଜ ଜୟନ୍ତୀ ପାଳନ କରାଯାଉ ।' ଓଡ଼ିଶାର ଅକ୍ଷାଂଶ ଦ୍ରାଘିମାରେ, ସହରରୁ ମଫସଲ ପର୍ଯ୍ୟନ୍ତ : ସର୍ବତ୍ର ଆଜି ଯେତେବେଳେ ଋତୁଗତ ପର୍ବ ପରି ଭଂଜ ଜୟନ୍ତୀ ଏକ ସାଧାରଣ ବାର୍ଷିକ ଉଲ୍ଲାସରେ ପରିଣତ ହୋଇଛି, ଭଂଜଭୂମିରେ ଭଂଜଙ୍କ ନାଁରେ ପ୍ରତିଷ୍ଠିତ ଏଇ ସାହିତ୍ୟ ସଂସ୍ଥା ବା ପତ୍ରିକା ତରଫରୁ ଭଞ୍ଜ ଜୟନ୍ତୀ ପାଳନ କରା ନଯିବାଟା, ଅବଶ୍ୟ ଆମର ସେହି ପ୍ରିୟ ପାଠକଙ୍କୁ ବିସ୍ମିତ କରିବା ସ୍ୱାଭାବିକ । ଭଂଜ ଜୟନ୍ତୀର ଆୟୋଜନ କ୍ରମରେ ବକ୍ତୃତା ଏବଂ ନୃତ୍ୟ ଗୀତାଦି, 'ଭଂଜକାବ୍ୟପରି ବେଶ୍ ରସାଳ ତଥା ରୋମାଣ୍ଟିକ୍ ହୋଇଉଠୁଛି । ତଥାକଥିତ ନେତାମାନଙ୍କର ସୁଲଭ ସାନ୍ନିଧରେ ଅଭିଜ୍ଞୀୟ ଅନର୍ଗଳ ଆଲୋଚନା ସତ୍ତ୍ୱେ, ଅନୁଷ୍ଠାନମାନଙ୍କୁ ଆର୍ଥିକ ଅନୁଦାନ ମିଳିବାର ଯଥେଷ୍ଟ ସମ୍ଭାବନା ବି ରହିଛି । ଭଞ୍ଜ ଜୟନ୍ତୀର ବାହାନାରେ ବହୁ ସ୍ଥଳରେ ବ୍ୟକ୍ତିଗତ ସ୍ୱାର୍ଥ ବି ସଂଶ୍ଳିଷ୍ଟ ହୋଇପଡୁଛି । ଫଳତଃ କବିସମ୍ରାଟର ସେଇ ସର୍ବାଙ୍ଗସୁନ୍ଦର ଛନ୍ଦର ଇଲକାଟି ଅବାଞ୍ଛିତ ଆଲୋଚନାରେ ବେଳେ ବେଳେ ବିକଳାଙ୍ଗ ବି ହୋଇଉଠୁଛି । ଜୟନ୍ତୀ— ଯାହା ଜନ୍ମତିଥିର ଉତ୍ସବ; ଓଡ଼ିଶା ସାରା ତା'ର ଯଥେଚ୍ଛା ପରିପାଳନ, ସତେ ଯେପରି ଭଞ୍ଜ କବିର ଆବିର୍ଭାବକୁ ଏକ ଦୁର୍ଭାଗ୍ୟକର ଉପହାସ । ଏସବୁ ସତ୍ତ୍ୱେ; ବର୍ଷକୁ ଥରେ ଆଡ଼ମ୍ବରପୂର୍ଣ୍ଣ ଆଲୋକିତ ହୋ-ହଲ୍ଲା ମଧ୍ୟରେ ଓଡ଼ିଆଙ୍କର ଭଞ୍ଜପ୍ରୀତି ଯେଭଳି ପ୍ରକାଶ ପାଏ, ଆମେ ଭଞ୍ଜ ଭୂମିର ଦାୟାଦ ଭାବରେ ସେଥିପାଇଁ ଗର୍ବିତ ।

Digitized by PPRACHIN, SOA

ତଥାପି ଆମେ ଭଞ୍ଜଜୟନ୍ତୀଠୁ ଦୂରରେ ରହୁଛୁ । କାରଣ ବିଦ୍ୱାନ ବକ୍ତାମାନଙ୍କର ମୂଲ୍ୟବାନ ଶବ୍ଦମାନଙ୍କୁ ଫମ୍ପା ଆକାଶରେ ନିରର୍ଥକ ଭାବେ ଅଯଥାରେ ହଜେଇ-ଦେବାର ଅପପ୍ରୟାସ ଆମର ନାହିଁ । ମହାଶୂନ୍ୟରେ ନୁହେଁ, ବରଂ ମହାକାଳର ପୃଷ୍ଠରେ,ଭଞ୍ଜୀୟ ଅଭିଲେଖକୁ ଉତ୍କୀର୍ଣ୍ଣ କରିବା ନିମନ୍ତେ, ଆମର ଅନନ୍ୟ ଇଚ୍ଛାରୁ ସୃଷ୍ଟି ହୋଇଛି 'ବନ୍ଧନ' ନିଃଶବ୍ଦ ଶବ୍ଦର ଉତ୍କୂଳ ସ୍ରୋତ ମଧ୍ୟରେ ଚିରକାଳ ଭାସିବା : ତା'ର ଇଚ୍ଛା ।

ଭଞ୍ଜ ଜୟନ୍ତୀ ସମ୍ପର୍କରେ 'ଝଂକାର' ୧୯୭୭ ଜୁଲାଇମାସର ସମ୍ପାଦକୀୟରୁ ପଦେ— "ଦୁଃଖର କଥା, ଆମେ ଆଜିଯାଏ ଭଞ୍ଜକବି,ସମ୍ରାଟ କି ପ୍ରହସ୍ତ, ଶ୍ଳୀଳ କି ଅଶ୍ଳୀଳ, ରୀତିବାଦୀ ନା ଭାବବାଦୀ, ପ୍ରେମିକ କି କାମୁକ— ଏହାରି ଉପରେ ବାରମ୍ବାର ବାହ୍ୟସ୍ତମ୍ଭୀୟ ବାଗାଡ଼ମ୍ବର ବା ପ୍ରଗଲ୍‌ଭ ବଚନିକାମାନ ଏକ କଣ୍ଠରେ ଉଚ୍ଚାରଣ କରି ଆସୁଛୁ । ଏହି ସାରସତ୍ତ୍ୱହୀନ ପୌନଃପୁନିକତାରେ ଉଦ୍‌ଗାତା, ହୋତା ଓ ବକ୍ତାମାନଙ୍କୁ ଛାଡ଼ିଦେଲେ – ଶ୍ରୋତାମାନେ କିନ୍ତୁ ମହାକ୍ଳାନ୍ତ ଓ ଅବସନ୍ନ । ଅଧିକାଂଶ ଉଦ୍‌ଗାତା ଓ ବକ୍ତାମାନଙ୍କଠାରୁ କିଛି ପ୍ରତିନିଧିତ୍ୱ ଆଶା କରିବା ବୃଥା । କାରଣ ସେମାନେ ବକ୍ତୃତା ଗାଇବାର ବା ବଚନିକାମାନ ଝାଡ଼ିବାର ଯାନ୍ତ୍ରିକ ରେକର୍ଡ । X X X ଭଞ୍ଜ ଜୟନ୍ତୀ ଉତ୍ସବ ପରିଚାଳନାରେ ଦାୟିତ୍ୱହୀନ ଯାନ୍ତ୍ରିକତା ଓ ଅତି ମୁଗ୍‌ଧଆବେଗ ବାହୁଲ୍ୟ ପଶିଯିବା ଫଳରେ X X X X" ଇତ୍ୟାଦି ଇତ୍ୟାଦି । ଓଡ଼ିଶାର ଜଣେ ପ୍ରଖ୍ୟାତ୍‌ ଭଞ୍ଜବିତ୍‌ ଡ଼କ୍ଟର୍‌ ବେଣୀମାଧବ ପାଢ଼ୀ ୧୯୭୬ ସାଲ୍‌ରେ 'ଧରିତ୍ରୀ'ର ସାଧାରଣତନ୍ତ୍ର ଦିବସ ବିଶେଷାଙ୍କରେ "ସମ୍ରାଟଙ୍କ ନିବେଦନ"ଟିଏ ଜଣାଇଥିଲେ— "ଗୁରୁଙ୍କ ନାଁକୁ ଭେକ କରି ଯେଉଁମାନେ ଅର୍ଥ ଉପାର୍ଜନ କରନ୍ତି,ଗୁରୁଙ୍କୁ କେନ୍ଦ୍ରକରି'ତମ୍ବୁତୋଫାନ' କରନ୍ତି, ଗୁରୁଙ୍କ ପରମ ଭକ୍ତ ବୋଲି ଉଷ୍ଣୀମ ପିଟନ୍ତି, ସେମାନେ ଗୁରୁଙ୍କ ବାସ୍ତବ ରୂପକୁ ଲୋକ ଚକ୍ଷୁର ଅନ୍ତରାଳରେ ରଖିବା ଛଡ଼ା ଆଉ କ'ଣ କରିଛନ୍ତି ଥରେ ମନେ ପକାନ୍ତୁ ।" ଓଡ଼ିଶାର ଶ୍ରେଷ୍ଠ ସାହିତ୍ୟ ପତ୍ରର ସମ୍ପାଦକ ଏବଂ ଜଣେ ବିଜ୍ଞ ଭଞ୍ଜପ୍ରେମୀ ପ୍ରାଧ୍ୟାପକ ମହାଶୟଙ୍କର ତଥାକଥିତ ଭଞ୍ଜ ଜୟନ୍ତୀ ପ୍ରତି ଯେ କେବଳ ଏ ପ୍ରକାର ବିତୃଷ୍ଣା ରହିଛି, ତାହା ନୁହେଁ; ଆହୁରି ରହିଛି ବି ଅନେକଙ୍କର । ଭଞ୍ଜଜୟନ୍ତୀର ପ୍ରବର୍ତ୍ତକ ବିଚ୍ଛନ୍ଦ ଚରଣଙ୍କର ମହତ୍ତ୍ୱ ସ୍ୱପ୍ନକୁ, ଓଡ଼ିଶାର କୌଣସି ଅନୁଷ୍ଠାନ ବି ସାକାର ରୂପ ଦେବାପାଇଁ ଆଜି ଅକ୍ଷମ । ଏଇ ପ୍ରକାର ଚିନ୍ତାଧାରେ ବୋଧହୁଏ, 'ବନ୍ଧନ'ର ଏ ଅଧମ ସଂପାଦକ ବି ଆକ୍ରାନ୍ତ । ସେଇଥିପାଇଁ କଳା କନା ଗୁଡ଼ା-



Digitized by PPRACHIN, SOA

ହୋଇ ଥୁଆ ଯାଇଥିବା ଉପେନ୍ଦ୍ରଭଞ୍ଜଙ୍କ ଫଟୋ ଦେହରୁ ଧୂଳି ଝାଡ଼ି ବର୍ଷକୁ ଥରେ ନାଚିବା ଅପେକ୍ଷା, ଭଞ୍ଜୀୟ ଶବ୍ଦସମୁଦ୍ରର ଚଳଚଞ୍ଚଳ ତରଙ୍ଗ ସହିତ ନିରବଚ୍ଛିନ୍ନ ସଂପର୍କ ରଖି, ଏଇ 'ବନ୍ଧନ'ରେ ଆମେ ଅହୋରାତ୍ର : ପ୍ରତି ମୁହୂର୍ତ୍ତ ଆହୁଲି ମାରି ମାରି କ୍ଳାନ୍ତ ହେଲେ ବି ଆନନ୍ଦିତ ।

ମୋର ବିଶ୍ୱାସ, ଆପଣ ଏଥର ଆମ ସହ ଏକମତ ହେବେ ॥

---

"କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଉପମା ବିଧାତା ସୃଷ୍ଟିରେ ମିଳିବା ଅସମ୍ଭବ । କେବଳ କବିର କଳ୍ପନାମୟୀ ସୃଷ୍ଟିରେ ତାହା ସମ୍ଭବପର ।"

—— ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ

"କବିସମ୍ରାଟଙ୍କ ଶ୍ରେଷ୍ଠ ଆଲଙ୍କାରିକ କାବ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ"
ଭଂଜ ପ୍ରଭା— ପୃ-୧୦୨

Digitized by PPRACHIN, SOA

# ॥ ଭଞ୍ଜ ବଂଶର ସୃଷ୍ଟି ରହସ୍ୟ ॥

ଶ୍ରୀ ରଘୁନାଥ ରଥ

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଦେଶୀୟ ରାଜ୍ୟ ଘୁମୁସରର ରାଜବଂଶଜ, ଯେଉଁଠାରେ ଭଞ୍ଜ ସଜ୍ଞକ ରାଜାମାନେ ରାଜତ୍ୱ କରୁଥିଲେ । ଘୁମୁସର ବ୍ୟତୀତ ବଉଦ, ଦଶପଲ୍ଲା, କନିକା, କେନ୍ଦୁଝର, ମୟୂରଭଞ୍ଜ ଦେଶୀୟ ରାଜ୍ୟମାନଙ୍କରେ ବି ଭଞ୍ଜ ସଜ୍ଞଧାରୀ ରାଜାମାନଙ୍କର ରାଜୁତି ଥିଲା । ଐତିହାସିକମାନଙ୍କ ମତରେ ଉପରୋକ୍ତ ରାଜ୍ୟମାନଙ୍କରେ ଭଞ୍ଜ ରାଜାମାନେ ଖ୍ରୀଷ୍ଟୀୟ ୪ର୍ଥ ବା ୫ମ ଶତାବ୍ଦୀ ଠାରୁ କ୍ରମାଗତ ଭାବରେ ୧୯୪୭-୪୯ ଯାଏ ପ୍ରାୟ ୧୫୦୦ ବର୍ଷ ଧରି ରାଜତ୍ୱ କରିଥିଲେ । କିନ୍ତୁ ତିବ୍ବତୀୟ ଭାଷାରେ ଲିଖିତ ବୌଦ୍ଧ ଅଙ୍ଗୁତ୍ତର ନିକାୟରୁ ଜଣାଯାଏ ଯେ ବହ୍ଲଲ ଓ ଭଞ୍ଜମାନେ ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀରେ ଓଡ଼ିଶାରେ ଶାସନ କରୁଥିଲେ । ଭଞ୍ଜ ରାଜାମାନେ କେତେକ ସମୟରେ ସ୍ୱତନ୍ତ୍ରଭାବେ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିବା ଅନୁମାନ ସିଦ୍ଧ ହେଲେ ବି, ଅଧିକାଂଶ ସମୟରେ ସେମାନେ କଳିଙ୍ଗ ବା ଉତ୍କଳର ଅଧୀନସ୍ଥ ରାଜା ଥିଲେ । ସାଧାରଣତଃ ସେମାନେ ମଧ୍ୟ ଓଡ଼ିଶାର ପାର୍ବତ୍ୟ ଅଞ୍ଚଳର ଶାସକ ଥିଲେ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟ କୃତି ଦ୍ୱାରା ଭଞ୍ଜ ବଂଶର ଗୌରବ ବହୁତ ବୃଦ୍ଧି ପାଇଥିଲା ଓ ଅଦ୍ୟାବଧି ବି ସେହି ସୁନାମ ଅବ୍ୟାହତ ରହିଛି । ଉପେନ୍ଦ୍ରଙ୍କ ବ୍ୟତୀତ ଧନଞ୍ଜୟ ଭଞ୍ଜ, ଯଦୁମଣି ଭଞ୍ଜ, ଘନ ଭଞ୍ଜ ଏବଂ ପ୍ରଥମ ଓଡ଼ିଆ କବି ବଳଭଦ୍ର ଭଞ୍ଜଙ୍କ ପରି କୃତୀ କବିଙ୍କ ସାହିତ୍ୟ ସମ୍ଭାରରେ ଓଡ଼ିଆ ସାହିତ୍ୟ ପରିପୁଷ୍ଟ । (୧)

ଏହି ବିଖ୍ୟାତ ଭଞ୍ଜ ବଂଶର ସୃଷ୍ଟି ରହସ୍ୟ ଅଦ୍ୟାବଧି ଅଜ୍ଞାତ । ଏହି ବଂଶର ସୃଷ୍ଟି ସମ୍ବନ୍ଧରେ ପ୍ରକୃତ ତଥ୍ୟ ଦେବା ନିମନ୍ତେ ଐତିହାସିକ ତଥା ଗବେଷକମାନେ ସକ୍ଷମ ହୋଇପାରିନାହାନ୍ତି । ବିଭିନ୍ନ ଭଞ୍ଜବଂଶାବଳୀ, ବିରୁଦାବଳୀ ତଥା ଭଞ୍ଜ ନରପତିମାନଙ୍କ ଦ୍ୱାରା ପ୍ରଦତ୍ତ ତାମ୍ର ପତ୍ର ଲେଖରୁ ଜଣାଯାଏ ଯେ ଭଞ୍ଜ ବଂଶ ମୟୂର ଡିମ୍ବ ପ୍ରସୂତ ଏବଂ ବଶିଷ୍ଠ ଋଷିଙ୍କ ଦ୍ୱାରା ପ୍ରତିପାଳିତ । ଏହା କେବଳ କିମ୍ବଦନ୍ତୀ ମାତ୍ର । କିନ୍ତୁ ଉକ୍ତ ବଂଶ ସୃଷ୍ଟି ସମ୍ବନ୍ଧୀୟ ପ୍ରକୃତ ତଥ୍ୟ ତାହା ନୁହେଁ ।

---

୧) ତାରଣୀ ଚରଣ ଗ୍ରନ୍ଥାବଳୀ ପୃ: ୬୮୪ (ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ୧୯୮୦)

Digitized by PPRACHIN, SOA

କେତେକଙ୍କ ମତରେ ରାଜପୁତନାର ଜୟପୁରରୁ ଦୁଇ ଭାଇ ଆସି ଆଦିପୁର ଓ କ୍ୟୋଥପୁର ନାମକ ଦୁଇଟି ରାଜ୍ୟ ପ୍ରତିଷ୍ଠା କରି ରାଜତ୍ୱ କଲେ । ସେମାନେ ଭଞ୍ଜ ଉପାଧି ଗ୍ରହଣ କଲେ । (୨) ଅନ୍ୟ କେତେକଙ୍କ ମତରେ ବଶିଷ୍ଠଙ୍କ କୋଟିଶ୍ୱାଶ୍ରମରୁ ଦୁଇ ଭାଇ ଆସି ବଣାଇର କାଦମ୍ବ ବଂଶ ଓ ମୟୂର ଭଞ୍ଜର ଭଞ୍ଜବଂଶ ପ୍ରତିଷ୍ଠା କରି ରାଜ୍ୟ ଶାସନ କରିଥିଲେ । କିନ୍ତୁ ଉପରୋକ୍ତ ଆଲୋଚନାରେ ଭଞ୍ଜ ଉପାଧି ଗ୍ରହଣ ନିମନ୍ତେ କୌଣସି କାରଣ ଦର୍ଶାଯାଇ ନାହିଁ । ଏହା ବ୍ୟତୀତ ବାମଣ୍ଡା ରାଜ୍ୟର ରାଜକବି ସଚ୍ଚିଦାନନ୍ଦ ତ୍ରିଭୁବନ ଦେବଙ୍କ ଐତିହାସିକ ପୃଷ୍ଠଭୂମି ଉପରେ ରଚିତ "ଆବାହନ" ଓ "ବୀରଗାଥା"ରୁ ଜଣାଯାଏ ଯେ କାଦମ୍ବ କୁଳ ଦାକ୍ଷିଣାତ୍ୟରେ ରାଜତ୍ୱ କରୁଥିଲେ ଏବଂ ଚାଲୁକ୍ୟ ବୀର କାର୍ତ୍ତିବର୍ମାଙ୍କ ଦ୍ୱାରା ପରାସ୍ତ ହୋଇ ଓଡ଼ିଶାର ଉତ୍ତରାଞ୍ଚଳକୁ ଆସି ରାଜ୍ୟ ସ୍ଥାପନ କରିଥିଲେ । (୩) ପ୍ରାଚୀନ ଉତ୍କଳ ଗ୍ରନ୍ଥରୁ ବି ଜଣାଯାଏ ଯେ କାଦମ୍ବ ବଂଶ ଦାକ୍ଷିଣାତ୍ୟରେ ରାଜତ୍ୱ କରୁଥିଲେ । (୪)

ଅନ୍ୟ କେତେକଙ୍କ ମତରେ ଚୀନ୍ତୀର୍ଥ ଯାତ୍ରୀଙ୍କ ଲିଖିତ ଗ୍ରନ୍ଥ ସାଗ ସାମକୋନ୍‌କାଙ୍ଗ୍ ଅନୁଯାୟୀ ମୌର୍ଯ୍ୟ ବଂଶର ଉତ୍ପତ୍ତି ମୟୂରଶ୍ରେଣୀରୁ ହୋଇଥିବା ଜଣାଯାଏ ଏବଂ ଯେହେତୁ କମ୍ବଦନ୍ତୀ ଅନୁସାରେ ଭଞ୍ଜ ବଂଶ ବି ମୟୂରଶ୍ରେଣୀରୁ ଉଦ୍ଭବ ତେଣୁ ଭଞ୍ଜବଂଶ ମୌର୍ଯ୍ୟ ବଂଶର ଏକ ଶାଖା ହୋଇପାରନ୍ତି । (୫) କିନ୍ତୁ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ବିଶାଖ ଦତ୍ତଙ୍କ ଦ୍ୱାରା ରଚିତ ସଂସ୍କୃତ ନାଟକ 'ମୁଦ୍ରାରାକ୍ଷସ'ରୁ ଜଣାଯାଏ ଯେ ମୌର୍ଯ୍ୟ ବଂଶର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତଙ୍କ ମାତାଙ୍କ ନାମ ଥିଲା ମୁରା

---

୨) ଶ୍ରୀ ଭଞ୍ଜ ଭୂମି କେନ୍ଦୁଝର (ଶ୍ରୀ ବୀନ ବନ୍ଧୁ ଦାସ ୧୯୮୦) ପୃ: ୧୧୪)

୩) ସଚ୍ଚିଦାନନ୍ଦ ଗ୍ରନ୍ଥାବଳୀ ପୃ:୧୩୦ (ରାଜା ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ୧୯୫୫)

୪) ପ୍ରାଚୀନ ଉତ୍କଳ ପୃ: ୩୩୧ (ଶ୍ରୀ ଜଗବନ୍ଧୁ ସିଂହ, ସାହିତ୍ୟ ଏକାଡେମୀ ୧୯୬୪ ଓଡ଼ିଶା।

୫) Inseription of orissa vol, VI, Introduction page II by Smt Snigdha Tripathy. (Sri H C. Das, Superintendent State Museum, orissa, 1974)



Digitized by PPRACHIN, SOA

ଏବଂ ଉକ୍ତ ବଂଶ ପୂର୍ବରୁ ନନ୍ଦ ବଂଶ ଭାବରେ ପରିଚିତ ଥିବା ସେମାନଙ୍କ ବଂଶରେ ପ୍ରଚଳିତ କାହାଣୀରୁ ଏହା ଜଣାଯାଏ ! (୬) ଚନ୍ଦ୍ରଗୁପ୍ତଙ୍କ ମାତାଙ୍କ ନାମାନୁସାରେ ବଂଶର ପରବର୍ତ୍ତୀ ନାମକରଣ ହୋଇଥିବା ସମ୍ଭବ । ତେଣୁ ଭଞ୍ଜବଂଶ ମୌର୍ଯ୍ୟ ବଂଶର ଶାଖା ହେବା ଅସମ୍ଭବ ।

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ହୁଏ ଯେ ଭଞ୍ଜବଂଶ ରାଜପୁତନାରୁ ଆସିଥିବାର କୌଣସି ଐତିହାସିକ ପ୍ରମାଣ ନାହିଁ । ଭାରତ ଇତିହାସରେ ରାଜପୁତ ବଂଶ ଏକ ଗୌରବମୟ ସ୍ଥାନ ଅଧିକାର କରିଥିବାରୁ ଅଧିକାଂଶ ରାଜା ନିଜ ବଂଶର ଗୌରବ ବଢ଼ାଇବା ପାଇଁ ତାଙ୍କ ବଂଶର ସୃଷ୍ଟିକୁ ରାଜପୁତ ବଂଶ ସହ ସଂଯୋଗ କରିବା ନିମନ୍ତେ ତତ୍ପର ଥିଲ ବେଳେ, ଯଦି ଭଞ୍ଜ ବଂଶ ରାଜପୁତ ବଂଶ ସମ୍ଭୂତ ସେମାନଙ୍କ ବଂଶକୁ ରାଜପୁତ ବଂଶ ସହ ସଂଯୋଗ କରିବାରେ କୁଣ୍ଠାବୋଧ କଲେ କାହିଁକି ? (୭) ସେହିପରି ବି ପ୍ରସିଦ୍ଧ ମୌର୍ଯ୍ୟ ବଂଶ ସମ୍ଭୂତ ବୋଲି ପ୍ରଚାର କରିବାରେ କିଛି ବାଧା ବି ନଥିଲା । ମୌର୍ଯ୍ୟ କିମ୍ବା ରାଜପୁତ ବଂଶ ସମ୍ଭୂତ ବୋଲି ଭଞ୍ଜମାନେ କୁଣ୍ଠାବୋଧ କରିବାର କାରଣ ହେଲା, ସେମାନେ ଉକ୍ତ ବଂଶ ମାନଙ୍କରୁ ସମ୍ଭୂତ ନୁହନ୍ତି ଏବଂ ଏହି ଓଡ଼ିଶା ମାଟିର ହିଁ କୌଣସି ନିମ୍ନ ସମ୍ପ୍ରଦାୟରୁ ସେମାନଙ୍କ ସୃଷ୍ଟି ହୋଇଥିବାରୁ ବଂଶ ଗୌରବ ବଢ଼ାଇବା ନିମନ୍ତେ ଅଯୋନି ସମ୍ଭୂତ ଭାବେ ଏକ କିମ୍ବଦନ୍ତୀ ନିଜ ବଂଶ ସୃଷ୍ଟି ସଂପର୍କରେ ପ୍ରଚାର କରାଇଛନ୍ତି । ଭଞ୍ଜମାନେ ଆଦିବାସୀ ସଂପ୍ରଦାୟରୁ ସୃଷ୍ଟି ହୋଇଥିବା କେତେକ ଗବେଷକ ମତ ଦିଅନ୍ତି ।(୮)

ଭଞ୍ଜ ବଂଶ ଓଡ଼ିଶାର ଆଦିବାସୀ ସମ୍ପ୍ରଦାୟ ମଧ୍ୟରୁ ସୃଷ୍ଟି ସମ୍ପର୍କୀୟ କେତେକ ଆଦିବାସୀ ଲୋକ କଥାରୁ ବି ପ୍ରମାଣ ମିଳେ । ତେବେ ସେ ଗୁଡ଼ିକ ବି କିମ୍ବଦନ୍ତୀ ଶ୍ରେଣୀୟ ଓ ତାହାର କୌଣସି ଐତିହାସିକ ପ୍ରମାଣ ନାହିଁ । ତଥାପି କେତେକ ଐତିହାସିକ ତଥ୍ୟ ସହ ଫୁଲବାଣୀ ଜିଲ୍ଲା ଉଦୟଗିରି ତହସିଲ ଅଞ୍ଚଳରେ ପ୍ରଚଳିତ ଲୋକ କଥାର ମେଳ ରହୁଛି ଏବଂ କନ୍ଧ ସଂସ୍କୃତିର ପ୍ରଭାବ ଭଞ୍ଜ ବଂଶର କେତେକ କ୍ଷେତ୍ରରେ ପ୍ରତିଫଳିତ ହୋଇଥିବାରୁ ଭଞ୍ଜ ବଂଶ କନ୍ଧ ସଂପ୍ରଦାୟରୁ ସୃଷ୍ଟି ହୋଇଥିବା ପ୍ରାସଙ୍ଗିକ ମନେହୁଏ ।

---

୬) History of orissa P·10 (Dr. K. C. Panigrahi)

୭) Inscription of orissa vol. VI Introduction page IV

୮) -do- -do- page II



Digitized by PPRACHIN, SOA

# (କ) କନ୍ଧ ସଂପ୍ରଦାୟର ଲୋକକଥା

ଡ଼ଡ଼ାପାଡ଼ (ପୁରୁଷ) ଓ ମୁକାଙ୍ଗାଣ୍ଡ (ସ୍ତ୍ରୀ) ଏକ କନ୍ଧ ଦମ୍ପତି ଡ଼ଡ଼ାପଡ଼ା ଗ୍ରାମରେ ବାସ କରୁଥିଲେ । (ଡ଼ଡ଼ାପଡ଼ା ଉଦୟଗିରିରୁ ପାବୁରିଆ ରାସ୍ତାରେ ଟିମାଙ୍ଗିଆ ନିକଟସ୍ଥ ଏକ କ୍ଷୁଦ୍ର ଗ୍ରାମ) ସ୍ୱପ୍ନ ଦେବ ପାଇ ଡ଼ଡ଼ାସରୁ (ଡ଼ଡ଼ା ନାମକ ପର୍ବତ, କନ୍ଧମାନଙ୍କ ଏକ କୁଳ ପର୍ବତ)ରୁ ତିନୋଟି ମୟୂର ଡିମ୍ବ ପାଇଲେ । ଉକ୍ତ ମୟୂର ଡିମ୍ବ ଗୁଡିକୁ ନୂଆ ମାଟି ହାଣ୍ଡିରେ ରଖି ଉଷୁମାଇଲେ । କିଛି ଦିନ ପରେ ଉକ୍ତ ଅଣ୍ଡାରୁ ତିନୋଟି ଛୁଆ ଜନ୍ମ ହେଲେ । ଛୁଆ ମାନଙ୍କୁ ମେଡ଼ାର ବଞ୍ଜ, କୁଟ୍ରୁରା ବଞ୍ଜ (କେତେକଙ୍କ ମତରେ ଡିଟେଟ୍ ବଞ୍ଜ) ଦଶାବଞ୍ଜ (କେତେକଙ୍କ ମତରେ ଠେସା ବଞ୍ଜ ) ନାମକରଣ କଲେ । କ୍ରମେ ସେମାନେ ଯୌବନ ପ୍ରାପ୍ତ ହେବା ପରେ ବଡ଼ ଦୁଇଭାଇ ଅନ୍ୟ ସ୍ଥାନରେ ବାସ କରିବା ନିମନ୍ତେ ନିଷ୍ପତ୍ତି ନେଲେ । କାରଣ କନ୍ଧ ପ୍ରଥାନୁସାରେ ସାନ ପୁଅର ପିତୃ ଗୃହରେ ରହିବାର ଅଧିକାର ଅଛି ଏବଂ ବଡ଼ ପୁଅମାନେ ଅନ୍ୟତ୍ର ଗୃହ ନିର୍ମାଣ କରି ବସବାସ କରିବେ । ତେଣୁ ଭବିଷ୍ୟତ ନିମନ୍ତେ ଆଶ୍ରୟସ୍ଥଳ ନିର୍ଣ୍ଣୟ ଉଦ୍ଦେଶ୍ୟରେ ବଡ଼ ଦୁଇଭାଇ ଡ଼ଡ଼ାସରୁ ଉପରୁ ଶର ସନ୍ଧାନ କଲେ । ଯାହା ଶର ଯେଉଁଠି ପଡ଼ିବ ସେ ସେଠାରେ ବସବାସ କରିବା ନିମନ୍ତେ ନିଷ୍ପତ୍ତି କଲେ । ବଡ଼ ଭାଇର ଶର ଯେଉଁଠି ପଡ଼ିଲା ତାହାକୁ କୁଇ ଭାଷାରେ ସାଙ୍କେଡ଼େଡ଼ପା ବା ସଂକୀର୍ଣ୍ଣ ପଥ କୁହାଯାଏ ଏବଂ ଏହାକୁ ସେମାନେ ଆଧୁନିକ କଳିଙ୍ଗା ଘାଟିର ଅନ୍ଧାର କୋଠ ବୋଲି ଚିହ୍ନିତ କରନ୍ତି । ଦ୍ୱିତୀୟ ଭାଇର ଶର କୁଲଡ଼ରେ ପଡ଼ିଲା । ପୂର୍ବ ନିଷ୍ପତ୍ତି ଅନୁସାରେ ଦୁଇ ଭାଇ ଉକ୍ତ ସ୍ଥାନମାନଙ୍କୁ ଯାଇ ବସବାସ କରି ରାଜ୍ୟ ସ୍ଥାପନ କଲେ । ତୃତୀୟ ଭାଇ ପିତୃ ରାଜ୍ୟରେ ବାସ କରି ଆଧୁନିକ ଉଦୟଗିରି ସହରସ୍ଥ ସାଲୁଙ୍କୀ ନଦୀ ଓ ଡ଼ଣ୍ଡାବାଲି ନାଳର ସଂଯୋଗ ସ୍ଥଳରେ ନିଜ ଦୁର୍ଗ ସ୍ଥାପନ କରି ରାଜ୍ୟ ଶାସନ କଲେ । ଉଦୟଗିରିସ୍ଥ ଉକ୍ତ ସ୍ଥାନକୁ ଅଦ୍ୟାବଧି ରାଜାଣି ପଙ୍ଗା ବା ରାଜାଙ୍କ ପଦର କୁହାଯାଇଥାଏ ।

ଏହା ବ୍ୟତୀତ କେତେକଙ୍କ ମତରେ ବଡ଼ ଭାଇ ମେଡ଼ାର ବଞ୍ଜ ମୟୂରଭଞ୍ଜ, ମଝିଆ ଭାଇ କୁଟ୍ରୁରା ବଞ୍ଜ ବଉଦ ଓ ସାନ ଭାଇ ଠେସା ବଞ୍ଜ ଘୁମୁସର ରାଜ୍ୟ ସ୍ଥାପନ କରି ଶାସନ କଲେ ।

# (ଖ) ପୁରନ ନାମକ ଭୂୟାଁ ସଂପ୍ରଦାୟର ଲୋକକଥା

କିମ୍ବଦନ୍ତୀ ଅଛି ଯେ ବ୍ରହ୍ମାଙ୍କ ଏକ ବିନ୍ଦୁରେ ତ ପୃଥିବୀରେ ପଡି ଗୋଟିଏ ଡିମ୍ବ ହେଲା । ସେହି ଡିମ୍ବର ଶ୍ୱେତସାରରୁ ପୁରନମାନେ, ଜୀବାବରଣରୁ ଶବରମାନେ



Digitized by PPRACHIN, SOA

ଖୋଲରୁ ଖାଡ଼ିଆମାନେ ବାହାରିଲେ । ଡିମ୍ବର ପୀତସାରରୁ ଭଞ୍ଜମାନେ ବାହାରିଲେ । (୯)

## (ଗ) ଖାଡ଼ିଆ ନାମକ ଭୂୟାଁ ସଂପ୍ରଦାୟର ଲୋକକଥା

—ଖାଡ଼ିଆ ଆଦିବାସୀ ଗୋଷ୍ଠୀର ଲୋକକଥାରୁ ଜଣାଯାଏ ଯେ ଈଶ୍ୱର ପ୍ରଥମେ ଆକାଶ, ପୃଥିବୀ ଓ ତାପରେ ମୟୂରଟିଏ ସୃଷ୍ଟି କଲେ । ମୟୂର ଡିମ୍ବରୁ ଆଦିଖାଡ଼ିଆ, ଶ୍ୱେତାଂଶରୁ ପୁରାଣ ବା ଭୂୟାଁ ଓ ହଳଦିଆ ଅଂଶରୁ ଭଞ୍ଜ ରାଜବଂଶର ଜନ୍ମ ହେଲା । ଏହି ଘଟଣା ମୟୂରଭଞ୍ଜ ରାଜ୍ୟର ପଞ୍ଚପୀଢ଼ ଅନ୍ତର୍ଗତ ଆଦିପୁର ଗ୍ରାମରେ ଘଟିଥିଲା । ପ୍ରଥମ ଖାଡ଼ିଆର ଉପାଧି ଥିଲା ଆଦିଖାଡ଼ିଆ ଏବଂ ପ୍ରଥମ ରାଜ-ଉପାଧି ଆଦିସିଂହ ବା ଭଞ୍ଜ । ଏହି ଆଦିଖାଡ଼ିଆଙ୍କ ଉତ୍ତର ପୁରୁଷ ଗନ୍ଧର୍ବ ଖାଡ଼ିଆ ରାଇରଙ୍ଗପୁରରେ ଅବସ୍ଥାନ କଲା । ବଦୁ ଖାଡ଼ିଆ ଲୋହାଗଡ଼ରେ ଏବଂ ବାସୁ ଖାଡ଼ିଆ ଯଶୀପୁରରେ (ପୁର୍ବତନ ନାମ ବାସପୁର) ବସବାସ କରୁଥିଲେ । (୧୦)

ଉପରୋକ୍ତ ଆଦିବାସୀ ଲୋକକଥା ଗୁଡ଼ିକରୁ ଭଞ୍ଜବଂଶର ସୃଷ୍ଟି ମୟୂର ଡିମ୍ବରୁ ହୋଇଥିବା ଜଣାଯିବା ସଙ୍ଗେ ସଙ୍ଗେ ସେମାନଙ୍କର ସୃଷ୍ଟି ଏହି ଓଡ଼ିଶା ମାଟିର ଆଦିବାସୀ ସମ୍ପ୍ରଦାୟରୁ ହୋଇଥିବା ବି ଜଣାଯାଉଛି । ତେବେ କନ୍ଧ ଲୋକ-କଥାର ବହୁ ସାମଞ୍ଜସ୍ୟ ଐତିହାସିକ ଘଟଣାବଳୀ ସହ ମେଳ ଖାଉଥିବା ବେଳେ ଭୂୟାଁ ଲୋକକଥାର ସେପରି କୌଣସି ଐତିହାସିକ ଘଟଣାବଳୀ ସହ ସାମଞ୍ଜସ୍ୟ ଜଣାଯାଏ ନାହିଁ ।

ଆଦିବାସୀ ଲୋକକଥା, ଭଞ୍ଜବଂଶାବଳୀ, ବିରୁଦାବଳୀ, ତାମ୍ର ଶାସନ ମାନଙ୍କରେ ମୟୂର ଡ଼ିମ୍ବରୁ ଭଞ୍ଜ ବଂଶ ସୃଷ୍ଟିକୁ ସ୍ୱୀକାର କରାଯାଇଥିଲେ ମଧ୍ୟ, ସେମାନଙ୍କ ସୃଷ୍ଟି ସମ୍ପର୍କରେ ଉପେନ୍ଦ୍ରଭଞ୍ଜ ବି ସନ୍ଦେହ କରିଛନ୍ତି—

ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ
ବରହୀ କୋଷରୁ ସମ୍ଭବି
ଭଞ୍ଜାନୁ ଭଞ୍ଜ ନାମ ସତ
ଲୋକେ ଏ ବଡ଼ ଅଦଭୂତ । (୧୧)

---

୯) ସମ୍ବଲପୁର ଇତିହାସ ପୃ: ୪୩୧ (ଶ୍ରୀ ଶିବ ପ୍ରସାଦ ଦାଶ ୧୯୬୨)

୧୦) ଉତ୍କଳ ପ୍ରସଙ୍ଗ page 92 vol XL No, 12, 1984 (ଜଗନ୍ନାଥ ଓ ଆଦିବାସୀ ସଂସ୍କୃତି, ଇନ୍ଦ୍ରାଣୀ ମିଶ୍ର)

୧୧) ଲାବଣ୍ୟବତୀ ୧୬ଶ ଛାନ୍ଦ (ଉପେନ୍ଦ୍ର ଭଞ୍ଜ)



Digitized by PPRACHIN, SOA

କବି ତାହାଙ୍କ ବଂଶୀୟ ଉପାଧି ଭଞ୍ଜ ଥିବା ସ୍ୱୀକାର କରିଥିଲେ ମଧ୍ୟ ବରଙ୍ଗୀ କୋଷରୁ ସମ୍ଭୂତ ହୋଇ ଭଞ୍ଜ ଉପାଧି ଗ୍ରହଣ ସମ୍ପର୍କରେ ସନ୍ଦେହ ପ୍ରକାଶ କରି କହିଛନ୍ତି— ଭଞ୍ଜ ନାମ ଗ୍ରହଣ ହେତୁ, କିନ୍ତୁ ଲୋକେ ଅର୍ଥାତ୍ ସମାଜରେ ଏ ଏକ ଅଦ୍ଭୁତ କଥା । ତେଣୁ ଅଣ୍ଡାର ଭଙ୍ଗନରୁ ଭଞ୍ଜ ଉପାଧିର ସତ୍ୟତା ନଥିବା ସେ ସ୍ପଷ୍ଟ ଭାବରେ ଜ୍ଞାତ ଥିଲେ ବି ବଂଶ ପରମ୍ପରା ବିଶ୍ୱାସକୁ ନଭାଙ୍ଗିବା ନିମନ୍ତେ ଖୋଲାଖୋଲି ଭାବରେ ଗୁପ୍ତତଥ୍ୟଟିକୁ ପ୍ରକାଶ କରିନାହାନ୍ତି ।

ଏହା ବ୍ୟତୀତ କନକା ଭଞ୍ଜ ବଂଶଜାତ ଶ୍ରୀଚନ୍ଦନ ତାହାଙ୍କ "ସଙ୍ଗୀତ ରସ ମୁଖ୍ୟା ବଳୀ" ରେ ବି ଅନୁରୂପ ସନ୍ଦେହ ବ୍ୟକ୍ତ କରିଛନ୍ତି ।

ଭଞ୍ଜନା ତ ଶତ୍ରୁ ସୈନ୍ୟାନାଂ କମ୍ପା ତମ୍ମମ୍ୟ ଭଞ୍ଜନାତ୍
ତେ ଭଞ୍ଜା ଇତି ବିଖ୍ୟାତାଃ କ୍ଷତ୍ରିୟା ସୂର୍ଯ୍ୟ ବଂଶଜା । (୧୨)

ସେହି ପାରମ୍ପରିକ ବଂଶ ବିଶ୍ୱାସକୁ ରକ୍ଷା କରିବା ଚେଷ୍ଟାରେ ଏଠାରେ ବି କବି ସତ୍ୟ ପ୍ରକାଶରୁ ବିରତ ହୋଇଥିବା ଅନୁମେୟ ।

ଭଞ୍ଜ ଉପାଧି ଗ୍ରହଣ ବିଷୟରେ ଧୃତପୁର (ତତ୍କାଳୀନ ବଉଦର ରାଜଧାନୀ)ରୁ ପ୍ରଦତ୍ତ ତାମ୍ର ଫଳକ ମାନଙ୍କରେ ଦେଖିବାକୁ ମିଳେ ଯେ—

"ଦୁର୍ବାର ବାରଣ ପ୍ରତିପକ୍ଷ ଲକ୍ଷ୍ମୀ ହଠ ଗ୍ରହଣ ସୁପ୍ରସିଦ୍ଧ ପ୍ରତାପା ଭଞ୍ଜାନ୍ୱୟାଧି ପତୟୋ ବହବୋ ବଭୂବୁ ରୁଭୂତୟୋ ସଭୂବ ଭୁରି ସହସ୍ର ସଂଖ୍ୟାମ୍ ।" (୧୩)

ଅର୍ଥାତ୍ ଶତ୍ରୁପକ୍ଷର ଦୁର୍ଜେୟ ହସ୍ତୀସେନାକୁ ଯୁଦ୍ଧରେ ପରାସ୍ତକରି ସେମାନଙ୍କ ପୁରନାରୀମାନଙ୍କୁ ହଠ ବା ଭେଳ ବିଦ୍ୟା ଦ୍ୱାରା ହରଣ କରିବା ଦ୍ୱାରା ପ୍ରତାପ ଭଞ୍ଜ ନାମକ ରାଜା ସୃଷ୍ଟି ହେଲେ ବା ଉକ୍ତ ରାଜା ପ୍ରତାପ ଭଞ୍ଜ ନାମ ଗ୍ରହଣ କଲେ ।

କେବଳ ଧୃତପୁରରୁ ପ୍ରଦତ୍ତ ତାମ୍ର ଫଳକରେ ହିଁ ଉପରୋକ୍ତ ତଥ୍ୟ ଦେଖିବାକୁ ମିଳେ । ଅନ୍ୟ ଭଞ୍ଜ ରାଜ୍ୟରୁ ପ୍ରଦତ୍ତ ତାମ୍ର ଫଳକରେ ଉକ୍ତ ବିଷୟ ଉଲ୍ଲେଖ ହୋଇନାହିଁ । ଘୁମୁସର ଭଞ୍ଜରାଜାଙ୍କ ଦ୍ୱାରା ପ୍ରଦତ୍ତ ତାମ୍ରଫଳକରେ ବି

---

୧୨) ଶ୍ରୀ ଭଞ୍ଜଭୂମି କେନ୍ଦୁଝର ପୃ. ୧୧୦

୧୩) Inscriptions of orissa vol. VI,



Digitized by PPRACHIN, SOA

ସମୁଗ୍ରନ୍ଥରୁ ଉକ୍ତ ବଂଶର ସୃଷ୍ଟି ବିଷୟ ଉଲ୍ଲେଖ ନାହିଁ । ଉପେନ୍ଦ୍ରଙ୍କ କାବ୍ୟରେ ହିଁ ଏହାର ପ୍ରମାଣ ମିଳେ ।

ଉପରୋକ୍ତ ଆଲୋଚନା ଗୁଡ଼ିକରେ ଭଞ୍ଜ ବଂଶର ସୃଷ୍ଟି ସମ୍ପର୍କରେ ପରସ୍ପର ବିରୋଧୀ କେତେକ ପ୍ରମାଣ ରହିଥିବା ଜଣାଯାଏ । ସେଥିରୁ ଏହା ସ୍ପଷ୍ଟ ହୋଇଯାଏ ଯେ ଭଞ୍ଜମାନେ ଓଡ଼ିଶା ମାଟିର କୌଣସି ନିମ୍ନ ସମ୍ପ୍ରଦାୟ ମଧ୍ୟରୁ ସୃଷ୍ଟ । ତେଣୁ ନିଜ ବଂଶ ଗୌରବ ବଢ଼ାଇବା ନିମିତ୍ତ ବିଭିନ୍ନ ସମୟରେ ସେମାନଙ୍କ ବଂଶ ସୃଷ୍ଟି ସମ୍ପର୍କରେ ବିଭିନ୍ନ ଗୌରବାବହ ଘଟଣାର ଅବତାରଣା କରିଛନ୍ତି । କିନ୍ତୁ କନ୍ଧ ଲୋକକଥାରୁ ଏବଂ କେତେକ ନିର୍ଭରଯୋଗ୍ୟ ପ୍ରମାଣରୁ ଭଞ୍ଜ ରାଜବଂଶରେ କନ୍ଧ ପ୍ରଭାବ ପରିଲକ୍ଷିତ ହେଉଥିବାରୁ ସେମାନେ କନ୍ଧ ସମ୍ପ୍ରଦାୟରୁ ସୃଷ୍ଟି ହୋଇଥିବା ଯୁକ୍ତିଯୁକ୍ତ ମନେହୁଏ ।

(୧) କୁଇ (କନ୍ଧମାନଙ୍କ କଥିତ ଭାଷା) ଭାଷାରେ ଭଞ୍ଜ ଶବ୍ଦର ଅର୍ଥ ଦେବାକୁ ଯାଇ Rev.W·W. Winfield ନିମ୍ନମତେ ଦର୍ଶାଇଛନ୍ତି—

Vanja= chip off, smooth by chipping, save down·
Vanju= a finger toe, thumb;
Vanji= Barren,, Sterile (୧୪)

ସମ୍ଭବତଃ ପ୍ରଥମ ରାଜ୍ୟ ସ୍ଥାପନ କାଳରେ ଦୁର୍ଗ ନିର୍ମାଣ ନିମନ୍ତେ ବାଞ୍ଜୁ ବା ଆଙ୍ଗୁଳି ଅଗରେ ନିର୍ଦ୍ଦେଶକରି ବଞ୍ଜି ବା ପଡ଼ିଆ ଜମିକୁ ବଞ୍ଜ ବା ସଫାକରି ସମତଳ କରିବା ପାଇଁ ନିର୍ଦ୍ଦେଶ ଦେଇଥିବାରୁ ପ୍ରଜାଙ୍କ ମଧ୍ୟରେ ବଞ୍ଜୁଲୋକୁ ବା ଭଞ୍ଜ ଲୋକ ଭାବରେ ଖ୍ୟାତ ହେଲେ ଏବଂ ଉକ୍ତ ଲୋକପ୍ରିୟ ଶବ୍ଦ ଭଞ୍ଜକୁ ଉପାଧି ଭାବରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ ନିଜ ରାଜଧାନୀକୁ ବି ଭଞ୍ଜୁଲୋକ ନାମରେ ନାମିତ କରିଥିଲେ । ଭଞ୍ଜୁଲୋକ ଘୁମୁସରର ରାଜଧାନୀ ଥିବା ତାମ୍ରଫଳକ ମାନଙ୍କରୁ ଜଣାଯାଇଥାଏ ।

(୨) ଘୁମୁସର ରାଜ୍ୟର ନାମକରଣ କରିବାକୁ ଯାଇ ଐତିହାସିକ ତାରିଣୀ ଚରଣ ରଥ ମତ ଦେଇଛନ୍ତି ଗୁମା = କୁଡ଼ିଆ ବା ଗୃହ, ଗଡ଼ । ସର=କଳୀ ।

---

(୧୪) A vocabulary of the Kui language by Rev, W.W. winfield P. 128. (Asiatic Society of Bengal 1929)



Digitized by PPRACHIN, SOA

ତେଣୁ ରାଜ୍ୟର ନାମ ଗୁମାସର ହୋଇଥିଲା (୧୫) ଏହି ତଥ୍ୟକୁ ଅନ୍ୟାନ୍ୟ ଘୁମୁସରୀ ଭଞ୍ଜ ବଂଶାବଳୀରେ ସ୍ୱୀକାର କରାଯାଇଛି । କିନ୍ତୁ ପ୍ରକୃତରେ କୁଇ ଶବ୍ଦ ଗୁମା+ସରୁ=ଗୁମାସରୁ ନାମକରଣ ଯୁକ୍ତି ସଂଗତ ମନେହୁଏ । କୁଇଭାଷାରେ ଗୁମା=କୁଡ଼ଆଘର ଏବଂ ସରୁ=ଜଙ୍ଗଲ ବା ପାହାଡ଼ । ଘୁମୁସର ରାଜ୍ୟ ପ୍ରତିଷ୍ଠିତ ହେଲାବେଳେ ଏହି ରାଜ୍ୟ ଜଙ୍ଗଲ ପାହାଡ଼ ପରିପୂର୍ଣ୍ଣ ଥିଲା ଏବଂ ବଡ଼ ଗ୍ରାମ ନଥିଲା । କୁଡ଼ଆ ଦ୍ୱାରା କେତେକ କନ୍ଧପଲ୍ଲୀ ଗାଁ ଥିବା ଶ୍ରୀ ତାରିଣୀ ଚରଣରଥ ଦର୍ଶାଇଛନ୍ତି । ଏଣୁ ରାଜ୍ୟର ନାମକରଣରେ କନ୍ଧ ପ୍ରଭାବ ରହିବା ସ୍ୱାଭାବିକ । ଏହା ବ୍ୟତୀତ ଗୋଟିଏ ଶବ୍ଦ କୁଇଭାଷାରୁ ଏବଂ ଅନ୍ୟ ଶବ୍ଦଟି ଓଡ଼ିଆ ଭାଷାରୁ ନେଇ ନାମକରଣ କରିଥିବା ଅପ୍ରାସଙ୍ଗିକ ମନେହୁଏ । ଏଣୁ କୁଇଶବ୍ଦ ଗୁମାସରୁକୁ ନେଇ ରାଜ୍ୟର ନାମ ଗୁମାସରୁ ହୋଇଥିବା ଯୁକ୍ତିଯୁକ୍ତ ମନେହୁଏ ।

(୩) କନ୍ଧ ଲୋକକଥା ଅନୁଯାୟୀ ମେଡ଼ାରଭଞ୍ଜ ମୟୂରଭଞ୍ଜ ରାଜ୍ୟ ସ୍ଥାପନ କରି ସେଠାରେ ରାଜତ୍ୱକଲେ । କୁଇଭାଷାରେ ମେଡ଼ାର=ମୟୂର । ନିଜ ନାମାନୁସାରେ ରାଜ୍ୟରନାମ କରଣ ବି ପ୍ରାସଙ୍ଗିକ ମନେହୁଏ । କୌଣସି ବ୍ୟକ୍ତିଙ୍କ ନାମାନୁସାରେ ମୟୂରଭଞ୍ଜ ରାଜ୍ୟର ନାମକରଣ ହୋଇପାରିଥାଏ ବୋଲି ଗବେଷକ ମାନେ ମତଦିଅନ୍ତି । (୧୬) ଏହା ବ୍ୟତୀତ ମୟୂରଭଞ୍ଜ ନାମକ ଜଣେ କ ରାଜାଥିବା ଏକ ବିରୁଦରୁ ଜଣାଯାଏ ।

" ଅଯୋନ ସଂଭୂତା ମଏରଡିମ୍ବ ଜାତ ଭଞ୍ଜବଂଶ ଗୋତ୍ର ବଶିଷ୍ଠ କୂଳ ଦେବତା ଇଷ୍ଟଦେବୀ କୀଚକେଶ୍ୱରୀ ଅଯୋଧ୍ୟାନୃପତି ଶ୍ରୀ ଶ୍ରୀ ମହାରାଜା ମଏରଭଞ୍ଜ " (୧୭)

ଏଣୁ ମେଡ଼ାର ଭଞ୍ଜଙ୍କ ନାମାନୁସାରେ ମୟୂରଭଞ୍ଜ ରାଜ୍ୟର ନାମକରଣ ହୋଇଥିବା ବିଶ୍ୱାସଯୋଗ୍ୟ ।

(୪) ଦିଗଭଞ୍ଜ ବା ଦିଶାଭଞ୍ଜ ତଥା କୋଠଭଞ୍ଜ ବା କୁଟୁରିଭଞ୍ଜଙ୍କ ନାମ ମଧ୍ୟ ଇତିହାସରେ ଦେଖିବାକୁ ମିଳେ ।

(୫) କନ୍ଧ ସଂପ୍ରଦାୟରେ ସୁନାଭଞ୍ଜ ପ୍ରଧାନ,ଦିଆଭଞ୍ଜ କହଁର, ଭଞ୍ଜଦିଗାଲ ଇତ୍ୟାଦି ନାମକରଣ ଅଦ୍ୟାବଧି ରହିଛି । ଏଣୁ ବଞ୍ଜ ବା ଭଞ୍ଜନାମର ଏକଅଂଶ

---

୧୫) ତାରିଣୀ ଚରଣ ଗ୍ରନ୍ଥାବଳୀ ପୃଃ ୩୬୯
16) Inscriptions of orissa vol. VI· P. III.
୧୭) ଭଞ୍ଜସଂଦର୍ଭ ପୃଃ ୨ (ପଣ୍ଡିତ ଶ୍ରୀଧର ଶତପଥୀ)



Digitized by PPRACHIN, SOA

ମାତ୍ର । ଏହା କୁଳପଦ୍ଧତି ନୁହେଁ । କିନ୍ତୁ ରାଜ୍ୟ ଶାସନ କରିବାଦରେ ଭଞ୍ଜମାନେ ନିଜର ପ୍ରକୃତ କୁଳପଦ୍ଧତିକୁ ତ୍ୟାଗ କରି ବଞ୍ଜକୁ କୁଳପଦ୍ଧତି ଭାବରେ ଗ୍ରହଣ କରିଥିବା ବିଶ୍ୱାସ କରାଯାଏ । ପରବର୍ତ୍ତୀ କାଳକ୍ରେର ବଞ୍ଜରୁ ଭଞ୍ଜ ହୋଇଛୁ ।

(୭) ଘୁମୁସର ଭଞ୍ଜ ବଂଶାବଳୀ ଅନୁସାରେ ଜ୍ୟେଷ୍ଠଭ୍ରାତା ବନମାଳୀ ଭଞ୍ଜ କନିଷ୍ଠ ରଘୁନାଥ ଭଞ୍ଜଙ୍କୁ ବଉଦ ରାଜ୍ୟ ଦେଇ ନିଜେ ଘୁମୁସର ରାଜ୍ୟ ପ୍ରତିଷ୍ଠା କରିଥିଲେ । କନ୍ଧ ପ୍ରଥା ଅନୁଯାୟୀ ଏଥିରେ ବି କନ୍ଧ ପ୍ରଭାବ ପ୍ରତିଫଳିତ ।

ଉପରୋକ୍ତ ଆଲୋଚନାରୁ ଭଞ୍ଜଉପାଧି ଗ୍ରହଣ ତଥା ରାଜ୍ୟର ନାମକରଣରେ କନ୍ଧ ପ୍ରଭାବ ପରିଲକ୍ଷିତ ହୁଏ । ଦିଶାଭଞ୍ଜ ଓ କୋଟଭଞ୍ଜ ଇତିହାସ ସମ୍ମତ ବ୍ୟକ୍ତି । ମେଡ଼ାର ଭଞ୍ଜଙ୍କୁ ବି ଆଦିଭଞ୍ଜଙ୍କ ସହ ଚିହ୍ନିତ କରିବାରେ କୌଣସି ବାଧା ନାହିଁ ।

ଭଞ୍ଜ ରାଜାମାନେ ମୟୂରକୁ ସେମାନଙ୍କ ରାଜକୀୟ ସଙ୍କେତ ଭାବରେ ଗ୍ରହଣ କରିଥିଲେ । ସେହି ଚିହ୍ନ ଗ୍ରହଣ ନିମନ୍ତେ ବି କେତେକ ଆଦିବାସୀ ପ୍ରମାଣ ଦାୟୀ । କନ୍ଧ ସମ୍ପ୍ରଦାୟରେ ମୟୂର ଏକ ପବିତ୍ର ପକ୍ଷୀ ଭାବରେ ବି ପରିଗଣିତ ।

(୧) କନ୍ଧ ସମାଜରେ ବିବାହ ବେଳେ ‘‘ଦରବ’’ ବା ଯୌତୁକ ଭାବରେ ଲୌହ ପତ୍ରରେ ନିର୍ମିତ କେତେକ ପଶୁପକ୍ଷୀଙ୍କ ପ୍ରତିକୃତି ଦିଆଯାଇଥାଏ । ସେଥିରେ ମୟୂରର ପ୍ରତିକୃତି ସ୍ଥାନ ପାଇଥାଏ ।

(୨) ବାଲିଗୁଡ଼ା ଅଞ୍ଚଳରେ ମୁଠିପୂଜା ବା ବିହନପୂଜାରେ ମହୁଲକୁ ଦେବି ଖଳପରି କରି କେତେକ ପଶୁପକ୍ଷୀଙ୍କ ପ୍ରତିକୃତି ପ୍ରସ୍ତୁତକରି ପୂଜା କରାଯାଏ । ସେଥିରେ ମୟୂରର ପ୍ରତିକୃତି ବି ପୂଜିତ ହୋଇଥାଏ ।

(୩) ୧୮୩୭ ସାଲରେ ମିଷ୍ଟର ରସେଲ ରିପୋର୍ଟ କଲେ ବିଭିନ୍ନ ଅଞ୍ଚଳରେ ବବର ଧର୍ମକ୍ରିୟା ଅଧିକନ୍ତୁ ଏକାପରି ନୁହେଁ । X X X ଘୁମୁସର ମାଳିଆରେ ଥାଡ଼ାପେନୁ (Thada penu—Earth God) ପ୍ରତିବର୍ଷ ମୟୂର ପ୍ରତିମା-ରୂପେ ବଳୀ ପୂଜା କରାଯାଏ । × × × ଜାକେରି ପେନୁ (Zakery penoo) ମୟୂର ଆକୃତିର ପିତଳ ପ୍ରତିମୂର୍ତ୍ତି ନିକଟରେ ତିନୋଟି ପଥର ଜାକେରି ପେନୁଙ୍କ ପ୍ରତିନିଧି ରୂପେ ଥାଏ ଓ ପୋତାଯାଏ ।(୧୮)

---

୧୮) କନ୍ଧ ଓ କନ୍ଧମାଳ ପୃଃ ୫୪ (ଶ୍ରୀ ମେଦିନୀଶ୍ୱର ମଲ୍ଲିକ)



Digitized by PPRACHIN, SOA

(୪) କନ୍ଧମାନଙ୍କ ବିବାହ ବେଳେ ମୁଣ୍ଡରେ ମୟୂରପର ଖୋଷିବା ଶୁଭ-ସୂଚକ ଏବଂ ଏକ ଅପରିହାର୍ଯ୍ୟ ପ୍ରଥା ଭାବରେ ଗୃହୀତ ।

(୫) କନ୍ଧ ସାମ୍ପ୍ରଦାୟରେ ମୟୂର ମାରିବା ଓମୟୂର ମାଂସ ଖାଇବା ନିଷେଧ ଥିଲା । ଆଧୁନିକତାର ସଂକ୍ରମଣ ଫଳରେ ଉକ୍ତ ପ୍ରଥା ଅଧୁନା କୋହଳ ହୋଇଗଲାଣି ।

ଉପରୋକ୍ତ ପ୍ରମାଣରୁ କନ୍ଧ ସମାଜରେ ମୟୂର ଏକ ପୂଜ୍ୟ ଏବଂ ପବିତ୍ର ପକ୍ଷୀ ଭାବରେ ଗୃହୀତ ହୋଇଥିବା ଜଣାଯାଏ । ଯେହେତୁ ଭଞ୍ଜବଂଶ କନ୍ଧ ସମ୍ପ୍ରଦାୟର ସୃଷ୍ଟ ତେଣୁ ମୟୂରକୁ ରାଜକୀୟ ସଙ୍କେତ ଭାବରେ ଗ୍ରହଣ କରିନେଇ ସାମ୍ପ୍ରଦାୟିକ ସମ୍ମାନରକ୍ଷା କରିବାରେ ସଚେଷ୍ଟ ଥିଲେ ଏବଂ ନିଜ ରାଜ୍ୟରେ ମୟୂର-ବଧକୁ ନିଷେଧ କରିଥିଲେ ।

ଏହା ବ୍ୟତୀତ ଅନ୍ୟ କେତେକ ପ୍ରମାଣରୁ ବି ଭଞ୍ଜ ବଂଶରେ କନ୍ଧ ସମ୍ପ୍ରଦାୟର ପ୍ରଭାବ ପରିଲକ୍ଷିତ ହୋଇଥାଏ ।

କନ୍ଧମାନେ ଯୁଦ୍ଧ ପ୍ରିୟ ଜାତି ଏବଂ ନିଜକୁ ଜମିଦାର ବା ଜମିଦାର ଭାବରେ ପରିଚୟ ଦେଇଆନ୍ତି । କେତେକ କନ୍ଧ ଓ ଶବର କ୍ଷତ୍ରିୟଙ୍କ ପରି ପଇତା ପକାଇବା ଦେଖା ଯାଇଥାଏ ! ଏହା ବ୍ୟତୀତ କନ୍ଧମାନଙ୍କ ବିବାହ ବେଳେ ବର ବୀର ବେଶରେ ସଜ୍ଜିତ ହୋଇ ଧନୁଶର ଧାରଣ କରିବାର ପ୍ରଥା ରହିଛି ।

" ଜଣେ କନ୍ଧରାଜା ଅଠଟି ଶିବଲିଙ୍ଗ ପୂଜା କରୁଥିଲେ । ଏ ଦେବୀ (ଖମ୍ବେଶ୍ୱରୀ) ସେମାନଙ୍କ ମଧ୍ୟରୁ ଗୋଟିଏ । ସୁଲକୀ ବଂଶୀୟ ଜନୈକ ରାଜା ଏହି ଦେବୀଙ୍କର ଥିଲେ ପରମ ଭକ୍ତ । " (୧୯) ସୁଲକୀ ଓ ଭଞ୍ଜମାନେ ଦେବୀ ଖମ୍ବେଶ୍ୱରୀଙ୍କ ଉପାସକ ଥିବା ସେମାନଙ୍କ ପ୍ରଦତ୍ତ ତାମ୍ର ଫଳକରୁ ଜଣାଯାଏ । ଅଦ୍ୟାବଧି କନ୍ଧ ସମ୍ପ୍ରଦାୟରେ ଖମ୍ବେଶ୍ୱରୀ ବା ଖମଶିରି ଉପାସନା ପ୍ରତି ଗ୍ରାମରେ ପ୍ରଚଳିତ ରହିଛି ।

କନ୍ଧ ସମାଜରେ କେଉଁ ପୂଜାରେ ନରବଳୀ ପ୍ରଥା ଊନବିଂଶ ଶତାବ୍ଦୀର ଅର୍ଦ୍ଧ ଭାଗ ଯାଏ ପ୍ରଚଳିତ ଥିବା ଜଣାଯାଏ । " କଥା ପ୍ରସଙ୍ଗରେ ବଉଦରାଜା ମେଲିଆ କର୍ମଚାରୀ ମାକଫରସନଙ୍କୁ ଖ୍ରୀ: ୧୮୪୨ରେ କହିଥିଲେ— ମହାନଦୀ କୂଳ-

---

୧୯) ଓଡ଼ିଶାର ଦେବଦେବୀ, ଦ୍ୱିତୀୟ ସ୍ତବକ, ପୃ: ୧୬୬
(ଦେବୀ ଖମ୍ବେଶ୍ୱରୀ—ଶ୍ରୀ ଶିବ ସୁନ୍ଦର ତ୍ରିପାଠୀ )



Digitized by PPRACHIN, SOA

ବାସୀ ପ୍ରତ୍ୟେକରାଜା, ମୋର ବଜ ପିତା ମଧ୍ୟ ମେଣ୍ଢା ପୂଜା କରୁଥିଲେ । " (୨୦)

ଘୁମୁସର ଭଞ୍ଜବଂଶର ଇଷ୍ଟଦେବୀ ବ୍ୟାଘ୍ରଦେବୀ କୁଳ ନାମକ କନ୍ଧର ଆରାଧ୍ୟ ଦେବୀ ଥିଲେ ଏବଂ ପରବର୍ତ୍ତୀ କାଳରେ ସେମାନଙ୍କ ଇଷ୍ଟଦେବୀ ଭାବେ ଗୃହୀତ ହୋଇଥିବା ଇତିହାସରୁ ଜଣାଯାଏ । ସେହିପରି ବଉଦ ରାଜାଙ୍କ ଦ୍ୱାରା ଆରାଧିତ ଭୈରବୀଙ୍କ ପୂଜାରେ ଥିବା କେତେକ ଆଦିବାସୀ ପୂଜା ପଦ୍ଧତିରୁ ସେ ଦେବୀ ଆଦିବାସୀ ପ୍ରତିଷ୍ଠିତ ଦେବୀ ବୋଲି ପ୍ରମାଣ ମିଳିଥାଏ ।

ଉପରୋକ୍ତ ସମସ୍ତ ଆଲୋଚନାରୁ ଭଞ୍ଜବଂଶର ସୃଷ୍ଟି କନ୍ଧ ସଂପ୍ରଦାୟରୁ ହୋଇଥିବା ସ୍ପଷ୍ଟ ଧାରଣା କରିହୁଏ । ସେମାନଙ୍କ ଭଞ୍ଜଉପାଧି ଗ୍ରହଣ, ରାଜ୍ୟର ନାମ କରଣ, ରାଜକୀୟ ଚିହ୍ନ, ଇଷ୍ଟଦେବୀ ତଥା ଅନ୍ୟାନ୍ୟ କେତେକ କ୍ଷେତ୍ରରେ କନ୍ଧ ସମ୍ପ୍ରଦାୟର ପ୍ରଭାବରୁ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଭଞ୍ଜ ବଂଶର ସୃଷ୍ଟି କନ୍ଧ ସଂପ୍ରଦାୟମଧ୍ୟରୁ ହୋଇଛି ।

ଆଦିବାସୀ ସଂପ୍ରଦାୟରୁ ସୃଷ୍ଟ ଅନ୍ୟ କେତେକ ରାଜବଂଶ ରାଜ୍ୟ ସ୍ଥାପନ କରି ରାଜ୍ୟ ଶାସନ କରିଥିବାର ବି ପ୍ରମାଣ ରହିଛି । ଓଡ଼ିଶାରେ ଶୈଳୋଦ୍ଭବ, ସୁଲକୀ, ତୁଙ୍ଗ ଭଞ୍ଜ, ଭୌମକର, ନଳ, ନନ୍ଦ ଇତ୍ୟାଦି ରାଜବଂଶର ଉଦ୍ଭବ ଆଦିବାସୀ ସଂପ୍ରଦାୟରୁ ହୋଇଥିବା ଗବେଷକ ଏବଂ ଐତିହାସିକ ମାନେ ମତ ଦିଅନ୍ତି । (୨୧) ଏହାବ୍ୟତୀତ ଭାରତର ବିଭିନ୍ନ ରାଜ୍ୟରେ ବି ଆଦିବାସୀମାନେ ରାଜ୍ୟପ୍ରତିଷ୍ଠା କରିଥିବାର ପ୍ରମାଣ ମିଳେ । ଗଣ୍ଡକାଡି ଦ୍ୱାରା ବି ମଧ୍ୟଭାରତରେ କେତେକ ରାଜ୍ୟ ପ୍ରତିଷ୍ଠିତ ହୋଇ ଅଷ୍ଟାଦଶ ଶତାବ୍ଦୀ ଯାଏ ଗଣ୍ଡ ଶାସକମାନଙ୍କ ଦ୍ୱାରା ଶାସିତ ହେଉଥିଲା । (୨୨) ପଞ୍ଚମ ଶତାବ୍ଦୀରେ ମଗଧରେ କନ୍ଧ ରାଜା ରାଜତ୍ୱ କରୁଥିବାର ପ୍ରମାଣ ମିଳେ । (୨୩)

---

୨୦) କବିସମ୍ରାଟ ଉପେନ୍ଦ୍ରଭଞ୍ଜ, ପୃ: ୨୨୮
(ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଉତ୍କଳ ବିଶ୍ୱବିଦ୍ୟାଳୟ)

୨୧) ବିଶ୍ୱଭାରତୀ ଦୀପିକା ପୃ: ୩୬, ୩୭ ସଂପାଦନା—ଖଗେଶ୍ୱର ମହାପାତ୍ର ପ୍ରଧାନ ଅଧ୍ୟାପକ ଓ ଅଧ୍ୟକ୍ଷ ଓଡ଼ିଆ ବିଭାଗ, ବିଶ୍ୱଭାରତୀ—୧୯୮୨ (ଓଡ଼ିଶାର ଇତିହାସ ଓ ସଂସ୍କୃତିରେ ଆଦିବାସୀ ପ୍ରଭାବର ଦିଗ୍‌ଦିଗନ୍ତ ଡ଼: କରୁଣା ସାଗର ବେହେରା )

୨୨) Tales of Ganda vana, Introduction page VII by Stephen Fuchs



Digitized by PPRACHIN, SOA

ଏଣୁ ଭଞ୍ଜବଂଶ କନ୍ଧ ସଂପ୍ରଦାୟରୁ ସୃଷ୍ଟି ହୋଇ ପରବର୍ତ୍ତୀ କାଳରେ ରାଜ୍ୟ-ଶାସନକର ପ୍ରତିଷ୍ଠା ଲାଭ କରିଥିଲେ— ଏଥିରେ ଅବିଶ୍ୱାସ କରିବାର କିଛି ନାହିଁ ।

●

ଟିକାବାଲି

ପିନ୍ ୭୬୨୦୧୦

ଜି: ଫୁଲବାଣୀ

---

୬୩) ଗଙ୍ଗୋତ୍ରୀ ପୃ: ୧୪ (ପ୍ରଥମ ସଂଖ୍ୟା ୧୯୮୩)
( ଉତ୍କଳରେ ଶୈବୋପାସନା, ଡ଼କ୍ଟର ରତ୍ନାକର ସାହୁ )

---

" ମାତ୍ର ବର୍ଣ୍ଣନା ଓ ଅଳଙ୍କାର ଦୃଷ୍ଟିରୁ ଏହା କାଳାନ୍ତକ କାବ୍ୟମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । × × × କାବ୍ୟର ନାମକରଣରୁ କବି ସ୍ୱୀୟ କାବ୍ୟ-ନାୟିକା ଓ କାବ୍ୟଗତ ନାୟିକାଙ୍କୁ କି ରୂପପ୍ରଦାନ କରିଥିବେ ଏବଂ ସେ ରୂପ ବର୍ଣ୍ଣନାରେ କିପରି ଯତ୍ନଶୀଳ ଥିବେ, ତାହା ବୋଲିବା ବାହୁଲ୍ୟ । "

— ଶ୍ରୀଯୁକ୍ତ ବୃନ୍ଦାବନ ମୋହନ ମହାନ୍ତି

ଛନ୍ଦପଦ୍ମ ସାହିତ୍ୟ ସମାଲୋଚନା—ପୃ· ୭୫/୭୮

Digitized by PPRACHIN, SOA

# —ସୂଚୀପତ୍ର—


| ବିଷୟ | ଲେଖକ | ପୃଷ୍ଠା |
|---|---|---|
| ୧ । କୋଟି ମାନସର ରୂପସୀ ଓ ତା'ର ମନସ୍ୱୀ ରୂପକାର | ...ପ୍ରାଧ୍ୟାପକ ବିଜୟ ବସନ୍ତ ଦାସ | ୧ |
| ୨ । ସଂଗୀତ ଶାସ୍ତ୍ର ଓ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ | ଡ଼ଃ ପିତାମ୍ବର ସ୍ୱାଇଁ | ୧୫ |
| ୩ । ସେ କମ୍ବୁକଣ୍ଠକ ରାଜା ନାମ ଜଗନ୍ନାଥ | ଶ୍ରୀ ରାଜେନ୍ଦ୍ର ଷଡ଼ଙ୍ଗୀ | ୨୯ |
| ୪ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ଏକ ନୈଷଧୀୟ ସ୍ୱପ୍ନ | ଡ଼ଃ ରାଘବାନନ୍ଦ ନାୟକ | ୩୮ |
| ୫ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନନ୍ଦନତତ୍ତ୍ୱ | ଡ଼ଃ କୁଳମଣି ରାଉତ | ୪୭ |
| ୬ । ପ୍ରକୃତିକନ୍ୟା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ | ଡାକ୍ତର ଶୈଳେଶ୍ୱର ନନ୍ଦ | ୭୨ |
| ୭ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଉପେନ୍ଦ୍ରଙ୍କ ଆଧ୍ୟାତ୍ମିକ ଦୃଷ୍ଟି ଓ ଦର୍ଶନ | ଡ଼ଃ ସଚ୍ଚିଦାନନ୍ଦ ମିଶ୍ର | ୮୦ |
| ୮ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନାୟିକାର ସୌନ୍ଦର୍ଯ୍ୟ ନିରୂପଣ | ଡ଼ଃ ବନମାଳୀ ବାରିକ | ୯୩ |
| ୯ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ବକ୍ରୋକ୍ତି ଚେତନା | ଡ଼ଃ କିଶୋରଚନ୍ଦ୍ର ମିଶ୍ର | ୧୦୪ |
| ୧୦ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର କଥା, କଥାନକ ଓ କଥନ ଚାତୁରୀ | ଡ଼ଃ ଲକ୍ଷ୍ମୀଧର ଦାସ | ୧୧୮ |
| ୧୧ । କବି-ପ୍ରଜାପତି ଉପେନ୍ଦ୍ର ଓ ପବିତ୍ର ଦାମ୍ପତ୍ୟ ପ୍ରୀତିର ସୁନ୍ଦରୀ | ...ପ୍ରାଧ୍ୟାପକ ଲକ୍ଷ୍ମଣ କୁମାର ପଣ୍ଡା | ୧୩୭ |
| ୧୨ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଭଂଜୀୟ କାବ୍ୟ ଲକ୍ଷଣ | ଡ଼ଃ ଗୋପାଳଚନ୍ଦ୍ର ମିଶ୍ର | ୧୫୫ |


Digitized by PPRACHIN, SOA

୧୩ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଶ୍ରୀ ଜଗନ୍ନାଥ ପ୍ରଶସ୍ତି ·· ଶ୍ରୀଯୁକ୍ତ କ୍ଷୀରୋଦ ପ୍ରସାଦ ମହାନ୍ତି ୬୩

୧୪ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ- ଏକ ବିହଙ୍ଗ ଦୃଷ୍ଟି ଡ଼: କୁଳମଣି ମହାପାତ୍ର ୭୩

୧୫ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଚର୍ଚ୍ଚିତ ଚରିତ୍ର ଶ୍ରୀ ନବଘନ ପଣ୍ଡା ୮୨

୧୬ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଅଳଙ୍କାର ଡ଼: ପୂର୍ଣ୍ଣଚନ୍ଦ୍ର ମିଶ୍ର ୯୨

୧୭ । "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟରେ ଋତୁଚିତ୍ର ... ଡ଼: ସରୋଜ କୁମାର ସୁଆର ୨୦୧

୧୮ । ଯେଉଁ ନୈଷଧ ପରସ୍ପରେ ଡ଼: ହରେକୃଷ୍ଣ ମେହେର ୨୦୬


---

"ତେଣୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ଆଙ୍ଗିକ ଓ ପ୍ରାଣ ଧର୍ମରେ ନୈଷଧ ସଞ୍ଚରିଥିଲେ ହେଁ ଭକ୍ତସାମ୍ୟ କ୍ଷେତ୍ରରେ କବି ଯଥେଷ୍ଟ ଧୈର୍ଯ୍ୟ ଓ ସଂଯମ ରକ୍ଷା କରିପାରିଛନ୍ତି । ଅନୁକରଣ ଅପେକ୍ଷା ଅନୁସରଣ ଯେପରି ତାଙ୍କର ଲକ୍ଷ୍ୟ ଓ ଆଦର୍ଶ । × × × । ନୈଷଧ ପରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟପାଠର ଦୁଇଟି ମାତ୍ର ସାଧନ— ପାଣ୍ଡିତ୍ୟ ଓ ଶୃଙ୍ଗାର ରସବୋଧ ।"

—ଅଧ୍ୟାପକ ଦାଶରଥି ଦାସ

କାବ୍ୟ ସମ୍ବାଦ : ପୃ- ୧୦୭/୧୦୯

Digitized by PPRACHIN, SOA

# ।। କୋଟି ମାନସର ରୂପସୀ ଓ ତା'ର ମନସ୍ୱୀ ରୂପକାର ।।

—ବିଜୟ ବସନ୍ତ ଦାସ

She walks on beauty
like the night
of cloudless clines and stray skies.
—John Keats

ନିଜ ଚିନ୍ତାର ଅନିର୍ବଚନୀୟ ରସାନୁଭୂତି ସମୂହକୁ ଅପର ଚିତ୍ତରେ ସଂକ୍ରମିତ କରାଇ ଦେବାର କଳା କୌଶଳରେ ହିଁ କବି ଲେଖନୀର ସାର୍ଥକତା । ଏହି ଜଣାଇବାରେ ହିଁ ଯେପରିକି ଅନୁଭୂତିର ପରିପୂର୍ଣ୍ଣତା ପ୍ରକାଶ ପାଇଥାଏ, ମଣିଷ ସେଇ ଆଦିମ ଯୁଗରୁ ଆଜି ପର୍ଯ୍ୟନ୍ତ ନିଜକୁ କେବଳ ପ୍ରକାଶ କରିବା ପାଇଁ ହିଁ ଭାଷା ଖୋଜିବାରେ ଲାଗିଛି । ଜଣେ କବି ପକ୍ଷରେ ଏହି ଭାଷା ଭିତର ଦେଇ ଯେଉଁ ଅନ୍ତର୍ଲୋକର ପରିଚୟ ମିଳିଥାଏ ତାହା ତାଙ୍କର ଏକ ବିଶେଷ ଅନ୍ତର୍ଲୋକ-ଯେଉଁ ଅନ୍ତର୍ଲୋକର ସ୍ପନ୍ଦନ ସର୍ବ ସାଧାରଣର ଦ୍ରୁତସ୍ପନ୍ଦନ ଅପେକ୍ଷା ଅନେକାଂଶରେ ସ୍ୱତନ୍ତ୍ର । ସାଧାରଣ ଭାଷା ମଧ୍ୟରେ ତାକୁ ବହନ କରିବାର ଶକ୍ତି ନ ଥାଏ । ଏକ ବିଶେଷ ଭାଷା ହିଁ କବିର ସେଇ ବିଶେଷ ଦ୍ରୁତ ସ୍ପନ୍ଦନକୁ ଧାରଣ କରିଥାଏ । ରସ ସମାହିତ ଚିତ୍ତର ଏହି ସ୍ପନ୍ଦନକୁ ପ୍ରକାଶ କରିବା ଉଦ୍ଦେଶ୍ୟରେ କବିର ଏ ଅସାଧାରଣ ଭାଷା ପ୍ରୟୋଗକୁ ଭାମହ କହନ୍ତି । 'ବକ୍ରୋକ୍ତି' ଯା'ର ଅର୍ଥ ଏଠାରେ ହେଉଛି କାବ୍ୟୋଚିତ ବିଶେଷୋକ୍ତି । ଅଳଙ୍କାରବାଦ ଏହି ବିଶେଷୋକ୍ତିର ପର୍ଯ୍ୟାୟ ମାତ୍ର ।

ଶବ୍ଦର ଅର୍ଥକୁ ବିଚିତ୍ର ଧ୍ୱନି ତରଙ୍ଗ ମଧ୍ୟ ଦେଇ ବିସ୍ତାର କରି ଦେବା ନିମନ୍ତେ ଆମ ଦେଶର ପ୍ରାଚୀନ କବି ଗୋଷ୍ଠୀ ଅଳଙ୍କାରକୁ ମାଧ୍ୟମ ଭାବରେ ଗ୍ରହଣ କରି ଆସି ଅଛନ୍ତି । କାଳିଦାସ, ଶ୍ରୀହର୍ଷ, ମାଘ, ଭାରବି, ଭଞ୍ଜ, ଅଭିମନ୍ୟୁଙ୍କର



Digitized by PPRACHIN, SOA

ବ୍ୟୁତ୍ପତ୍ତି ଏ ଦିଗରେ ଅନନ୍ୟ ସାଧାରଣ । ଯେଉଁ ଅସ୍ପୃଷ୍ଟ କଥା ଭାଷାରେ ପ୍ରକାଶ ପାଇପାରେ ନାହିଁ ତାହାକୁ ଛନ୍ଦ ମଧ୍ୟଦେଇ ଆଭାସିତ କରି ତୋଳି ଧରିବାରେ ହିଁ ଏମାନଙ୍କର କୃତିତ୍ୱ ନିହିତ । କବି ସମ୍ରାଟଙ୍କର ଅପୂର୍ବ ଶବ୍ଦ ବିନ୍ୟାସ ଓ ବର୍ଣ୍ଣନା ପାଟବତା ମଧ୍ୟରେ ଚମ୍ପା ନଗରୀର ବହିର୍ଦ୍ୱାରର ମନୋହାରିତା ଏହିପରି—

ଉଦ୍ୟାନ ହଟ୍ଟେ କେରଳୀ କି ରଙ୍ଗେ । କଳଶ କୁଚ ଯୋଡ଼ା ସ୍ତମ୍ଭ ଭୂଜେ
ଶୁଭେ ନାଚି ପଦ ନୂପୁର ବାଦ୍ୟ । ସମ୍ଭବେ ଯହିଁ ଭଲ ଭଲ ପଦ ।
ମୁଖ ଝଳି ପଣ ଦର୍ପଣ ଭିତ୍ତି । ଅକ୍ଷି ଲକ୍ଷିବା ଗବାକ୍ଷ ଅଛନ୍ତି
ଭ୍ରମର ଛଡ଼ାଇ ଚିକୁର ଶଙ୍କା । ବସନ ପ୍ରସନ୍ନକୁ ଯବନିକା ।

[ କୋ. ବ୍ର. ସୁ ୨ୟ ଛାନ୍ଦ ୧୫/୧୬ଶ ପଦ ]

ଚିତ୍ ହୋଇ ଶୋଇ ହସ୍ତ ଦେଖାଉଥିବା ଗୋଟିଏ କେଳୁଣୀର ଶୋଭାପରି ଚମ୍ପା ନଗରୀର ରୂପ ସମ୍ଭାର । ସ୍ତମ୍ଭ ଗୁଡ଼ିକ ହସ୍ତ, ସୁବର୍ଣ୍ଣ କଳସ ସ୍ତନ, ନୂପୁର ଶବ୍ଦ ବାଦ୍ୟ, ଜନ କୋଳାହଳ କେଳୀ ମାନଙ୍କର ଭଲ ଭଲ ଶବ୍ଦ ସହିତ ତୁଳନୀୟ । ପୁଣି କେଳୁଣୀ ମୁଖର ଉଜ୍ଜ୍ୱଳତା କାଚ କାନ୍ଥରେ, ଚକ୍ଷୁ ଶୋଭା ଗବାକ୍ଷରେ, କେଶ ପାଶ ଭ୍ରମରରେ, ପରିଧେୟ ବସ୍ତ୍ରର ଶୁଭ୍ରତା ପରଦାରେ ଲକ୍ଷିତ ହେଉଛି ।

ଶବ୍ଦ ଶକ୍ତିର ସାହଚର୍ଯ୍ୟରେ କବି ବର୍ଣ୍ଣିତ ଏଇ ମାୟାଲୋକ ଏକ ଦିଗରୁ ଇନ୍ଦ୍ରିୟ ନିର୍ଭର, ଅନ୍ୟ ଦିଗରେ ଇନ୍ଦ୍ରିୟାତୀତ । କାୟା ଓ ଛାୟାରେ ମିଶ୍ରିତ ଏଇ ଆନନ୍ଦମୟ ଜଗତ ହେଲା ଶିଳ୍ପର ଜଗତ । ମନୁଷ୍ୟତା ସହିତ ତନ୍ମୟତା, ଅନୁଭବ ସହିତ ଯୁକ୍ତି, ଅବଚେତନ ସହିତ ଚେତନାକୁ ଏକ ଅବିଚ୍ଛେଦ୍ୟ ବନ୍ଧନରେ ଯୁକ୍ତ କରିଥାଏ ଶିଳ୍ପ । ସୀମା ମଧ୍ୟରେ ସୀମାହୀନର ଅନୁଭୂତିରେ ହିଁ ସୌନ୍ଦର୍ଯ୍ୟର ପ୍ରକାଶ । ଦୁଇଗୋଟି ଦିଗରୁ ଏହି ସୌନ୍ଦର୍ଯ୍ୟର ବିଚାର ବିଶ୍ଳେଷଣ କରାଯାଇପାରେ । ପ୍ରଥମ-ବିଷୟଗତ ବା ବସ୍ତୁନିଷ୍ଠ ଏବଂ ଦ୍ୱିତୀୟ ହେଲା ବିଷୟୀଗତ ବା ଆତ୍ମନିଷ୍ଠ । ବସ୍ତୁନିଷ୍ଠତା ସର୍ବଜନ ସୁଲଭ ଏବଂ ଆତ୍ମନିଷ୍ଠତା ମନୋବୈଶିଷ୍ଟ୍ୟ ସାପେକ୍ଷ ଉପାଦାନ ଅଟେ । ପ୍ରଥମଟିରେ ନୟନାକର୍ଷଣ ଓ ଦ୍ୱିତୀୟଟିରେ ଅନ୍ତର୍ଜଗତର ଆକର୍ଷଣ ପ୍ରଧାନ ହୋଇଥାଏ । ଆକର୍ଷଣହିଁ ବସ୍ତୁତଃ ସୌନ୍ଦର୍ଯ୍ୟର ପ୍ରାଣ ତତ୍ତ୍ୱ ଅଟେ । ବ୍ୟୁତ୍ପତ୍ତିଗତ ଅର୍ଥ ଅନୁସାରେ କର୍ତ୍ତିତ ପରି କାଟିବାହିଁ ହେଉଛି, ସୌନ୍ଦର୍ଯ୍ୟର ଧର୍ମ । (୧) ଏହି

---

(୧) "ସୁନ୍ଦଂ ଘଟ ଇତି ସୁନ୍ଦରମ୍ ତସ୍ୟ ଭାବଃ ସୌନ୍ଦର୍ଯ୍ୟମ୍"
(ସୁନ୍ଦଂ-କର୍ତ୍ତିତ ବା କର୍ତ୍ତନ୍ତି)



Digitized by PPRACHIN, SOA

ସୌନ୍ଦର୍ଯ୍ୟ ପୁଣି ବସ୍ତୁଠାରେ ନ ଥାଏ, ଥାଏ ପ୍ରେମିକର ହୃଦୟରେ । (୨) ଜଣେ ପରମ ସୁନ୍ଦରୀ ରମଣୀର ସୌନ୍ଦର୍ଯ୍ୟ, ଗୋଟିଏ ଅବୋଧ ବାଳକକୁ ଆକୃଷ୍ଟ କରେ ନାହିଁ (୩) କାରଣ ଏହା ଅବବୋଧ ଶକ୍ତି ଏବଂ ଅନ୍ତର୍ଦୃଷ୍ଟିରେ ହିଁ ନିହିତ ଥାଏ ।

କବି ସମ୍ରାଟଙ୍କର ଦୃଷ୍ଟିରେ ସୌନ୍ଦର୍ଯ୍ୟ ଦୈବୀ ବିଭୂତି । ମାନବ ରୂପ ହେଉ ବା ପ୍ରକୃତି ରୂପ ହେଉ ଦୁଇଟି ଯାକରେ ସମଭାବରେ ଭାସ୍ୱର ହୋଇ ବିଦ୍ୟମାନ ଅଛି । ଏ କ୍ଷେତ୍ରରେ ତାଙ୍କର ଆଦର୍ଶ ହେଲେ ସଂସ୍କୃତ ସାହିତ୍ୟର ଶ୍ରେଷ୍ଠ ବିନ୍ଧାଣୀ କାଳିଦାସ । କାଳିଦାସ ନିଜର ନାୟିକା ମାନଙ୍କୁ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ମାନସିକ କଳ୍ପନାର ସର୍ବୋତ୍ତମ ପ୍ରସୂତି ଭାବରେ ଚିତ୍ରଣ କରି ଅଛନ୍ତି । ତା'ର ଦୃଷ୍ଟାନ୍ତ :

"ଚିତ୍ରେ ନିବେଶ୍ୟ ପରିକଳ୍ପିତ ସତ୍ତ୍ୱଯୋଗା
ରୂପୋଚ୍ଚୟେନ ମନସା ବିଶ୍ୱକୃତାନୁ
ସ୍ତ୍ରୀ ରତ୍ନ ସୃଷ୍ଟିର ପରା ପ୍ରତିଭାତି ସା ମେ
ଧାତୁର୍ବିଭୂତ୍ୱ ମନୁ ଚିନ୍ତ୍ୟ ବପୁଷ୍ଟତସ୍ୟାଃ ।"
( ଅଭିଜ୍ଞାନଂ ୨/୯ )

ଶକୁନ୍ତଳାଙ୍କର ଶରୀର ଏବଂ ବିଧାତାର ରଚନା କୌଶଳ ଦେଖି ଏପରି ମନେ ହେଉଛି ଯେପରିକି ସେ ସଂସାରର ସବୁ ଗୁଡିକ ସୌନ୍ଦର୍ଯ୍ୟକୁ ସଙ୍କଳିତ କରି ଏବଂ ମନ ମଧ୍ୟରେ ସେମାନଙ୍କୁ ସ୍ଥାନଦେଇ ଶକୁନ୍ତଳାଙ୍କୁ ସର୍ଜନା କରି ସାରିବା ପରେ ତହିଁରେ ଜୀବନ୍ୟାସ କରି ଅଛନ୍ତି । ପୁଣି—

"ସର୍ବୋପମା ଦ୍ରବ୍ୟ ସମୁଚ୍ଚୟେନ ଯଥା ପ୍ରଦେଶଂ ବିନିବେଶିତେନ
ସା ନିର୍ମିତା ବିଶ୍ୱସୃଜା ପ୍ରଯତ୍ନା ଦେକସ୍ଥ ସୌନ୍ଦର୍ଯ୍ୟାଦିଦୃକ୍ଷୟେବ ।"
( କୁମାର ସମ୍ଭବଂ ୧/୪୧ )

---

(୨) "ବସନ୍ତି ହି ପ୍ରେମ୍ଣି ଗୁଣା ନ ବସ୍ତୁଷୁ" (ଭାରବି)
(୩ "ଯଥା ଯୂନସ୍ତଦ୍ୱତ୍ପରମରମଣୀୟାଽପି ରମଣୀ
କୁମାରଣାମନ୍ତଃ କରଣ ହରଣଂ ନୈବ କୁରୁତେ "
ଶ୍ରୀହର୍ଷ (ନୈଷଧ ଚରିତ)

।। ଇତି ।।

Digitized by PPRACHIN, SOA

ଏପରି ମନେ ହେଉଛି ଯେ ବ୍ରହ୍ମା ଗୋଟିଏ ସ୍ଥାନରେ ସଂସାରର ସବୁ ସୌନ୍ଦର୍ଯ୍ୟ ଯାକ ଦେଖିବା ପାଇଁ ଚାହିଁଲେ । ଏଣୁ ଉପମାଯୋଗ୍ୟ ସମସ୍ତ ବସ୍ତୁ ମାନଙ୍କୁ ଯତ୍ନ ପୂର୍ବକ ଏକାଠି କରି ଦେଇ ଗୋଟିଏ ସ୍ଥାନରେ ସଜାଇ ପାର୍ବତୀଙ୍କୁ ସୃଷ୍ଟି କଲେ ।

ଏ ଢଙ୍ଗରେ ଭଞ୍ଜ କବି ଆଉ ପାଦେ ଆଗେଇ ଯାଇ କହୁଛନ୍ତି :

"ନୋହିଲା ବିଶ୍ୱକର୍ମାମୟ ପିତୁଳା ବିରଚନେ ଚିତ୍ରଲେଖନ ।
ସୁଷମେ ସମେ ବାଲ୍ୟକାଳେ ଭାବିଲେ କେହି ନିର୍ମାଣ ଏ ବିଧିନେ ।
ହେଲା ଏ, ଯୋଗ କରୁ କରୁ କଳ୍ପନା
ଏ ଅଙ୍ଗ ସେ ଅଙ୍ଗ ଏପରି ତେସନ ପ୍ରସନ୍ନ କର୍ତ୍ତିବା କଳ୍ପନା ।"

( କୋ. ବ୍ର. ସୁ. ୭।୨୪ )

ବାଲ୍ୟାବସ୍ଥାରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ସମାନରେ ଗୋଟିଏ ପିତୁଳା ନିର୍ମାଣ କରିବାକୁ ବିଶ୍ୱକର୍ମା ଚେଷ୍ଟା କଲେ, ହେଲା ନାହିଁ । ଅସୁର ଶିଳ୍ପୀ ମୟ ମଧ୍ୟ ଚିତ୍ରରେ ଆଙ୍କିବାକୁ ଚାହିଁଲେ, ପାରିଲେ ନାହିଁ । ତେଣୁ ଭାବିଲେ, ବ୍ରହ୍ମା ସ୍ୱୟଂ ଗଢ଼ିଲେ କିପରି ? ବୋଧେ ଏ' ଅଙ୍ଗ ସେ' ଅଙ୍ଗ ନିର୍ମାଣ ଓ ଏଣୁ ତେଣୁ ସଂଯୋଗ କରୁ କରୁ ଦୈବ ଯୋଗରେ ଏପରି ପ୍ରସନ୍ନ ମୂର୍ତ୍ତିଟିଏ ଗଢ଼ି ହୋଇଗଲା । ନଚେତ୍ ସକାଳ ସଚେତନ ବୁଦ୍ଧି ପ୍ରୟୋଗରେ ଏହା କଳ୍ପନା ମଧ୍ୟ କରି ପାରିବା ଅସମ୍ଭବ !

ଏଠିକରେ କବି ଲେଖନୀ ଅଟକି ଗଲା ନାହିଁ । ଏ' ଅପରୂପା ସୁନ୍ଦରୀକି ଦେଖି ପୁଣି ସେ ବିଚାରୁଛନ୍ତି, ବୋଧହୁଏ ବିଧାତା ପ୍ରଥମେ ଲବଣୀରେ ସୁନ୍ଦରୀର ମୂର୍ତ୍ତି ଗଢ଼ି ବସିଲେ, କିନ୍ତୁ ସେ କୋମଳତାରେ ସମାନ ନ ହୋଇ ତରଳି ଯାଇ ଘୃତ ହୋଇଗଲା । ତହୁଁ ପ୍ରେମ ଓ ଅମୃତରେ ପିତୁଳା ଗଢ଼ି ତହିଁରେ ଭସ୍ମ ହୋଇ ଯାଇଥିବା କାମର ଜୀବନକୁ ପ୍ରଦାନ କରିବା ଫଳରେ ସୁନ୍ଦରୀର ଏହି ରୂପ ହେଲା । ଏହି ଯୋଗୁଁ ତାକୁ କାମ କଳାରେ ବିଚିତ୍ର କରି ତୋଳିଲି ।

"କୋମଳେ ଲବଣୀ ନୋହି ସମାନ । ତରଳି ହେଲଟି ହବ୍ୟଙ୍ଗବୀନ ।
ପ୍ରେମ ପୀୟୂଷ ପିତୁଳା ନିର୍ମାଣ । କାମ ଜିବ ଦାନୁ ହେଲା ପ୍ରମାଣ ସେ
କଳାରେ କି ଚିତ୍ର କଲି ଯେ" ( ୭ମ ଛାନ୍ଦ ୨୫ପଦ)

॥ ସ୍ୱର ॥

Digitized by PPRACHIN, SOA

ପ୍ରେମ ଏବଂ ଅମୃତର ସାର ଭାଗରେ ବିଧାତା ରାଜକୁମାରୀଙ୍କୁ ଗଢ଼ି ଅସାର ଭାଗରେ ଉପମା ମାନଙ୍କୁ ଗଢ଼ିଲା । (୪) ଏଣୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଉରୁ ସହିତ ସମାନ ହୋଇ ନପାରିବାରୁ କଦଳୀ ବୃକ୍ଷ ଅଧୋମୁଖ ହେଲା । ଜବାକୁସୁମ ଅଧର ସଙ୍ଗେ ସମାନ ନ ହେବା ଯୋଗୁଁ ନିଜ ଶୋଭାକୁ ଦଳି ହୋଇ ଜଳା ପଡ଼ିଗଲା । ଚନ୍ଦନ ଦେହର ଶୀତଳତା ସଙ୍ଗେ ସମାନ ହୋଇ ନ ପାରି ଦୁଃଖରେ କାଠ ହୋଇଗଲା । ମୁକ୍ତା ଦନ୍ତ ସଙ୍ଗରେ ସମାନ ହୋଇ ନ ପାରିବା ଯୋଗୁଁ ଶାମୁକାକୁ ଆଶ୍ରା କଲା-

"ଫଳେ ଅଧମୁଖ ହେଲା କଦଳୀ । ଜବା କାଳିମା ରଙ୍ଗେ ଶୋଭିବଳି
ଖେଦୁଁ ଇନ୍ଧନ ହୋଇଲା ଚନ୍ଦନ । କଲା ମୁକୁତା ଶାମୁକେ ସଦନ ।" (୩/୩୫)

ଉପେନ୍ଦ୍ରଙ୍କର ସୌନ୍ଦର୍ଯ୍ୟ ବିଶ୍ୱ ଜଗତରେ ବିସ୍ତୃତ ହୋଇ ପଡ଼ିଥିବା ସମ୍ପୂର୍ଣ୍ଣ ସୌନ୍ଦର୍ଯ୍ୟର ପୁଞ୍ଜିଭୂତ ମୂର୍ତ୍ତି । ନାରୀ ଦେହ ମଧ୍ୟରେ ଯେଉଁ ଅପରୂପ କାନ୍ତି ପ୍ରକାଶ ପାଇଥାଏ ତାହା ପ୍ରକୃତିର ବିଭିନ୍ନ ପଦାର୍ଥ ମଧ୍ୟରେ ପ୍ରତିବିମ୍ବିତ ।

ସଂସ୍କୃତ ସାହିତ୍ୟରେ କାଳିଦାସଙ୍କର ଯକ୍ଷ ଆପଣା ପ୍ରିୟାର ରୂପ ସୌନ୍ଦର୍ଯ୍ୟକୁ ପ୍ରକୃତି ରାଜ୍ୟରେ କୌଣସି ଗୋଟିଏ ସ୍ଥାନରେ ଏକତ୍ର ଦେଖିବା ନିମନ୍ତେ ଅଭିଳାଷ ପୋଷଣ କରିଥିଲା । କିନ୍ତୁ ତାକୁ ଏକାନ୍ତ ନିରାଶ ହେବାକୁ ପଡ଼ିଲା । ଯକ୍ଷ ପ୍ରେୟସୀ ସର୍ବଶ୍ରେଷ୍ଠ ତିଳୋତ୍ତମା ଏବଂ ବିଧାତାର ପୂର୍ଣ୍ଣ ସୌନ୍ଦର୍ଯ୍ୟ ସର୍ଜ୍ଜନାର ସର୍ବୋତ୍କୃଷ୍ଟ ପ୍ରତିଫଳ ଅଟେ । ବିରହୀ ଯକ୍ଷର କାମନା ଏହିପରି-

"ଶ୍ୟାମା ସ୍ୱଙ୍ଗ ଚକିତ ହରିଣୀ ପ୍ରେକ୍ଷଣେ ଦୃଷ୍ଟି ପାତଂ
ବକ୍ତ୍ର ଚ୍ଛାୟାଂ ଶଶିନି ଶିଖିନାଂ ବର୍ହଭାରେଷୁ କେଶାନ୍
ଉତ୍ପଶ୍ୟାମି ପ୍ରତନୁଷୁ ନଦୀ ବୀଚିଷୁ ଭ୍ରୂବିଳାସାନ୍
ହନ୍ତୈକସ୍ମିନ୍ କ୍ୱଚିଦପି ନ ତେ ଚଣ୍ଡୀ ସାଦୃଶ୍ୟମସ୍ତି ।"
( ଉତ୍ତର ମେଘ ୪୬ )

ହେ ପ୍ରିୟେ ! ମୁଁ ଏଠି ପ୍ରିୟଙ୍ଗୁଲତାରେ ତୁମର ଶରୀର, ସନ୍ତ୍ରା ହରିଣୀର ନେତ୍ରରେ ତୁମର ଆଖି, ମୟୂର ପୁଚ୍ଛରେ ତୁମର କେଶ, ଏବଂ ନଦୀର ମୃଦୁ ଊର୍ମି

---

(୪) ସାର ଭାଗ କଲା ନୃପ ଜେମାକୁ । ଅସାର ଭାଗ କଲା ଉପମାକୁ । (୭/୨୬)



Digitized by PPRACHIN, SOA

ସଶିରେ ତୁମର ଚୂର୍ଣ୍ଣ କୁନ୍ତଳର ଶୋଭା ଦେଖୁଛୁ । ତେବେ ବ ହେ ଦେବୀ, ମୁଁ ତୁମର ପୂର୍ଣ୍ଣ ସୌନ୍ଦର୍ଯ୍ୟ କୌଣସି ଗୋଟିଏ ସ୍ଥାନରେ ବସ୍ତୁ ମଧ୍ୟରେ ପ୍ରତ୍ୟକ୍ଷ କରି ପାରୁନାହିଁ ! ଅନୁରୂପ ବର୍ଣ୍ଣନାର ସମାନ୍ତରାଳ ରୂପ ଚନ୍ଦ୍ର ଭଞ୍ଜ କାବ୍ୟର ଛନ୍ଦେ ଛନ୍ଦେ ଦେଖିବାକୁ ମିଳିଥାଏ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର କଣ୍ଠ ଶଙ୍ଖ ଅପେକ୍ଷା ଅଧିକ ସୁନ୍ଦର, କଟୀ ଡ଼ମ୍ବରୁ ଠାରୁ ସରୁ , ଏଣୁ ସେ ଦୁହେଁ ଯଥାକ୍ରମେ ସେମାନଙ୍କର ଧାରଣକାରୀ ଶ୍ରୀକୃଷ୍ଣ ଏବଂ ମହାଦେବଙ୍କୁ ଜଣାଇଲେ, "ଏ ସୁନ୍ଦରୀ ଯୌବନ କୁନ୍ଦରେ କୁନ୍ଦ ହୋଇ କାମ ଦେବଙ୍କର ସୁବର୍ଣ୍ଣ ଯନ୍ତ୍ରରେ ନିର୍ମିତ ପିତୁଳା ଦିଶୁଛି । (୫) କୁମାରୀର ସୌନ୍ଦର୍ଯ୍ୟ ଦେବତାମାନଙ୍କ ପାଇଁ ମଧ୍ୟ ଦୁର୍ଲ୍ଲଭ ଅଟେ । ସେହି ଅପରୂପା ସୁନ୍ଦରୀର ଦର୍ଶନରେ ଅଶ୍ୱିନୀ କୁମାର ଘୋଡ଼ାମୁହାଁ ହୋଇଥିବା ଯୋଗୁଁ ଦୁଃଖିତ ହେଲେ । ଚନ୍ଦ୍ର ନିଜର କଳଙ୍କ ପାଇଁ, ଇନ୍ଦ୍ର ସହସ୍ର ନେତ୍ର ହେତୁ ସୁନ୍ଦର କଦାକାରଣ ନିମନ୍ତେ, ଗରୁଡ଼ ପକ୍ଷୀ ସନ୍ତାନ ହୋଇଥିବାରୁ , କୁବେର ଯାଦୁଆ ହୋଇଥିବା କାରଣରୁ , ନୈଋତଙ୍କର ବାହନ ଶବ ହୋଇଥିବାରୁ , ଯମ ଗୋଦରା ଗୋଡ଼ ପାଇଁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନିକଟରେ ନିଜକୁ ହେୟ ମନେ କରୁଛନ୍ତି । (୬) ପୁଣି ପୂର୍ଣ୍ଣଚନ୍ଦ୍ର ସୁନ୍ଦରୀର ମୁଖ ସହିତ ସମାନ ହୋଇ ନପାରି ସୁଧାମୟ ଦେହରେ କଳଙ୍କର କାଳିମା ବହନ କରି ଭୟରେ ପୃଥିବୀରେ ନ ରହି ଆକାଶରେ ପରିକ୍ରମା କରୁଛି । ମନୋହର ଚକୁରର ସମକକ୍ଷ ହୋଇ ନପାରିବା କାରଣରୁ ମୟୂର ପୁଚ୍ଛ ଏବଂ ମୃଗ ଚ୍ଚମର ପଛେ ପଛେ ଦୌଡ଼ିଛନ୍ତି । (୭) ସେହି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଦିବ୍ୟ ସ୍ତ୍ରୀ ମାନଙ୍କର ଗର୍ଭରେ ମଣ୍ଡିତ କୁସୁମ ତୁଲ୍ୟ, ନାଗ ନାରୀ ମାନଙ୍କର ଶିରୋମଣି ସ୍ୱରୂପା ଏବଂ ପୃଥିବୀର ସ୍ତ୍ରୀ ମାନଙ୍କର ବଚନ ତିଳକ ପରି । ମହିମାରେ ସେ ଏହି ତିନି ଭୁବନକୁ ପରାଭୂତ କରି ସୁନ୍ଦରୀଙ୍କ ଭିତରେ ଶିରୋଭୂଷଣ ହୋଇ ରହିଛି ।

"ସୁମନା କାମିନୀ-ଗର୍ଭ-ସୁମନା , ନାଗ-ନାଗରୀ ଶିରୋମଣି ସିନା
ମହି ମହିଳା ବଚନ ତିଳକ । ମହିମା ମହିମ କରେ ତ୍ରୈଲୋକ୍ୟ ସେ
ପାଇଛି ଟୀକା ସୁନ୍ଦରୀ ଯାକେ ।" × × (୮ମ ଛାନ୍ଦ ୭ଷ୍ଣ ପଦ)

ଭାବର ସୂକ୍ଷ୍ମତା ଓ ଅନବଦ୍ୟମୟ ସୁକୁମାର ପରିପ୍ରକାଶ ପାଇଁ କାଳିଦାସଙ୍କ ତୁଲ୍ୟ ଭଞ୍ଜ ଅତ୍ୟନ୍ତ ଧୀ-ମନ୍ତ୍ରର ସହିତ ଉପମା ଅଳଙ୍କାର ଗୁଡ଼ିକ ପ୍ରୟୋଗ କରିଛନ୍ତି ।

---

(୫) ୫ମ ଛାନ୍ଦ ୯ମ ପଦ
(୬) ୫ମ ଛାନ୍ଦ ୧୪-୧୬ ପଦ
(୭) ୭ଷ୍ଣ ଛାନ୍ଦ ୧୨-୧୩ ପଦ



Digitized by PPRACHIN, SOA

ଆଲଙ୍କାରିକ ଅପ୍ପୟ୍ୟା ଦୀକ୍ଷିତଙ୍କ ଭାଷାରେ କାବ୍ୟ ରସିକ ମାନଙ୍କର ଚିତ୍ତରଞ୍ଜନ କରିବା ପାଇଁ ଯେତେ ଯେତେକଳା କୌଶଳ ରହିଛି ତା'ର ମୂଳରେ ଅଛି ଏକମାତ୍ର ଉପମା ରୂପିଣୀ ନଟୀର ବିଚିତ୍ର ଲୀଳା ବିଳାସ । ସେ ବିଚିତ୍ର ଭୂମିକା ଗ୍ରହଣ କରି କାବ୍ୟରୂପ ରଙ୍ଗ ମଞ୍ଚରେ ନୃତ୍ୟ କରିଥାଏ । (୮) ଉପମାର ବର୍ଣ୍ଣାଢ଼୍ୟ ମଧ୍ୟରେ ଉଭୟେ କାଳିଦାସ ଏବଂ ଭଞ୍ଜ ନାୟିକାର ନଖ ଶିଖ ବର୍ଣ୍ଣନାରେ ଚମତ୍କାରିତା ପ୍ରଦର୍ଶନ କରିଛନ୍ତି । କୁମାର ସମ୍ଭବମ୍‌ରେ ପାର୍ବତୀଙ୍କର ଶରୀରର ମଧ୍ୟ ଭାଗ ବର୍ଣ୍ଣନା-ରେ କାଳିଦାସ କହୁଛନ୍ତି , ପାର୍ବତୀଙ୍କର ନୀବୀକୁ ଲଙ୍ଘନ କରି ଗଭୀର ନାଭି ପର୍ଯ୍ୟନ୍ତ ପହଞ୍ଚିଥିବା ରୋମରାଜୀର ସୂକ୍ଷ୍ମ ତ୍ରିବଳୀ ଦେଖି ଏପରି ମନକୁ ଆସୁଛି କାମଦେବ ଯେପରିକି ସ୍ତନାଦ୍ରି ଅଙ୍କ ନିକଟରେ ପହଞ୍ଚିବା ପାଇଁ ନବ ଯୌବନ ସୁନ୍ଦର ତିନିଗୋଟି ପାହାଚ ଗଢ଼ି ଦେଇଛି !

"ମଧ୍ୟେନ ସା ବେଦି ବିଲଗ୍ନ ମଧ୍ୟା ବଳି ତ୍ରୟଂ ଚାରୁ ବଭାର ବାଳା
ଆରୋହଣାର୍ଥ ନବ ଯୌବନେନ କାମସ୍ୟ ସୋପାନମିବ ପ୍ରଯୁକ୍ତମ୍ ।"
( କୁମାର ସମ୍ଭବ ୧/୩୯ )

କଳ୍ପନାର ଅନୁପମ ମାଧୁରୀ ଭଞ୍ଜୀୟ ସୃଷ୍ଟିରେ ମଧ୍ୟ କିଛି କମ୍ ନୁହେଁ—

"ଲୋକେ ଅବଳା ଯେ ବାଳାକୁ କହି । ଅଦୃଷ୍ଟି ଅଶ୍ରୁତ ବଳ ଦେଖାଇ
ବନ୍ଦୀ କରି ତିନି ବଳୀ ଏଥିକି । ମର୍କତ ଧନୁ କେ ବେନି ପୃଥ୍ୱୀକି ସେ
ନିଷ୍ଟେ ଧରି ଅଛି ଟେକି ଯେ ।" ( ୭ମ ଛାନ୍ଦ ୨୨ଶ ପଦ )

ଜଗତରେ ସାଧାରଣତଃ ସ୍ତ୍ରୀ ମାନଙ୍କୁ ଅବଳା ବୋଲି କୁହାଯାଇଥାଏ । ଏ ସୁନ୍ଦରୀ କିନ୍ତୁ ଅଦୃଷ୍ଟ ପୂର୍ବ, ଅଶ୍ରୁତ ପୂର୍ବ ବଳର ପରାକାଷ୍ଠା ଦେଖାଉଛି । କାରଣବିଷ୍ଣୁ ଗୋଟିଏ ବଳୀକୁ ପାତାଳରେ ବନ୍ଦୀ କରିଥିଲେ ଅଥଚ ଏ ନାରୀ ତ୍ରିବଳୀକୁ ହୃଦୟରେ ବନ୍ଦୀ କରି ରଖିଛି । ଅର୍ଜ୍ଜୁନ ଧନୁ ସାହାଯ୍ୟରେ ଗୋଟିଏ ପୃଥ୍ୱୀକି ଟେକି ଧରିଥିଲେ ମାତ୍ର ଏ ମର୍କତ ଧନୁ ସଦୃଶ ରୋମାବଳୀରେ ଦୁଇଟି ପୃଥ୍ୱୀ ସଦୃଶ ସ୍ତନକୁ ଟେକି ଧରିଛି ।

---

(୮) "ଉପମୈକା ଶୈଳୁଷୀ ସମ୍ପ୍ରାପ୍ତା ଚିତ୍ର ଭୂମିକା-ଭେଦାନ୍
ରଞ୍ଜୟନ୍ତୀ କାବ୍ୟ ରଙ୍ଗେ ନୃତ୍ୟନ୍ତୀ ତଦ୍ୱିଦାଂ ଚେତଃ
( ଚିତ୍ର ମୀମାଂସା )

॥ ସାତ ॥

Digitized by PPRACHIN, SOA

ଯୌବନର ପଲ୍ଲବରେ 'ସ୍ତୋକନମ୍ରା' ସ୍ତନ ଭାର ବର୍ଣ୍ଣନାରେ କାଳିଦାସ ଲେଖନୀ ପଞ୍ଚମୁଖ । ଉତ୍ପଳାକ୍ଷୀ ଉମାଙ୍କର ପାଣ୍ଡୁର ପ୍ରବୃଦ୍ଧ ସ୍ତନ ପରସ୍ପର ସହିତ ଏପରି ସନ୍ନିଧ ଯେ ତନ୍ମଧ୍ୟରେ ମୃଣାଳ ସୂତ୍ରଟିଏ ମଧ୍ୟ ରହି ପାରିବ ନାହିଁ । (୯) ପ୍ରାତଃ କାଳୀନ ସୂର୍ଯ୍ୟ ତୁଲ୍ୟ ଲାଲ୍ ବସ୍ତ୍ର ପରିହିତା ଉମା ସ୍ତନ ଭାରରେ ଅବନମ୍ରା ହୋଇ ଏପରି ଶୋଭାମୟୀ ଦେଖା ଯାଉଥିଲେ ଯେପରିକି ପୁଷ୍ପଗୁଚ୍ଛର ଭାରରେ ନଇଁ ପଡ଼ିଥିବା ନୂତନ ପଲ୍ଲବିନୀ ଲତା ! (୧୦) ସୀତା ମଧ୍ୟ ଥିଲେ ସ୍ତୋକନମ୍ରା । ତେଣୁ ରାମ ତାଙ୍କର ବିଚ୍ଛେଦରେ ଅଶୋକ ଲତାକୁ ଆଲିଙ୍ଗନ କରିବା ପାଇଁ ଅଗ୍ରସର ହେଉଥିଲେ କାରଣ, ତାହା ପୁଷ୍ପଗୁଚ୍ଛର ଭାରରେ ନଇଁ ପଡ଼ି ସ୍ତନର ଗୁରୁ ଭାରରେ ଅବନତା ସୀତାଙ୍କର ଭ୍ରମ ଉପୁଜାଉ ଥିଲା । (୧୧) ରାଜା କୁଶଙ୍କର ରାଣୀମାନେ ଜଳ ବିହାର କାଳରେ ଉନ୍ନତ ସ୍ତନ ଏବଂ ନିତମ୍ବର ଗୁରୁତା ହେତୁ ସ୍ୱଚ୍ଛନ୍ଦରେ ଜଳ ମଧ୍ୟରେ ସଞ୍ଚରଣ କରି ପାରୁ ନ ଥିଲେ । (୧୨) ତାଙ୍କର ଉର୍ବଶୀ ଅଳ୍ପ 'କୁଚ୍ଛ୍ରାନ୍ତରା' ମାଳବିକା ମଧ୍ୟ ସଂକ୍ଷିପ୍ତ ନିବିଡ଼ୋନ୍ନତ ସ୍ତନର ଅଧିକାରିଣୀ । ହେମନ୍ତ କାଳରେ ପ୍ରାତଃ ସମୟରେ କେଶ ବିନ୍ୟାସ କରୁଥିବା ସୁନ୍ଦରୀ ମାନେ ପୀନୋନ୍ନତ ସ୍ତନ ଭାରରେ ଅବନତା । (୧୩)

ନବ ଯୌବନର ଉଦ୍ଭିନ୍ନ ପୁଷ୍ଟ ଅଙ୍ଗନା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବକ୍ଷ ସୌନ୍ଦର୍ଯ୍ୟ ଉପେନ୍ଦ୍ର ଭଞ୍ଜଙ୍କୁ ମଧ୍ୟ ଉନ୍ମାଦିତ କରିଛି । ମନେ କରିଛନ୍ତି କାମଦେବ

---

(୯) "ମୃଣାଳ ସୂତ୍ରାନ୍ତର ମପ୍ୟଲଭ୍ୟମ୍—କୁମାର ସମ୍ଭବମ୍

(୧୦) "ଆବର୍ଜିତା କିଞ୍ଚିଦିବ ସ୍ତନାଭ୍ୟାଂ ବାସୋବସାନା ତରୁଣାର୍କ ରାଗମ୍

ପର୍ଯ୍ୟାପ୍ତ ପୁଷ୍ପ ସ୍ତବକା ନମ୍ରା ସଞ୍ଚାରିଣୀ ପଲ୍ଲବିନୀ ଲତେବ"

—କୁମାର ସମ୍ଭବମ୍ (୩/୫୪)

(୧୧) "ଇମାଂ ତଟାଶୋକ ଲତାଂ ଚ ତନ୍ୱୀ ସ୍ତନାଭିରାମସ୍ତବକାଭିନମ୍ରାମ୍"

(ରଘୁବଂଶ ୧୩/୩୨)

(୧୨) "ଏ ତା ଗୁରୁ ଶ୍ରୋଣୀ ପୟୋଧର ତଦାତ୍ମାନ୍ ଯୁଦ୍ଧୋରୁମଶକ୍ତୁବତ୍ୟଃ"

(ରଘୁବଂଶ ୧୬/୬୦)

(୧୩) "ପୀନୋନ୍ନତ ସ୍ତନ ଭରାନତ ଗାତ୍ରୟଷ୍ଟ୍ୟନ୍ୟା କୁର୍ବନ୍ତି

କେଶରଚନା ପରାସ୍ତରଣ୍ୟଃ"

(ଋତୁ ସଂହାର ୪/୧୬)



Digitized by PPRACHIN, SOA

ପ୍ରେମରତ୍ନ ପୂର୍ଣ୍ଣକଳଶ ସୁବର୍ଣ୍ଣର ଫରୁଆକୁ ନିଜ ଭଣ୍ଡାରରେ ଥୋଇଛୁ କି ?

"ସେ ଗୋଷ୍ଟ ଉଚ୍ଚ କୁଚ ମନ ମୋହି
ପ୍ରେମରତ୍ନ ଭରି କାମ ଭଣ୍ଡାରଙ୍କ ହେମ ସମ୍ପୁଟକ ଥୋଇ ।"
(୩° ଗ୍ରନ୍ଥ ୭ମ ପଦ)

ପୁଣି ଏ ବଡ଼ ବିଚିତ୍ର କଥା । ସୁନ୍ଦରୀର ତମାଳ ଲତା ତୁଲ୍ୟ ଦେହ ବଲ୍ଲରୀକୁ ଆଶ୍ରୟ କରି ରୋମାବଳୀର ଦଣ୍ଡ ଉପରେ ଦୁଇଟି ନଡ଼ିଆ ଫଳିଛି । ପୁଣି ନଡ଼ିଆ ଉପରେ ଦୁଇଟି ଗୁଆ ଜନ୍ମିଛି !

"ଅସ୍ତ ନ ପାଇ ଦୃଷ୍ଟି ତହୁଁ ଖସି । ଉରଜ ଉପରେ ପଡ଼ିଲା ଆସି ।
ରୋମାବଳୀ ଦଣ୍ଡ ଅବଲମ୍ବନେ । ରହି ରହିଲେ ତେତେ ଅନୁମାନେ ସେ ।
ଏ ଅତି ଅଦ୍ଭୁତ ସ୍ଥଳୀ ଯେ
ବେନି ନାରିକେଳୁ ପୂଗ ଜନମିଛି ତମାଳ ଲତାରେ ଫଳି ଯେ ।"
(୭ମ ଗ୍ରନ୍ଥ ୧୭ଶ ପଦ)

ପୀନୋନ୍ନତ କୋମଳ ସ୍ତନ ପୁନ୍ନାଗ ଫଳ ତୁଲ୍ୟ ଏବଂ କଠିନ ସ୍ତନାଗ୍ର ଗୁବାକ ପରି । ତାହା ଦେଖି ପୁରୁଷ ଶ୍ରେଷ୍ଠ (ପୁନ୍ନାଗ) ମାନଙ୍କର (ପୁଙ୍ଗ) ଧୈର୍ଯ୍ୟ ଉକୁଣ୍ଠି ପଡ଼ିଲା । ସେ ସ୍ତନ ପୁଣି ମେରୁ ପର୍ବତ (ସୁମନାଳୟ) ପରି ଉନ୍ନତ ହେବାରୁ ସ୍ୱର୍ଗ (ସୁମନାଳୟ) ପରି ଶୋଭା ଧାରଣ କରି, ସେ ପୃଥିବୀ ତୁଲ୍ୟା, ଉଦରର ତ୍ରିବଳୀ ପାତାଳ (ବଳି ସଦନ) ତୁଲ୍ୟା, 'ଫଳତଃ ସେ' ତ୍ରିଭୁବନର ଅନୁରାଗ ଉତ୍ପାଦିକା ହୋଇ ଆଦରଣୀୟା ହେଲା ।

"ହେଲା ସେ ସୁମନାଳୟ ଉଦୟ । ରସେ-ବାସ କରି କଲା ହୃଦୟ ।
ବଳୀ ସଦନ ହୋଇଲା ଉଦର । ତ୍ରିଭୁବନ ସରଞ୍ଜନ ଆଦର ।"
(୩ୟ ଗ୍ରନ୍ଥ ୭ମ ପଦ)

କାଠିନ୍ୟରେ ଶ୍ରୀଫଳଙ୍କ ମଧ୍ୟ ସେହି ସ୍ତନ ସହିତ ସମାନ ନ ହେବାରୁ ତା'ର ଶାଣ ପଣ ଭାଙ୍ଗି ଗଲାଣି । ତାହା ପୃଥିବୀରେ ଅମୃତ ଭଣ୍ଡାର ହୋଇଅଛି । ତାକୁ ଦେଖି ନାରିକେଳ ଫଳ ଇତିରେ ଗଣା ହେଉ ନାହିଁ । ତେଣୁ ଫଳ ମଧ୍ୟ



Digitized by PPRACHIN, SOA

ଅଖିକୁ ନ ରୁଚବାରୁ ତଳକୁ ମୁଣ୍ଡ ନୁଆଇଁ ଓଲଗି ହୋଇପଡ଼ି ରହିଛି ।

"କୁଚେ କଠିନକୁ ଘେନମା ପେନ । ସେ ନ୍ୟେ ଅଣି ଆଣି ଭର୍ତ୍ସିଲିଣି ।
ବସୁଧାରେ ସୁଧା କୋଷ ବୋଲଇ । ଶ୍ରୀଫଳ ଫଳ ବିଫଳ କରଇ
ରୁଚକ ନେଇ ରୁଚକ ନୋହି । ଓଲଗି ଓଲଗି ହେନ ନଅଇ ।"
(୮ମ ଛାନ୍ଦ ୧୦ମ ପଦ)

କୃଷ୍ଣ ବକ୍ଷ ବନ୍ଧନୀରେ ଆଗ୍ରହିତ ସେହି ଉନ୍ନତ ସ୍ତନ ଯୁଗଳ ପୁଣି ଦେଖିଲେ ମନେ ହେଉଛି ଯେପରିକି ନ୍ୟେ ବିଷପାନ ଜନିତ ଜ୍ୱାଳା ଶାନ୍ତ କରିବା ଉଦ୍ଦେଶ୍ୟରେ କାଳିନ୍ଦୀରେ ପଶି ସ୍ନାନ କରୁଛନ୍ତି !

"କଳା କାଞ୍ଚୁଲି ଗଳି । ଅଛି ସ୍ତନ ଶୋଭା ଦଶି ।
ବିଷ ଜ୍ୱାଳା ଶାନ୍ତ ସ୍ନାନ କି କରନ୍ତି ନ୍ୟେ କାଳିନ୍ଦୀରେ ପଶି ।"
(୧୪ଶ ଛାନ୍ଦ ୨୮ଶ ପଦ)

ସୌନ୍ଦର୍ଯ୍ୟାସକ୍ତି ମଧ୍ୟରେ ହିଁ ପ୍ରେମର କମନୀୟ ମୋହନ ରୂପ ଫୁଟି ଉଠିଥାଏ । ସୌନ୍ଦର୍ଯ୍ୟ ଯେଉଁଠାରେ ପ୍ରତ୍ୟକ୍ଷ ପ୍ରେମ ସେହିଠାରେ ସ୍ୱତଃସ୍ଫୂର୍ତ୍ତି । ଯୁଗ ଭେଦରେ ସବୁ ଦେଶର କବି ଗୋଷ୍ଠି ଏହି ସତ୍ୟକୁ ସ୍ୱୀକାର କରି ଆସିଛନ୍ତି । ସୌନ୍ଦର୍ଯ୍ୟ ଏବଂ ସୁନ୍ଦର, ପ୍ରେମ ଓ ପ୍ରେମିକ ଏକ । ଶ୍ରଦ୍ଧା ବା ନିଷ୍ଠାର ଏକମାତ୍ର ବିଷୟ ଯେପରି ସତ୍ୟ, ଜ୍ଞାନର ଏକମାତ୍ର ବିଷୟ ଯେପରି ମଙ୍ଗଳ, ପ୍ରେମର ଏକମାତ୍ର ବିଷୟ ସେହିପରି ସୌନ୍ଦର୍ଯ୍ୟ । ଧର୍ମ ଓ ଧର୍ମୀ ଭିତରେ ସ୍ୱରୂପଗତ କୌଣସି ପ୍ରଭେଦ ନାହିଁ । ନୈଷଧ ଚରିତରେ ଶ୍ରୀହର୍ଷ ରାଜା ନଳଙ୍କ ମୁଖରେ ହଂସକୁ ଏହି କଥା ଶୁଣାଇଛନ୍ତି । (୧୪) ଆକୃତିଗତ ସୌନ୍ଦର୍ଯ୍ୟ ଅନ୍ତଃସୌନ୍ଦର୍ଯ୍ୟର ପରିପୂରକ । ରୂପ ସୌନ୍ଦର୍ଯ୍ୟର ସ୍ୱର୍ଗୀୟ ରାଜ୍ୟରେ କଳଙ୍କର କଳାଦାଗ ରହି ପାରେନା । କାଳିଦାସ ଏବଂ Shakespearଙ୍କର ଏହି ଚିନ୍ତାରେ ସାଦୃଶ୍ୟ ଦେଖାଯାଇଥାଏ । (୧୫)

---

(୧୪) "ଯତାକୃତି ସ୍ତତ୍ରଗୁଣ ବସନ୍ତି" (୨ୟ ସର୍ଗ ୫୨ ପଦ)
(୧୫) "ନତା ଝଣା ଅକୃତି ବିଶେଷ ଗୁଣା ବିରୋଧିନୀ ଭବନ୍ତି ।" ତୁଳନୀୟ ଏବଂ "There is nothing ili can dwell in such (ଶାକୁନ୍ତଳଂ ୨ୟ ଅଙ୍କ) ସହିତ a temple"-(Tempest, Shakespear)



Digitized by PPRACHIN, SOA

ଇଂରେଜ କବି Spencer ସୌନ୍ଦର୍ଯ୍ୟର ଅଭିବ୍ୟକ୍ତ ତଥା ବ୍ୟକ୍ତିକୁ ସ୍ୱର୍ଗୀୟ ଆଲୋକର ଉତ୍ସ ବୋଲି ଅଭିହିତ କରି ଅଛନ୍ତି । (୧୬) ପ୍ରେମର ରସାପ୍ଲୁତ ଭାବରେ ନାୟକ ନାୟିକା ତେଣୁ ପରସ୍ପର ଦର୍ଶନର ଅଭାବିତ ମୁହୂର୍ତ୍ତିଟିର ସୁଯୋଗକୁ ପ୍ରତୀକ୍ଷା କରି କଳ୍ପନା କରୁଛନ୍ତି-

"କି ବର୍ଣ୍ଣିବି ସୁହାସ ଅଳପ ପ୍ରକାଶରେ । ବାନ୍ଧନେବ ନୟନକୁ ମୋହନ ପାଶରେ
ଭାଲ ତିଳକ ରମ୍ୟକୁ । ଶ୍ରୁତିରେ ଖୋଜିଲେ ନ ପାଇବ ତା ସମକୁ ।
ରତି-ବର-ଶୋଭାକୁ ଛୁଇଁବ ନାହିଁ ଚିତ୍ତ । ଗୃହୁଁ ଥିଲେ ଭଙ୍ଗୀମାନ କଞ୍ଚିତ କଞ୍ଚିତ ।
ଏ ଭାଗ୍ୟକୁ ଅର୍ଜିବ କି । ସନମତ ଜାଣିଲି କ୍ଷଣି ମୁଁ ହେବି ବିକି ।"
(୧୧ଶ ଛାନ୍ଦ ୫-୬ ପଦ)

ଅନ୍ୟାନ୍ୟ ଅଙ୍ଗ ଶୋଭାକଥା ଛାଡ଼ନ୍ତୁ ; ଖାଲି ଲଲାଟରେ ଥିବା ତିଳକର ସୌନ୍ଦର୍ଯ୍ୟକୁ ବେଦ ସାରା ଖୋଜିଲେ ମଧ୍ୟ ତା'ର ସମତୁଲ ସୁନ୍ଦର ବସ୍ତୁର ବର୍ଣ୍ଣନା ମିଳିବ ନାହିଁ । ରତି ଏବଂ କାମ ମଧ୍ୟ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ତା' ଆଗରେ ମ୍ଳାନ ପ୍ରଭ ହୋଇ ପଡ଼ିବେ । କୋଟି ବ୍ରହ୍ମାଣ୍ଡ ସାରା ଖୋଜି ଖୋଜି ତା' ସମାନ ସୁଷମାରେ କୌଣସି ବିକଳ୍ପ ନ ପାଇ, ଏ ସୁନ୍ଦରୀକୁ ବଶ କରି ପାରିବ ନାହିଁ ବୋଲି ଭାବି ଭାବି କୃଷ୍ଣ ନିଜ ଶରୀରକୁ କଳା କଲେ, ହର ମଧ୍ୟ ଯୋଗୀ ହୋଇଗଲେ । ଏଣୁ ଦୁର୍ଲ୍ଲଭ ପଦାର୍ଥ ମଧ୍ୟରେ ସେ ଦୁର୍ଲ୍ଲଭ, ମୋହନ କରିବାରେ ପୁଣି ମୋହନ ମୂର୍ତ୍ତି ।

"ଖୋଜିକି ତୋ ସମ ସୁଷମେ ଗୋଟିଏ କୋଟିଏ ବ୍ରହ୍ମାଣ୍ଡେ ନ ପାଇ
ବଶ କରି ନ ପାରିବା ଧିଆଇଁ ।
ବିରହ ଜ୍ୱାଳାରେ ହରି ତନୁ ବଳାକୁର ଗଲେ ଯୋଗୀ ହୋଇରେ । ସୁନ୍ଦରି !
ଏଣୁ ଦୁର୍ଲ୍ଲଭେ ଦୁର୍ଲ୍ଲଭ ତୁ ଅତି, ଦୁକେ ମୋହନେ ମୋହନ ମୂରତି ।"
(୨୨ଶ ଛାନ୍ଦ ୫ମ ପଦ)

ଅପ୍ରାପ୍ତି ମଧ୍ୟରେ ନାୟକ ନାୟିକାଙ୍କର ବିରହର ଅଶ୍ରୁ ଆହୁରି ରମଣୀୟ । Love is lovliest when enblemed in tears . ଯେପରି

---

(୧୬) For of the soul the body from doth fake ·
For soul is from and both the body make ."
(Hymn to beauty)

॥ ଏଗାର ॥

Digitized by PPRACHIN, SOA

ବିଷମ ଶିଳାର ଅବରୋଧରେ ନଦୀର ଧାରା ଅଧିକ ପ୍ରଖର ହୋଇଥାଏ ସେହିପରି ପ୍ରିୟ ସମାଗମ ସୁଖ ବାଧାପ୍ରାପ୍ତ ହେଲେ ପ୍ରେମର ସ୍ପନ୍ଦନ ଶତଗୁଣ ତୀବ୍ରତର ହୋଇ ଉଠେ । (୧୭) Romeoଙ୍କ ବିଚ୍ଛେଦରେ ରୋରୁଦ୍ୟମାନା ଜୁଲିଏଟ୍‌ଙ୍କର କୋହ-ଛ୍ୱାସର ଏକ ସହଜ ସୁନ୍ଦର ବର୍ଣ୍ଣନା Shakespearଙ୍କ ଲେଖନୀରେ-

"O She says nothing sir,
but weeps and weeps
And now falls on her bed; and then
oh Romeo cries,
And down falls again ."(Romeo and Julliet
Act I Scene IV)

ଅଶ୍ରୁର ପ୍ଲାବନ ମଧ୍ୟରେ କାଳିଦାସ ପ୍ରଣୟୀ ଅନ୍ତରର ମର୍ମବ୍ୟଥା ପ୍ରକାଶ କରି କହୁଛି:

"ତ୍ୱା ମାଲିଖ୍ୟ ପ୍ରଣୟ କୁପିତାଂ ଧାତୁରାଗୈଃ ଶିଳାୟାଂ
ମାତ୍ମାନଂ ତେ ଚରଣ ପତିତଂ ଯାବଦିଚ୍ଛାମି କର୍ତୁମ୍ ।
ଅସ୍ରୈସ୍ତାବନ୍ମୁହୁରୁପଚିତୈ ର୍ଦୃଷ୍ଟି ରାଲୁପ୍ୟତେ ମେ
କ୍ରୂରସ୍ତସ୍ମିନ୍ନପି ନ ସହତେ ସଙ୍ଗମଂ ନୌ କୃତାନ୍ତଃ ।"
(ଉତ୍ତର ମେଘ ୪୭)

ହେ ପ୍ରିୟେ ! ଚଟାଣ ଉପରେ ମୁଁ ଗେରୁଆଦି ରଙ୍ଗ ସାହାଯ୍ୟରେ ତୁମର ପ୍ରଣୟ କୁପିତ ମୂର୍ତ୍ତି ତିଆରି କରି, କୋପ ଶାନ୍ତ ପାଇଁ ତୁମର ଚରଣ ତଳେ ନିଜକୁ ସମର୍ପିତ କରିବା ପାଇଁ ଚାହୁଁଛି । କିନ୍ତୁ ହାୟ ମୋର ଶତ ଚେଷ୍ଟା ସତ୍ତ୍ୱେ ସେ ରୂପ ମୁଁ ଆଙ୍କି ପାରୁ ନାହିଁ । ଆଖିରେ ମୋର ଅଶ୍ରୁର ପ୍ଲାବନ । କିଛି ଦେଖି ପାରୁ ନାହିଁ । ଏଣୁ କାଳ୍ପନିକ ସଙ୍ଗମ ମଧ୍ୟ ବିଧାତା କରାଇ ଦେଉ ନାହିଁ ।

---

(୧୭) "ନଦ୍ୟାଇବ ପ୍ରବାହୋ ବିଷମ ଶିଳା ସଙ୍କଟ ସ୍ଖଳିତ ବେଗଃ ବିଘ୍ନିତ ସମାଗମ ସୁଖୋ ମନସିଶୟଃ ଶତଗୁଣୀ ଭବତି ।" (ବିକ୍ରମୋର୍ବଶୀୟ ୩/୮)



Digitized by PPRACHIN, SOA

ପ୍ରିୟ ମିଳନାକାଂକ୍ଷୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ମଧ୍ୟ ଅସୀମ ବ୍ୟଥାରେ ଘାରି ହୋଇ ପଲଙ୍କ ବଦଳରେ ଭୂମିଶଯ୍ୟା ଗ୍ରହଣ କରିଛି:

"ଏମନ୍ତ କାଳରେ ନୀରଜାନନୀ ନରବରଜା
ପଲଙ୍କେ ପଲକେ ନରହି କଲା ସେ ମହିଶଯ୍ୟା ।"

(୧୮ଶ ଛାନ୍ଦ ୧୯ ପଦ)

ବିଂଶ ଛାନ୍ଦରେ ପୁଷ୍ପକେତୁ ଏବଂ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବିରହ ବ୍ୟଥା ଶୁକସାରୀ ମୁଖରୁ ଦ୍ୱିରୁକ୍ତି ମାଧ୍ୟମରେ ପ୍ରକାଶ ପାଇଛି । ନବପଲ୍ଲବର ଶଯ୍ୟାଗ୍ରହଣ କରି ମଧ୍ୟ ରାଜକୁମାରର ଆଖି ଝରି ନିଦ ନାହିଁ । ସୁନ୍ଦରୀ ମଣିର ପ୍ରତିମୂର୍ତ୍ତିକୁ ଶ୍ରଦ୍ଧାରେ ନେଇ ସପତ୍ତି କରି ସବୁବେଳେ ପୁଷ୍କରିଣୀରେ ଭାସିଲା ପରି ବିରହ ଜ୍ୱାଳରେ ଭାସୁଛି । ରାଜକୁମାରୀ ମଧ୍ୟ ବିରହ ତାପ ହେତୁ, ଶୟନରେ ଲବେ ମାତ୍ର ନିଦ୍ରା ଆସୁନାହିଁ । ଦେବତା ମାନଙ୍କ ପରି ପଲକହୀନ ହେବାରେ ତା'ର ଆନନ୍ଦ । ବିରହରେ ଆଖିର ପତା ମଧ୍ୟ ପଡୁନାହିଁ । ପ୍ରତି ଦିଗରେ ପୁରୁଷର ହର୍ଷୋଚ୍ଛଳ ମୁଖଟି ଯେପରିକି ଫୁଟି ଉଠୁଛି । ଭାବାବେଗରେ ବିହ୍ୱଳ ହୋଇ ଶେଯରେ ପଡ଼ି କହୁଛି-ହେ ବୀର, ମୋତେ ରକ୍ଷାକର । ପ୍ରଣୟସିକ୍ତ ନାୟକ ନାୟିକାଙ୍କର ଏହି ଉଭୟ ମନୋବ୍ୟଥା ଗୋଟିଏ ଗୋଟିଏ ପଦରେ ପ୍ରକାଶ ପାଇଛି ।

"ତା ପଲ୍ଲବ ଶୟନେ ନ ଆସେ ନିଦ୍ରା । ଲେଖା ନେତ୍ର-ସମ୍ପତ୍ତି ଶରଧା ଯେ ।
ବିରହେ ଭାସି ସେ ଯେ ସରସୀତର ।
ଆନନ ଦେଖେ ପ୍ରତି ଆଶାରେ ତାର ଯେ ।"

(୫ମ ପଦ)

ପ୍ରେମ ଏବଂ ସୌନ୍ଦର୍ଯ୍ୟର ଏ ଯେଉଁ ନିର୍ମଳ ସ୍ରୋତସ୍ୱିନୀ ଉପେନ୍ଦ୍ର ନିଜ ରଚନାରେ ପ୍ରବାହିତ କରାଇ ଅଛନ୍ତି, ତାହା ଯୁଗ ଯୁଗ ଧରି ମଣିଷର ମନକୁ ଉଚ୍ଚକିତ କରୁଥିବ । ରାଜ ଶେଖରଙ୍କ ଭାଷାରେ କେତେ କବିଙ୍କର ରଚନା ଘରର ଗୃହକାନ୍ଥ ମଧ୍ୟରେ ଆବଦ୍ଧ । ଆଉ କେତେକ କବିଙ୍କର ରଚନା ବନ୍ଧୁ ପରିଜନଙ୍କ ଘର ପର୍ଯ୍ୟନ୍ତ ପହଞ୍ଚି ପାରେ । ଆଉ କେତେକ କବିଙ୍କର କାବ୍ୟ ବିଦଗ୍ଧ ପାଠକମାନଙ୍କ ମୁଖରୁ ମୁଖ ଦେଇ ସମଗ୍ର ବିଶ୍ୱ ପରିଭ୍ରମଣ କରିଆସେ-



Digitized by PPRACHIN, SOA

"ଏକସ୍ୟ ତିଷ୍ଠତି କବେ ର୍ଗୃହ ଏବ କାବ୍ୟ-
ମନ୍ୟସ୍ୟ ଗଚ୍ଛତି ସୁହୃଦ୍‌ଭବାନ ଯାବତ୍ ।
ନ୍ୟସ୍ୟାବିଦଗ୍ଧ ବଦନେଷୁ ପଦାନ ଶଶ୍ୱତ
କସ୍ୟାଽପି ସଞ୍ଚରତି ବିଶ୍ୱକୁତୂହଳୀବ ।"

(ରାଜଶେଖର)

ଭଞ୍ଜ ହେଲେ ଶେଷୋକ୍ତ ଶ୍ରେଣୀର କବି, ସମଗ୍ର ମାନବତାର ମନୋମଞ୍ଜୁ କୋଷର ମଧୁର ଏବଂ ମନସ୍ୱୀ ଗାୟକ ।



ଶଙ୍କର,
ଭାଷା ସାହିତ୍ୟ ବିଭାଗ
ବାଙ୍କୀ କଲେଜ, ବାଙ୍କୀ (କଟକ)



Digitized by PPRACHIN, SOA

# ॥ ସଙ୍ଗୀତ ଶାସ୍ତ୍ର ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ॥

—ଡ଼କ୍ଟର ପିତାମ୍ବର ସ୍ୱାଇଁ

●

"ରଚିବି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଚରିତ
ସୁଜାତି ସୁମନା ପରି ହୋଇବି ଏ ଗୀତ ହେ ।"

( କୋ. ବ୍ର. ସୁ. ପ-୭୦ )

"ପୁରା କବୀନାଂ ଗଣନା ପ୍ରସଙ୍ଗେ
କନିଷ୍ଠିକାଧିଷ୍ଠିତ କାଳିଦାସ
ଅଦ୍ୟାପି ତତ୍ତୁଲ୍ୟ କବେର ଭାବାତ୍
ଅନାମିକା ସାର୍ଥବତୀ ବଭୂବ" ।

ସଂସ୍କୃତ କବିମାନଙ୍କର ମୂଲ୍ୟାଙ୍କନ କରିବାକୁ ଯାଇ କୌଣସି ବିଜ୍ଞ ସମାଲୋଚକ କାଳିଦାସଙ୍କୁ ସର୍ବଶ୍ରେଷ୍ଠ ସଂସ୍କୃତ କବି ଭାବରେ ଗ୍ରହଣ କରି ଅନ୍ୟ ଯେ କୌଣସି କବିମାନଙ୍କର ଅସ୍ତିତ୍ୱକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଏହା କେବଳ କାଳିଦାସଙ୍କ ପକ୍ଷରେ ଯେ ସତ୍ୟ ତାହା ନୁହେଁ, କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ । ମୋଟ ଉପରେ କହିବାକୁ ଗଲେ କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ସମକକ୍ଷ ପ୍ରତିଦ୍ୱନ୍ଦ୍ୱୀ କବି ଓଡ଼ିଆ ସାହିତ୍ୟରେ କେହି ନାହାଁନ୍ତି କହିଲେ ଚଳେ ।

ଉପେନ୍ଦ୍ରଭଞ୍ଜ ଯେ କେବଳ କବି ସମ୍ରାଟ ଥିଲେ ତାହା ନୁହେଁ, ସେ ଥିଲେ ମଧ୍ୟ ସଙ୍ଗୀତ ସମ୍ରାଟ । ତେଣୁ ସାଙ୍ଗୀତିକତା ଓ ଆଲଙ୍କାରିକତା ପାଇଁ ସେ ଆଙ୍କ ଗଣକବି ଭାବରେ ବର୍ଣ୍ଣିତ ହୋଇଛନ୍ତି । ଓଡ଼ିଆ ରୀତିଯୁଗ ପୂର୍ବରୁ ଯେଉଁ କାବ୍ୟ ଓ ମହାକାବ୍ୟ ସୃଷ୍ଟି ହୋଇଥିଲା ତାହା ପଦ୍ୟାଶ୍ରୟୀ ହୋଇଥିଲେ ମଧ୍ୟ, ସଙ୍ଗୀତାଶ୍ରୟୀ ନଥିଲା । କିନ୍ତୁ ସଙ୍ଗୀତ ସମ୍ରାଟ ଉପେନ୍ଦ୍ର ନିଗୂଢ଼ ଭାଷା ବିନ୍ୟାସ ମଧ୍ୟରେ ଛନ୍ଦୋବଦ୍ଧ କାବ୍ୟ ସୃଷ୍ଟି କରି ଏହି ରାଜ୍ୟକୁ ସଙ୍ଗୀତମୟ କରିଥିଲେ । ଫଳରେ ବିଭିନ୍ନ ପ୍ରକାର ରାଗ, ରାଗିଣୀ ତଥା ଛନ୍ଦରେ ଓଡ଼ିଆ ସାହିତ୍ୟ ବିକଶିତ ହେବାରେ ଲାଗିଲା । ଏହାର ସ୍ୱର ଲାଳିତ୍ୟର ନାଗେଶ୍ୱରୀ କଡ଼ି ଜନତାକୁ ମଧ୍ୟ ଆକୃଷ୍ଟ କଲା ।



Digitized by PPRACHIN, SOA

ଭାବାନୁସାର ତଥା ରସାନୁସାର ଶବ୍ଦ ପ୍ରୟୋଗ ଫଳରେ ସ୍ୱର ସଂଯୋଜନା କରି ଗାନ କଲେ ତାହା ଅତୀନ୍ଦ୍ରିୟ ଜଗତକୁ ଘେନିଗଲେ । ଜନଗଣର ଭାଷା ଏଥିରେ ବିଶେଷ ପ୍ରୟୋଗ କରା ନ ଯାଇଥିଲେ ମଧ୍ୟ, ସ୍ୱର ମନ୍ତ୍ର ପରି ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ଆସୁଛି । ତେଣୁ ଉପେନ୍ଦ୍ର ଭଞ୍ଜ ଏହି ରାଗ ରାଗିଣୀ ବିଶେଷ ପ୍ରୟୋଗ କରି ନିଜକୁ ସଙ୍ଗୀତ ସମ୍ରାଟ ରୂପେ ଉପସ୍ଥାପନ କରି ଯାଇଛନ୍ତି । ଭଞ୍ଜ ସାହିତ୍ୟର ଏହି ସାଙ୍ଗୀତିକତା ଗୁଣ ପାଇଁ ସେ ସଙ୍ଗୀତ ସମ୍ରାଟ ଭାବରେ 'ବିଳର ଚଷା' ନିକଟରେ ସୁପରିଚିତ ଏବଂ ଏଇଥିପାଇଁ ଗଣ କବି ଭାବରେ ମଧ୍ୟ ବନ୍ଦିତ ।

ଶାସ୍ତ୍ର ମତରେ ଗୀତ, ବାଦ୍ୟ ଓ ନୃତ୍ୟ—ଏହି ତିନିର ସମନ୍ୱୟରେ ସଙ୍ଗୀତ ସୃଷ୍ଟି ହୁଏ । ପୁଣି 'ନାଦ' ଏହି ଅଖିଳ ସଙ୍ଗୀତ ଶାସ୍ତ୍ରର ପ୍ରାଣ ସ୍ୱରୂପ ଅଟେ । ଗୀତ ଯେତେବେଳେ ବାଦ୍ୟ ଓ ନୃତ୍ୟ ଦ୍ୱାରା ବିଶେଷ ରୂପେ ସମନ୍ୱିତ ଅଥବା ପରିପୁଷ୍ଟ ହୁଏ, ସେତେବେଳେ ହିଁ ସଙ୍ଗୀତର ଉତ୍ପତ୍ତି ହୁଏ । (୭)

ପ୍ରାଚୀନ ମାନଙ୍କ ମତରେ ସାମବେଦରୁ ସଙ୍ଗୀତର ଉତ୍ପତ୍ତି । 'ସାମବେଦାଦିଦଂ ଗୀତଂ ସଙ୍ଜଗ୍ରାହ ପିତାମହଃ', ପିତାମହ ବ୍ରହ୍ମା ସର୍ବ ପ୍ରଥମେ ଏହି ସାମବେଦରୁ ସଙ୍ଗୀତ ସଂଗ୍ରହ କରିଥିଲେ । ସଙ୍ଗୀତ ଦୁଇ ପ୍ରକାର । ମାର୍ଗ ଓ ଦେଶୀ ସଙ୍ଗୀତ । ଯାହା ଅନାଦି କାଳରୁ ପ୍ରଚଳିତ ଓ ଶାସ୍ତ୍ରୋକ୍ତ ସର୍ବନିୟମ ସମ୍ପନ୍ନ, ଅକୃତ୍ରିମ ଓ ମଙ୍ଗଳ ପ୍ରଦ ଏବଂ ଭରତାଦି ମୁନିମାନଙ୍କ ଦ୍ୱାରା ଯାହା ଗାନ କରାଯାଇଅଛି, ତାହା ଗାନ ସଙ୍ଗୀତ ନାମରେ ପରିଚିତ, ବର୍ତ୍ତମାନ ଜନ ସମାଜରେ ଯେଉଁ ସଙ୍ଗୀତ ସାଧାରଣତ ପ୍ରଚଳିତ ତାହା ହିଁ ଦେଶୀ ସଙ୍ଗୀତ । (୮)

ନୃତ୍ୟ ଓ ସଙ୍ଗୀତ ବିଦ୍ୟାକୁ 'ଗନ୍ଧର୍ବ ବିଦ୍ୟା' କୁହାଯାଏ । ଏହି ବିଦ୍ୟାର ପ୍ରଚଳନ ଭାରତରେ ବହୁ ପ୍ରାଚୀନ । ଅଷ୍ଟାଦଶ ବିଦ୍ୟା ମଧ୍ୟରେ ଏହାର ପରି ଗଣନା କରାଯାଏ । ନାଟ୍ୟ ମନୋରମା ଗ୍ରନ୍ଥରେ ସଙ୍ଗୀତକୁ ପଞ୍ଚମବେଦ ଓ ତ୍ରିବର୍ଗ ଫଳ ଦାୟିନୀ ବୋଲି ପ୍ରଶଂସା କରାଯାଇ ଅଛି । (୯) ଅଭିନୟ ଚନ୍ଦ୍ରିକା । ଅନୁଯାୟୀ

---

(୭ ଗୀତଂ ବାଦ୍ୟଂ ତଥା ନୃତ୍ୟ ତ୍ରୟଂ ସଙ୍ଗୀତ ମୁଚ୍ୟତେ
ଅଖିଳ ସ୍ୟାସ୍ୟ ଶାସ୍ତ୍ରସ୍ୟ ନାଦୋହି ଜୀବିତୋପମଃ ।
ନୃତ୍ୟବାଦ୍ୟ ବିଶେଷାଭ୍ୟାଂ ଗାନଂ ଚେଦ୍ରୁପ ବୃଂହିତମ୍
ତଦୋ ସଙ୍ଗୀତ ମିତ୍ୟାହୁର୍ଲକ୍ଷ ଲକ୍ଷଣ କୋବିଦାଃ ।

(୮) ଶ୍ରୀ ଜଗବନ୍ଧୁ ସାହୁ, ସଙ୍ଗୀତ ସହଚର (୨ୟ ଭାଗ) ପ୍ର. ସଂ-୧୯୫୪, ପୃ-୩ ।

(୯) L. ରଘୁନାଥ ରଥ, ନାଟ୍ୟ ମନୋରମା, ପୃ-୨



Digitized by PPRACHIN, SOA

ନୃତ୍ୟ ମହାନ ଗୁଣ କାରକ ଓ ସଙ୍ଗ ଜ୍ଞାନଯୁକ୍ତ । ସଙ୍ଗୀତ ଦେବତା ବା ରାଜାଙ୍କ ସମକ୍ଷରେ ପରିବେଷଣ କରାଯିବା ବଧି ସଙ୍ଗତ ଅଟେ । (୧୦) କୌଣସି ଶୁଭ କାର୍ଯ୍ୟରେ ଗୀତ, ନୃତ୍ୟ, ବାଦ୍ୟ, ଶଙ୍ଖ ଓ ବଂଶୀ ବାଦନ ମଙ୍ଗଳପ୍ରଦ ବୋଲି କୁହାଯାଏ । (୧୧) ଅମର କୋଷରେ କୁହାଯାଇଛି ଗାନ ଯୋଗ୍ୟତା ଥିବା ସଙ୍ଗୀତକୁ ଗୀତ କୁହାଯାଏ ଅର୍ଥାତ୍ 'ଗୀତଂ ଗାନମିମେ ସମେ' (୧୨) । ଏହି ଗୀତ ଧର୍ମୀ ଗୀତିକବିତା ଉପରେ ମତ ଦେବାକୁ ଯାଇ R. J Rees ତାଙ୍କର English literature ଗ୍ରନ୍ଥରେ କହିଛନ୍ତି "In ordinary language the word often means a song, the short of song which was sung in ancient greece to the music of lyre and which is song in the modern world to the music of guitar." ସୃଷ୍ଟିରୁ ସମସ୍ତ ପ୍ରକାର ଦୁଃଖ ଶୋକ ଦୂରକରି ଅବସନ୍ନ ମନରେ ଆହ୍ଲାଦ ଦାନ କରିବା, ଆତ୍ମ ସନ୍ତୋଷର ଅନନ୍ତ ସ୍ରୋତ ସୃଷ୍ଟି କରିବାରେ ହିଁ ସଙ୍ଗୀତ ସମର୍ଥ ହୋଇଥାଏ । (୧୩) ଗ୍ରୀକ୍ ଓ ଇଂରାଜୀ ସାହିତ୍ୟରେ ସଙ୍ଗୀତର ପ୍ରଭାବ ଅକଳନ୍ତ । ଗ୍ରୀକ୍ ସାହିତ୍ୟରେ ଦେଖିବାକୁ ମିଳେ ଯେ ଅରଫିୟୁସ୍ ଯେତେବେଳେ ବୀଣା ବାଦନ କରୁଥିଲେ ସେତେବେଳେ ଜଡ଼ ଜଗତରେ ମଧ୍ୟ ଏକ ଅପୂର୍ବ ଶିହରଣ ଦେଖା ଦେଉଥିଲା । ବନ, ପର୍ବତ, ପଶୁ, ପକ୍ଷୀ ଓ ନିର୍ଝରଣୀ ପ୍ରକୃତି ମଧ୍ୟ ସଙ୍ଗୀତର ସମ୍ମୋହନୀ ଶକ୍ତିରେ ଅଧୀର ହୋଇ ଉଠୁଥିଲେ । (୧୪) ଏନ୍‌ସାଇକ୍ଲୋପେଡିଆ ଆମେରିକାନା କହେ "Lyric poetry is verse in which the structer suggests some of the qualities of music. (୧୫) ପାଶ୍ଚାତ୍ୟ ସାହିତ୍ୟରେ ଲିରିକ୍ ଶବ୍ଦଟି ଏକ

---

(୧୦) ମହେଶ୍ୱର ମହାପାତ୍ର, ଅଭିନବ ଚନ୍ଦ୍ରିକା-ପୃ-୨ ।

(୧୧) ଶ୍ରୀନିବାସାଚାର୍ଯ୍ୟ, ବୃହତ୍ ଶ୍ରୀନିବାସ ଦୀପିକା (୨ୟ ଭାଗ), ପୃ-୨ ।

(୧୨) ଅମର କୋଷ-୨-୬-୨୬,

(୧୩) "In sweet music is such art—
Killing care and grief of heart." J. Fletcher .

(୧୪) "Orpheus with his lute made trees
And the mountains-tops that freeze
Bow themselves when he did sing !
To his music, plants and flowers ever spring ;
(J. Flatcher)

(୧୫) Encyclopedia Americana, vol. 17 Edition 1976, P-890 .



Digitized by PPRACHIN, SOA

ପ୍ରକାର ସଙ୍ଗୀତରୁ ସୃଷ୍ଟି । (୧୬) ଡଃ· ନଗେନ୍ଦ୍ର ମଧ୍ୟ କହୁଛନ୍ତି ଯେ ଗ୍ରୀକ୍‌ମାନେ ବାଦ୍ୟଯନ୍ତ୍ର ସାହାଯ୍ୟରେ ସଂଗୀତ ଗାନ କରୁଥିଲେ । (୧୭) ଯେଉଁ କବିତାର ଗୀତ ହେବାର ସାମର୍ଥ୍ୟ ଥାଏ ବା ଯାହାଗୀତ ହୋଇଥାଏ ଓ ବାଦ୍ୟଯନ୍ତ୍ର ସାହାଯ୍ୟରେ ଯାହାଗୀତ ହୁଏ, ସେ ସବୁକୁ ମଧ୍ୟ ଗୀତ କବିତା କୁହାଯାଏ । (୧୮) ଏହା ଉପରେ ମତ ଦେବାକୁ ଯାଇ ସଂକ୍ଷିପ୍ତ ଓଡ଼ିଆ ଜ୍ଞାନ କୋଷ କହେ "କିନ୍ତୁ ଯେ:ର ଭାବରେ ଅନୁବାଦ କର ୟୁରୋପରେ, ଭାରତରେ ବା ଓଡ଼ିଶାରେ ଅନ୍ୟନ୍ଧ କାହିଁ ହେଲେ ଲିରିକ୍ ଆଉ ଗେୟ ସ୍ତରରେ ନାହିଁ । ଯାହାଗେୟ ତାହା ବର୍ତ୍ତମାନ ସଂଗ୍ (Song) ବା ଗୀତ" । (୧୯)

ପାଶୋରି ବାନର ଅପାଶୋରି ସଂଗୀତ ଧାରାରୁ ସଚ୍ଛପେସ୍ୱ ହୋଇ ସୁଦୂର ଅତୀତକୁ ଗୁହିଁଲେ, ଆମର ଯେଉଁ ମଧୁର ସଙ୍ଗୀତ ଧାରା ବିଦ୍ୟମାନ ତା'ର ଅକାଟ୍ୟ ପ୍ରମାଣ ମିଳେ । ଆଜି ଅବଶ୍ୟ କହିହେବ ନାହିଁ, ସେ କାଳର ସଂଗୀତ ଝିତ କଦରେ ଥିଲା । କିନ୍ତୁ କଳିଙ୍ଗ, ଉତ୍କଳ ବା ଓଡ଼ିଶାର ସ୍ୱତନ୍ତ୍ର ସଙ୍ଗୀତ ଧାରା ଯେ ଥିଲା ତାହା ଯେ କେହି ଚିନ୍ତକ ଅବଶ୍ୟ ସ୍ୱୀକାର କରିବେ (୨୦) ଓଡ଼ିଆର ପ୍ରାଚୀନ ଗୌରବ ଗରିମାର ଇତିହାସ ପ୍ରତି କେହି ପ୍ରଶ୍ନକଲେ ଉତ୍କଳର ବର୍ତ୍ତମାନର ଶୈବ ଳ କଳଙ୍କିତ ଭଗ୍ନ ମନ୍ଦିର ସମୂହ ଓ ସାହିତ୍ୟ ପ୍ରତିହିଁ ତାଙ୍କର ଦୃଷ୍ଟି ଉତ୍ତର ଛଳରେ ଆକର୍ଷିତ କରାଯିବ । ଓଡ଼ିଆର ସାଂସ୍କୃତିକ ଜୀବନର ଇତିହାସ ଓ ସଙ୍କେତ ହିଁ କେବଳ ଏହି ବିଶାଳ ଶବ୍ଦ, ପ୍ରସ୍ତର ଶିଳ୍ପ ଓ ସଙ୍ଗୀତ ସାହିତ୍ୟ ମଧ୍ୟରେ ଲୁକ୍କାୟିତ । କୋଣାର୍କର

---

(୧୬) The Greeks defined a lyric as a sung to be sung to the accompaniment of a lyric (lyra). J. A. Cuddon, A Dictionary cf literary terms. P-265 .

(୧୭) ଗ୍ରୀକ୍‌ମେ (lyric) ଧ୍ରଗୀତ୍ କା ପର୍ଯ୍ୟାୟ ଉସ୍ ରଚନାକେଲିଏ ପ୍ରଯୁକ୍ତ ହୋତା ଥା ଯୋ (ଲାୟାର) ବାଦ୍ୟଯନ୍ତ୍ରକେ ସାଥ୍ ଗାଇ ଯାତି ଥି । ଓ୍ୱହ୍ ଏକ୍ ବ୍ୟକ୍ତିକେ ଦ୍ୱାରାଭି ଗାଇ ଯାଶକ୍ତୀ ଥୀ, ଓ୍ୱଉର ସମୂହକେ ଦ୍ୱାରାଭି" । ମାନର୍ଓ୍ୱିକୀ ପାରଭାଷିକ କୋଶ, ସମ୍ପାଦକ-ଡ଼ଃ. ନଗେନ୍ଦ୍ର, ପୃ-୧୬୨,

(୧୮) Lyrical poetry is a general term for all poetry which is or can be supposed to be susceptible of being sung to the accompaniment of a musical instrument, lyric, Encyclopaldia Britanica-vol. I4. p-332·

(୧୯) ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ (୨ୟ ଭାଗ) ପୃ-୨୮୯,

(୨୦ )ଡ଼ଃ. କାଳୀଚରଣ ପଟ୍ଟନାୟକ,ଆମ ସଙ୍ଗୀତ ଧାରା, ପ୍ର. ପ୍ର. ୧୯୮୧, ପୃ-୧୪,



Digitized by PPRACHIN, SOA

ରୁକ୍ଷ ପ୍ରସ୍ତର ଖଣ୍ଡକୁ ଅଭିଳଷିତ ରୂପ ଦେବାରେ ଲୌହ ଅସ୍ଫୋଟନର କର୍କଶ ଶବ୍ଦ ସହିତ ତାହା ଦୋହା, ପୋଇ, ଭଜନ ଓ ସଙ୍ଗୀତ ମସ୍ତ ସ୍ୱର ଲହରୀ ତାଳେ ତାଳେ ଭେଦକର ଅଦ୍ୟାବଧି ଓଡ଼ିଆର କର୍ଣ୍ଣଗହ୍ୱରକୁ ମନ୍ଦ୍ରିତ କରେ । (୨୧) ଓଡ଼ିଆ ପୁରାତନ ସାହିତ୍ୟ କହିଲେ ସଙ୍ଗୀତକୁ ସାହିତ୍ୟର ଏକ ଅବିଚ୍ଛେଦ୍ୟ ଅଙ୍ଗରୂପେ ଗ୍ରହଣ କରିବାକୁ ହେବ । ଏହାର ସାଙ୍ଗୀତିକତାର ମୂଲ୍ୟ ବୋଧହୁଏ ଏହାକୁ ଗୀଣ ସାହିତ୍ୟରେ ପରିଣତ କରିଛି ।

ଓଡ଼ିଆ ସାହିତ୍ୟରେ ସଙ୍ଗୀତ ପରମ୍ପରା ବହୁ ପୁରାତନ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ସେହି ପରମ୍ପରାର ଏକ ବିଶେଷ ପ୍ରବାହ ମାତ୍ର । ଖ୍ରୀ. ପୂ. ୨ୟ ଓ ପ୍ରଥମ ଶତକରେ ମହାମେଘ ବାହନ ଐର ଖାରବେଳଙ୍କ ଭୁବନେଶ୍ୱର ନିକଟସ୍ଥ ଉଦୟ ଗିରିରେ ଯେଉଁ ଶିଳାଲେଖ ଦେଖିବାକୁ ମିଳେ ସେଥିରୁ ସଙ୍ଗୀତ ବିଷୟରେ ସ୍ପଷ୍ଟ ଧାରଣା ମିଳେ । ଏହାର ପଞ୍ଚମ ଧାଡ଼ିରେ ଲେଖା ଅଛି ।

"ଦପ-ନଟ-ଗୀତ-ବାଦିତ-
ସନ୍ଦସନାହି ଉସବ-ସମାଜ-କାରାପନାହି ଚ
କୀଡ଼ାପୟତି ନଗରିମ୍" । (୨୨)

ଏଥିରୁ ସ୍ପଷ୍ଟ ସୂଚିତ ହେଉଛି ଯେ ଖ୍ରୀଷ୍ଟଜନ୍ମ ପୂର୍ବରୁ ଓଡ଼ିଶାରେ ସଙ୍ଗୀତର ଏକ ବିଶେଷ ପରମ୍ପରା ବିଦ୍ୟମାନ ଥିଲା । ପରବର୍ତ୍ତୀ କାଳରେ ଏହିପରି ସବୁ ପ୍ରମାଣ ଉପରେ ଭିତ୍ତିକରି ୨ୟ/୩ୟ ଖ୍ରୀଷ୍ଟାବ୍ଦରେ ମହାମୁନି ଭରତ ନାଟ୍ୟର ପ୍ରବୃତ୍ତି-ବିଭାଗ ବା ଓଡ୍ରମାଗଧି ରୀତିର ଉଲ୍ଲେଖ କରି ଅଛନ୍ତି ସିନା । (୨୩)

ଏସବୁ ହେଲେ ବି ସୁଦ୍ଧା ପ୍ରତ୍ୟେକ ଦେଶର ଜନଜୀବନ ଉପରେ ଲୋକ ଗୀତର ପ୍ରଭାବ ସୁଦୂର ପ୍ରସାରୀ । ଆନ୍ତରିକ ଭାବୋଚ୍ଛ୍ୱାସ, ସ୍ୱଚ୍ଛସରସ ପ୍ରକାଶ ଭଙ୍ଗୀର

---

(୨୧) ଶ୍ରୀ ବିଷ୍ଣୁମୋହନ ମହାନ୍ତି, ଉପେନ୍ଦ୍ର ସାହିତ୍ୟ ସମାଲୋଚନା, ପ୍ର. ପ୍ର. ୧୯୫୮, ପୃ-୮୪ ।

(୨୨) Old Brahmi inscription in the Udayagiri and Khandagiri caves, p-37.

(୨୩) ଡ଼ଃ. କାଳୀଚରଣ ପଟ୍ଟନାୟକ, ଆମ ସଙ୍ଗୀତ ଧାରା, ପୃ-୧୬,

॥ ଉପେନ୍ଦ୍ରଶ୍ରୀ ॥

Digitized by PPRACHIN, SOA

ଭୁଙ୍ଗିମା, ଭାଷା ବିନ୍ୟାସର ସ୍ୱାଭାବିକତାରେ ଅଳଙ୍କାରର ସଂଯୋଜିତ ଅସ୍ୱୀକାର୍ଯ୍ୟ, ଅଗଣିତ ଲୋକ ଗୀତକୁ ମନ୍ଥନ କରିପାରିଛି । ତେଣୁ ପ୍ରତ୍ୟେକ ଦେଶର ସଙ୍ଗୀତର ମୂଳ ସୂତ୍ର ନିହିତ ହୋଇ ରହିଛି ତା'ର ଲୋକ ଗୀତରେ । ପୁଣି ପଞ୍ଚମ, ଷଷ୍ଠ ଓ ସପ୍ତମ ଶତାବ୍ଦୀ ବେଳକୁ ଚର୍ଯ୍ୟାପଦରେ ରଚିତ ସଙ୍ଗୀତ ସମଗ୍ର ଭାରତରେ ପ୍ରଚଳିତ ହୋଇସାରିଥିଲା ଓ ବହୁ ସିଦ୍ଧାଚାର୍ଯ୍ୟ ଓଡ଼ିଆ ଥିବାର ମଧ୍ୟ ପ୍ରମାଣ ମିଳେ । ଏହି ଚର୍ଯ୍ୟା ଗୁଡ଼ିକ ପଦ୍ୟ ବା କବିତା ନୁହନ୍ତି-ସଙ୍ଗୀତ । ଏହାର ବିଭିନ୍ନ ରାଗ ରାଗିଣୀକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ପର ଯୁଗରେ ଏଗୁଡ଼ିକ ବିଭିନ୍ନ କ୍ଷୁଦ୍ର କବିତା ଓ କାବ୍ୟ ମାନଙ୍କର ବିଭିନ୍ନ ଛନ୍ଦରେ ବ୍ୟବହାର କରାଯାଇଛି । ପ୍ରାକୃତ ଭାଷାରେ ଲିଖିତ ଏହି ଚର୍ଯ୍ୟାଗୁଡ଼ିକ । ଏହି ଚର୍ଯ୍ୟା ଗୁଡ଼ିକର ରାଗ ରାଗିଣୀ ଜନ ସମାଜରେ ଆଦୃତ ହେଉଥିବାରୁ 'ପ୍ରାକୃତ ପିଙ୍ଗଳ'ରେ ଏହାର ଲକ୍ଷଣ ଓ ଉଦାହରଣମାନ ଦେଖିବାକୁ ମିଳେ । ତେଣୁ 'ପ୍ରାକୃତ ପିଙ୍ଗଳ'ରେ ଭଟିଆରୀ, ମୂର୍ଚ୍ଛରୀ, ନଳିନୀ ଗୌଡ଼ା, ମାଳଶ୍ରୀ ଚନ୍ଦ୍ରକେଳି, କୁମାର, ଗୁର୍ଜ୍ଜରୀ ଓ ଭୈରବୀ ପ୍ରଭୃତି ରାଗମାନ ଦେଖିବାକୁ ମିଳୁଛି ।

ଚର୍ଯ୍ୟାପଦରେ ସିଦ୍ଧାଚାର୍ଯ୍ୟଗଣ ୧୯ଟି ରାଗର ବ୍ୟବହାର କରିଥିବାର ଜଣାଯାଏ । ଓଡ଼ିଆ କବିମାନେ ଏହି ରାଗ ବ୍ୟବହାର କରି ଅନେକ କବିତା ରଚନା କରିଛନ୍ତି । କିନ୍ତୁ ପଦ ରଚନାଗତ ଶୃଙ୍ଖଳାରେ କିଛି ପରିମାଣରେ ବ୍ୟତିକ୍ରମ ଦେଖାଯାଏ ।

ଓଡ଼ିଶାର ମନ୍ଦିର ଗାତ୍ରର ଚର୍ଚ୍ଚିତ ମୂର୍ତ୍ତିର ପ୍ରକାଶ ପାଉଥିବା ସଙ୍ଗୀତକଳା ଦଶମ ଓ ଏକାଦଶ ଶତାବ୍ଦୀରେ କେବଳ ସମ୍ଭବ ହୋଇଥିଲା ଓଡ଼ିଶାରେ, ଭାରତର ଅନ୍ୟ କୌଣସି ସ୍ଥାନରେ ନୁହେଁ । (୧୪)

ଏହାପରେ ଜୟଦେବଙ୍କ ଗୀତଗୋବିନ୍ଦର ସାଙ୍ଗୀତିକ ମୂଲ୍ୟ ଯଥେଷ୍ଟ ପରିମାଣରେ ବେଶୀ, ତେଣୁ ଗାନ ହେବାରେ ଏହାର ମୂଲ୍ୟ ବୃଦ୍ଧି ପାଇଥାଏ ।

---

(୧୪) "Templo architecture did not properly Commerce (except in oris:a) as we have seen before earlier then 10th & 11th century". R. C. Dutta's History vol. 111, p-351.



Digitized by PPRACHIN, SOA

ଗଜପତି କପିଳେନ୍ଦ୍ର ଦେବଙ୍କ ସଂସ୍କୃତରେ ଲିଖିତ 'ପର୍ଶୁରାମ ବିଜୟ ବ୍ୟାୟୋଗ'ରେ ଓଡ଼ିଆ ଭାଷା-ଗୀତର ସଂଯୋଗ ଦେଖାଯାଏ । ଗୀତଟିର ଉପରେ ନିର୍ଦ୍ଦେଶ ଦିଆଯାଇଛି—

'ଅମର ରାଟଗଣ ଗୀୟତେ' ଗୀତଟିର ପ୍ରଥମ ଧାଡିହେଲା—

"କେବଳ ମୁନି-କୁମର ପରଶୁ ଦକ୍ଷିଣ କର
ବାମେଣ ଶୋହେ ଧନୁଶର ନା" । × × × ଇତ୍ୟାଦି ।

ଏହାଦୋ ନିକ୍ରନ ଓଡ଼ିଆ ଭାଷା ।

ଏହି ଶତାବ୍ଦୀରେ ଚମ୍ପତି ରାଏ ନାମକ ମହାରାଜ ପ୍ରତାପ ରୁଦ୍ରଙ୍କର ମହାପାତ୍ର, କାଳୀ ବର୍ଣ୍ଣନା ଓ ବନ୍ଦନାରେ ଏକତାଳି ତାଳରେ ଉତ୍କୃଷ୍ଟ ଉଲ୍ଲେଖ କରିଛନ୍ତି । ଯଥା—

"ଏକତାଳୀ-ଦିଗତେଇ ତା ତା ତ ଥେଇ ଥେଇ ଥୋ ଦିଗ ତୋ ତା ତା" ।

ସେ ମଧ୍ୟ ମହ୍ଲାର ରାଗ 'ଆଦି' ତାଳରେ ହରିହର ବନ୍ଦନା ଓ ରାଧାଙ୍କର ବିରହ ଦଶା ବର୍ଣ୍ଣନା 'ମଠା' ତାଳରେ ଲେଖିଛନ୍ତି । (୨୫)

ପ୍ରାଚୀନ ଓଡ଼ିଆ ସଙ୍ଗୀତ ବିଷୟରେ ଲେଖାଯାଇଛି ଯେ "କବି ଦାମୋଦରଙ୍କ ରସକୁଲ୍ୟା ଚଉତିଶା, ଅର୍ଜ୍ଜୁନ ଦାସଙ୍କର ଫୁଲମାଳ ବୋଲି ଏବଂ ଦୀନବନ୍ଧୁ ଭଞ୍ଜଙ୍କର ଆଷାଢ଼ ଶୁକ୍ଳବୋଲି ମଧ୍ୟ ଓଡ଼ିଆ ଗୀତି କବିତାରେ ଅତ୍ୟନ୍ତ ପ୍ରାଚୀନ । କବି ଲୋହିନାଥ, ଜଡ଼ା ଜୟକୃଷ୍ଣ, ଭଇଁରି ଦାସ, ତୁଳୁ ଦାସ, ପ୍ରଭୃତି ବହୁ କବିଙ୍କର ସମୟ ଏପର୍ଯ୍ୟନ୍ତ ନିରୂପିତ ହୋଇନାହିଁ । ଅର୍ଜ୍ଜୁନ ଦାସଙ୍କ ରାମ ବିଭା ଗ୍ରନ୍ଥରେ ମେଢ଼ ତୋଳା ମୁନିବର ବାଣୀ, ସଙ୍ଗମ ଠିଆର ବାଣୀର ଉଲ୍ଲେଖ ବହୁ ପ୍ରାଚୀନ ଗୀତି କବିତାର ସଙ୍କେତ ମିଳିଥାଏ । ଚର୍ଯ୍ୟା ଲେଖକ ସିଦ୍ଧାଚାର୍ଯ୍ୟ ଓ ଜୟଦେବଙ୍କ ଠାରୁ କବି ବତ୍ସାଦାସଙ୍କ ପର୍ଯ୍ୟନ୍ତ କବିତା ରଚନାର ଏକ ଅଖଣ୍ଡ ଧାରା ସେ ଯୁଗରେ, ବିଦ୍ୟମାନ ଥିବାର ଅନୁମିତ ହୋଇଥାଏ, ଯାହା ଉପରେ ଗୀତି କବିତାର ଏକ ବିରାଟ ହର୍ମ୍ୟ ନିର୍ମାଣ କଲେ ପଞ୍ଚସଖା ଓ ଦୀନକୃଷ୍ଣ । (୨୬)

---

(୨୫) ଡଃ. କାଳୀଚରଣ ପଟ୍ଟନାୟକ, ଆମ ସଙ୍ଗୀତ ଧାରା, ପୃ-୧୬ ।

(୨୬) ଅଧ୍ୟାପକ ନରେନ୍ଦ୍ର ନାଥ ପ୍ରଧାନ, ଓଡ଼ିଆ ସାହିତ୍ୟରେ ଜୟଦେବ, ପ୍ର. ପ୍ର. ୧୯୭୧, ପୃ-୧୦୭,



Digitized by PPRACHIN, SOA

"ଷୋଡ଼ଶ ଶତାବ୍ଦୀରେ ଚନ୍ଦ୍ରକବି 'ନଟାଣ' ଓ 'ଏକତାଳୀ' ତାଳରେ ଗୀତ ଲେଖିଛନ୍ତି । ଦାମୋଦର ଚମ୍ପତିରାଏ 'ଅଢ଼' ଏବଂ ଝଆଡ଼ା ତାଳରେ ଏବଂ ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ (୧୬୦୪-୧୬୩୪) ଯଦୁପତି ଦାସ 'ଆଢ଼' ଓ 'ଏକତାଳୀ' ତାଳ ବ୍ୟବହାର କରି ଗୀତ ଲେଖିଛନ୍ତି ଏବଂ ଏହି ଶତାବ୍ଦୀରେ ଓଡ଼ିଶାର ସଙ୍ଗୀତ ଶ୍ରେଣୀର ବିଶେଷତ୍ୱ ଛାନ୍ଦ-'ରୁକ୍ମଣୀ ବିଭା', ଲେଖିଛନ୍ତି କାର୍ତ୍ତିକ ଦାସ 'ଗୁର୍ଜ୍ଜରୀ' ରାଗରେ", (୨୭)

ଓଡ଼ିଆ ସାହିତ୍ୟରେ ଚତୁର୍ଦ୍ଦଶ ଶତାବ୍ଦୀରୁ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ବହୁ ଛାନ୍ଦ-କାବ୍ୟ ରଚନା କରାଯାଇଛି । ପରମ୍ପରା ସୂତ୍ରରେ ଯାହାକୁ ଆମେ ଛାନ୍ଦ ବୋଲି କହି ଆସୁଛୁ, ତାହା ଲୋକେ ଗାଆନ୍ତି, ଆବୃତ୍ତି କରନ୍ତି ନାହିଁ । ଛାନ୍ଦ ଛନ୍ଦରୁ ଉତ୍ପନ୍ନ, ମାତ୍ର ଛାନ୍ଦକୁ ଠିକ୍ ସଂସ୍କୃତର ଛନ୍ଦବୋଲି କହିହେବନି । ଛନ୍ଦରେ ଯତି ପାତ ଆବଶ୍ୟକ କିନ୍ତୁ ଛାନ୍ଦରେ ଏହି ନିୟମ ଧରି ଚଳି ହେବନି ।

ମାତ୍ରାବୃତ୍ତ ଛନ୍ଦକୁ ଗାୟନର ଉପଯୋଗୀ କରିବାର ଆକାଂକ୍ଷା ଓ ତାହା ପୂରଣ କଲେ ବିଜ୍ଞ କଳ୍ପନାରୁ ସୃଷ୍ଟି ହେଲା ଛାନ୍ଦ । ବାସ୍ତବରେ ଏହା ଏକ ଅଦ୍ଭୁତ ପରିକଳ୍ପନା । ଏପରି ଛାନ୍ଦ, ସ୍ୱର, ତାଳ; ଲୟ ଓ ସାହିତ୍ୟର ସରସ-ମଧୁର ସମନ୍ୱୟ ଓଡ଼ିଶା ଭିନ୍ନ ଅନ୍ୟତ୍ର ଶୁଣାନାହିଁ କିମ୍ବା ଦେଖା ନାହିଁ । ଏହି ସଂଯୋଜନା ଆମ ସଙ୍ଗୀତ ସାହିତ୍ୟର ଏକାନ୍ତ ସ୍ୱତନ୍ତ୍ରତା । (୨୮)

ଛାନ୍ଦ, ଛନ୍ଦରୁ ସୃଷ୍ଟି ହୋଇଥିଲେହେଁ ତାହା ସ୍ୱର, ଅନୁଶାସିତ, ଅର୍ଥାତ୍ ଛାନ୍ଦରେ ଭାଷା, ସ୍ୱର, ରାଗ, ତାଳ ଏପରି ସବୁ ଅଛି । ତେଣୁ ଛାନ୍ଦ ଗୀତ ବୋଲ-ଇବ । ଛାନ୍ଦରେ କବିତା ଅଛି କିନ୍ତୁ କବିତାରେ ଛାନ୍ଦ ନାହିଁ । ଛାନ୍ଦ ଶାସ୍ତ୍ରୀୟ କ୍ଷୁଦ୍ର ଗୀତ ଓ ପାଞ୍ଚାଳୀ ଶ୍ରେଣୀୟ । ଏହା ଘୋଷା ବିହୀନ ବହୁପଦ ବିଶିଷ୍ଟ ପାଞ୍ଚାଳୀ ବା ଅଧ୍ରୁବା ପାଞ୍ଚାଳୀ । ଛାନ୍ଦରେ ସାହିତ୍ୟ, ଛବି ଓ ରାଗ ଏହିପରି ତିନୋଟିର ଅପୂର୍ବ ସମନ୍ୱୟ ଘଟିଛି ।

ଉପେନ୍ଦ୍ର ଭଞ୍ଜ ତାଙ୍କର ଅଭୂତ ପୂର୍ବ ଛନ୍ଦ ଯୋଜନା ଓ କାବ୍ୟ ରଚନା କୃତିତ୍ୱ ବଳରେ ନିଜକୁ ସଙ୍ଗୀତ ତଥା କବି ସମ୍ରାଟ ରୂପେ ଉପସ୍ଥାପନ କରିବାକୁ କ୍ଷମ ହୋଇ ପାରିଛନ୍ତି । ତାଙ୍କର ବଳିଷ୍ଠ ପ୍ରତିଭା ସମ୍ଭୂତ ନାନା ବିଧ ରାଗବୃତ୍ତାଶ୍ରିତ ରସ ମଧୁର କାବ୍ୟ, ମହାକାବ୍ୟ ଓ ଅନ୍ୟାନ୍ୟ କବିତାବଳୀ ତାଙ୍କୁ ଉଚ୍ଚକୋଟୀର

---

(୨୭) ଡ଼ଃ. କାଳୀଚରଣ ପଟ୍ଟନାୟକ, ଆମ ସଙ୍ଗୀତ ଧାରା, ପୃ-୧୬,
(୨୮) ତତ୍ରୈବ— ପୃ-୩୧,


Digitized by PPRACHIN, SOA

ସଙ୍ଗୀତ କାର ଭାବରେ ପ୍ରତିଷ୍ଠିତ କରାଇଛି । ଅଧିକାଂଶ ଛାନ୍ଦର ରାଗ ଓ ସଂଗୀତ ରାଗ ମଧ୍ୟରେ ତାନ, ମାନ ଓ ଅନ୍ୟାନ୍ୟ ପଦବୋଧକ ପରମ୍ପରା ଦୃଷ୍ଟିରୁ ବହୁ ସାମ୍ୟ ରହିଛି ।

ଉପେନ୍ଦ୍ର ଭଞ୍ଜ ନିଜ ଗ୍ରନ୍ଥର ବିଭିନ୍ନ ସ୍ଥାନରେ ବିଭିନ୍ନ ଋତୁ, ରସ, ସମସ୍ତ ଅନୁଯାୟୀ ବିବିଧ ଛାନ୍ଦ, ବୃତ୍ତ, ସ୍ୱର ଭିତରେ ସ୍ୱର ନିୟମ, ଯତି ନିୟମ, ରାଗର ଆରୋହ, ଅବରୋହ, ବର୍ଜ୍ୟାବର୍ଜ୍ୟ, ଗ୍ରହ ଅଂଶନ୍ୟାସ ଯୋଗାଡ଼ି ଲୋକ ସମ୍ମୁଖରେ ଉପସ୍ଥାପିତ କରି ଅଛନ୍ତି । (୨୯) ଉପେନ୍ଦ୍ର ଭଞ୍ଜ ଚୌପଦୀ ଭୂଷଣ, ଚୌପଦୀ ଚନ୍ଦ୍ର, ଚଉପଦୀହାର ପ୍ରଭୃତି କେତେକ ସଙ୍ଗୀତ ରଚନା କରିଛନ୍ତି । ପୁଣି ଏଥିପାଇଁ ଯେ ସେ ସଙ୍ଗୀତ ସମ୍ରାଟ ହୋଇଛନ୍ତି ତାହାବି ନୁହେଁ । ଏଥିରେ ସଙ୍ଗୀତ ବିଜ୍ଞାନର ସୂକ୍ଷ୍ମ ବିଶ୍ଳେଷଣ କରାଯାଇଛି ସତ୍ୟ ହେଲେ ସେ ଏହି ସାମାନ୍ୟ କେତୋଟି ସଙ୍ଗୀତ ପାଇଁ ପ୍ରସିଦ୍ଧି ଲାଭ କରି ନାହାନ୍ତି । ଏକେ ଛାଡ଼ିଦେଲେ ଉପେନ୍ଦ୍ରଙ୍କର ଯେ ଅକଳନ୍ତ ଛାନ୍ଦ ରାଜ୍ୟ ସେଥିରେ ପୁଣି ଯେଉଁ ରାଗ ରାଗିଣୀ, ତାହା କଳନା କରାଯାଇ ନପାରେ ।

ଉପେନ୍ଦ୍ର ଭଞ୍ଜ ଜନ୍ମଗ୍ରହଣ କରିଥିଲେ ଓଡ଼ିଶାର ଗଞ୍ଜାମ ଜିଲ୍ଲାର କୁଲାଡ଼ ଗଡ଼ରେ । ଏହା ଆନ୍ଧ୍ର ଅଞ୍ଚଳର ନିକଟବର୍ତ୍ତୀ । ସେଥିପାଇଁ ଓ ଅନ୍ୟକାରଣ ପାଇଁ କେତେକ ଆମ ସଙ୍ଗୀତକୁ କର୍ଣ୍ଣାଟକୀ ବୋଲି କହନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ଏଥିପାଇଁ କାଳୀ ପଟ୍ଟନାୟକଙ୍କ ମତରେ "ଦେବେ ଗୃହି ତା'ର ଭେଦକ ସ୍ୱୀକାର୍ଯ୍ୟ । ସେହି ବିଧିରେ ଆମର ପୂର୍ବାଚାର୍ଯ୍ୟମାନେ ସଙ୍ଗୀତକୁ ଦେଶ ରୁଚିକୁ ଅନାଇ ସ୍ୱତନ୍ତ୍ର ଭାବେ ଗଢ଼ି ଯାଇଛନ୍ତି । ଏହାହିଁ ଓଡ଼ିଶୀ ଢଙ୍ଗ । ତାହାର ପ୍ରକୃଷ୍ଟ ପ୍ରମାଣ ଦେବ ଭଞ୍ଜ କବିଙ୍କର ସଙ୍ଗୀତ ରଚନା । (୩୦) ପୁଣି ସେ ଲେଖିଛନ୍ତି "ଆନ୍ଧ୍ର ପଡ଼ୋଶୀ ଭୂମୁସର ତାଙ୍କର ଜନ୍ମଭୂମି ହୋଇଥିଲେ ମଧ୍ୟ ଭଞ୍ଜ କବିଙ୍କ ଛାନ୍ଦଗୀତ ରଚନା ମଧ୍ୟରେ ତେଲୁଗୁ ଶବ୍ଦ ବା କର୍ଣ୍ଣାଟକୀ ପ୍ରଭାବ କାହିଁହେଲେ ପଡ଼ିନାହିଁ, ତାଙ୍କ ଛାନ୍ଦର କଠିନ ଓଡ଼ିଆ ଶବ୍ଦର ସଂଯୋଜନା ଥିଲେ ମଧ୍ୟ ତାହା ଗାଇବା ପକ୍ଷରେ ଲଳିତ ଓ ମଧୁର । ସ୍ଥାନ,କାଳ,ପାତ୍ର ଓ ରସ ବିଚାରରେ ସ୍ୱର ଯୋଗାଡ଼ିବାରେ ଭଞ୍ଜ କବି ସର୍ବଦା ସଚେତନ ତେଣୁ ତାଙ୍କ ଛାନ୍ଦ ଓ ସଙ୍ଗୀତ ଗୁଡ଼ିକ ଏକାନ୍ତ ଜନପ୍ରିୟ (୩୧)

---

(୨୯) ଶ୍ରୀ ଅନନ୍ତ ପଦ୍ମନାଭ ପଟ୍ଟନାୟକ, ଉପେନ୍ଦ୍ର ଭଞ୍ଜ, ପ୍ର. ପ୍ର. ୧୯୫୯, ପୃ-୧୫୪,

(୩୦) ଡ଼ଃ. କାଳୀଚରଣ ପଟ୍ଟନାୟକ, ଭଞ୍ଜପ୍ରଭା (ସଙ୍ଗୀତ ସମ୍ରାଟ ଉପେନ୍ଦ୍ର ଭଞ୍ଜ)

(୩୧) ଡ଼ଃ. କାଳୀଚରଣ ପଟ୍ଟନାୟକ, ଆମ ସଙ୍ଗୀତ ଧାରା, ପୃ-୧୧୨.


Digitized by PPRACHIN, SOA

ଭକ୍ତ କବିଙ୍କର ଅନ୍ୟ ସମସ୍ତ କାବ୍ୟ ଓ ସଙ୍ଗୀତକୁ ବାଦ୍‌ଦେଇ କେବଳ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରତି ଦୃଷ୍ଟି ନିକ୍ଷେପ କଲେ ସଙ୍ଗୀତ ଶାସ୍ତ୍ରରେ ଯେ ତାଙ୍କର କିପରି ଗଭୀର ପ୍ରବେଶ ଥିଲା ତାହା ସ୍ପଷ୍ଟ ହୋଇଉଠେ, ମାଘ କବି ସଙ୍ଗୀତର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ଲେଖିଛନ୍ତି

"ଶିଶୁର୍ବେତ୍ତି ପଶୁର୍ବେତ୍ତି ବେତ୍ତି ଗୀତ ରସଂ ଫଣୀଃ"

କିମ୍ବା

"ମଧୁକରୈରପବାଦ କରୈରିବ ସ୍ମୃତିଭୁବଃ ପଥିକା ହରିଣାଇବ,

କଳଯ୍ୟୋ ବରସଃ ପରିବାଦନୀ ସ୍ୱରଜିତାରଜିତା ବଶମାୟୟୁଃ" ।

ଭକ୍ତକବି ସେହିଭଳି ସଙ୍ଗୀତର ପରାକାଷ୍ଠା ଉପସ୍ଥାପନ କରିବାକୁ ଯାଇ ଲେଖିଛନ୍ତି ଯେଉଁ ସଙ୍ଗୀତ ସପ୍ତସ୍ୱରକୁ ଆଶ୍ରୟକରି ସମସ୍ତ ଜଗତକୁ ମୋହିତ କରି ପାରେ, ଯେଉଁ ସଙ୍ଗୀତ ଶ୍ରବଣରେ ସର୍ପ ବିମୁଗ୍ଧ ହୋଇ ସ୍ତବ୍ଧ ହୋଇଯାଏ, ତହିଁରେ କନ୍ଦର୍ପ ଅଙ୍ଗହୀନ ହୋଇ ଗୁପ୍ତରେ ଅବସ୍ଥାନ କରେ । ସେହି ସ୍ୱରକୁ ପଶୁ, ପକ୍ଷୀ ସ୍ୱ, ସ୍ୱ ସ୍ୱରରେ ଗାନ କରିବାକୁ ଆରମ୍ଭ କଲେ । ସେହି ବସନ୍ତରାଗ ସର୍ବରାଗ ମଧ୍ୟରେ ଶ୍ରେଷ୍ଠ ବୋଲି ବିଚାର କରି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ସମସ୍ତେ ଗାନ କରିବାକୁ ଲାଗିଲେ । (୩୨)

ଏଥିରୁ ସ୍ପଷ୍ଟ ସୂଚିତ ହେଉଛି ଯେ ଭକ୍ତ କବିଙ୍କର ସା, ରି, ଗ, ମ, ପ, ଧ, ନି, ଏହି ଭଳି ସପ୍ତସ୍ୱର ବିଷୟରେ ସ୍ପଷ୍ଟ ଧାରଣା ଥିଲା ଏବଂ ସେ ଏହାମଧ୍ୟ ଅବଗତ ଥିଲେ ଯେ ସା, ଷଡଜ, ମୟୂରଠାରୁ, ରି, ଋଷଭ, ବୃଷଭ ଠାରୁ, ଗା, ଗାନ୍ଧାର, ଛାଗଳ ଠାରୁ, ମ, ମଧ୍ୟମ, ସାରସ ଠାରୁ, ପ, ପଂଚମ, କୋକିଳ ଠାରୁ, ଧା, ଧୈବତ, ଘୋଟକ ଠାରୁ, (କିନ୍ତୁ ସଙ୍ଗୀତ ରତ୍ନାକରରେ ଭେକ ବା ବେଙ୍ଗର ନାମ ଦିଆଯାଇଛି) ନି, ନିଷାଦ, ହସ୍ତୀଠାରୁ ଆସିଅଛି ଏବଂ କ୍ରମାନ୍ୱୟରେ ପୃଥିବୀ, ଆକାଶ, ଅଗ୍ନି, ଜଳ, ମରୁତକୁ ହିଁ ବୁଝାଇ ଥାନ୍ତି । ଏହା ସଙ୍ଗୀତ ରତ୍ନାକର, ସଙ୍ଗୀତ

---

(୩୨) "ମୋହି ପାରଇ ଜଗତ ଯେଉଁ ଗୀତ ଆଲମ୍ବିତ ସ୍ୱର ସପତ,
ସ୍ଥକିତ ଲେଳିତ ଯହିଁରେ ପନ୍ନଗ ଅନଙ୍ଗ ତହିଁତ ଗୁପତ ।
ବିହଗ । ପଶୁ ପ୍ରତିରେ ସ୍ୱରେ ଧରିଲେ ।
ପ୍ରଶସ୍ତ କରି ବସନ୍ତ ରାଗ ଧରି ସର୍ବଲୋକେ ତାହା ଗାଇଲେ" ।
(କୋ. ବ୍ର. ସୁ. ଛା ୭, ପ-୧୩)



Digitized by PPRACHIN, SOA

ମକରନ୍ଦ, ବୃହଦ୍ଦେଶୀ, ନାରଦୀୟ ଶିକ୍ଷା ଓ ତନ୍ତ୍ର ଶାସ୍ତ୍ର ମାନଙ୍କରେ ବର୍ଣ୍ଣନା କରା-
ଯାଇଛି । ଏଥିପାଇଁ ସଙ୍ଗୀତଜ୍ଞ ଉପେନ୍ଦ୍ରଙ୍କ ସପ୍ତସ୍ୱର 'ଜଗତ'କୁ ମୋହି ପାରେ ବୋଲି
ଉଲ୍ଲେଖ କରିଛନ୍ତି । 'ଜଗତ' କହିଲେ ଏହି ପୃଥିବୀ,ଆକାଶ, ଅଗ୍ନି, ଜଳ, ମରୁତକୁ
ହିଁ ବୁଝାଇଥାଏ ଓ ଏହାହିଁ ପଞ୍ଚ ମହାଭୂତ । ସେଥିପାଇଁ ଏହି 'ଜଗତ' ଶବ୍ଦ ବ୍ୟବ-
ହାର କରିବାରେ ଭଞ୍ଜ କବି ଯେ ଏକ ଅସାଧାରଣତ୍ୱର ପରିଚୟ ଦେଇଛନ୍ତି ତାହା
କହିବା ଅନାବଶ୍ୟକ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ୩୮ଂଛାନ୍ଦ ରେ କବି ସଙ୍ଗୀତ ଶାସ୍ତ୍ରର ବହୁ ଲକ୍ଷଣ
ଯୁକ୍ତ ପଦ ମାଧ୍ୟମରେ କାବ୍ୟକୁ ଗତିଶୀଳ କରାଇଛନ୍ତି । ଏହା ଫଳରେ କବିଙ୍କର
ଦୁଇଟି ଉଦ୍ଦେଶ୍ୟ ସାଧିତ ହୋଇଛି । ପ୍ରଥମଟିରେ କବି କାବ୍ୟର କଥା ବସ୍ତୁକୁ
ଗତିଶୀଳ କରାଇବା ଉଦ୍ଦେଶ୍ୟରେ କପିଳାସର ଏକ ନୈସର୍ଗିକ ବର୍ଣ୍ଣନା ଦେବା,
ଦ୍ୱିତୀୟରେ ସଙ୍ଗୀତ ଶାସ୍ତ୍ରରେ ଆଲୋଚନା କରିବା । ପ୍ରତିଭାବାନ୍ କବି ବ୍ୟତିରେକ
ଅନ୍ୟ କାହାର ପକ୍ଷରେ ସମ୍ଭବ ହୋଇ ନଥାଏ ।

"ସେ କି କଇଲାସ ତାଳରେ ପ୍ରକାଶ ଆଦି ଯତି ମନ ମୋହୁଯେ,
ଶୋଭି ନିଃସାରି ସିଦ୍ଧି ମଠାଲିଙ୍ଗନ ଜ୍ଞାନ ଝମ୍ପାରୂପ କାହିଁଯେ ।
ନିପୁଟା, ଏକତାଳି ଯୁକ୍ତ କାହିଁ ଯେ,
ସରିମାନ ଅଡ୍ଡ଼ି ଶିବ ବଚନରେ ଗଉରୀ ପ୍ରକଟ ଯହିଁଯେ" ।

ଅର୍ଥାତ୍ ରାଜ ସଭାର ସେହି ସଙ୍ଗୀତ ସ୍ଥଳ କପିଳାସ କି ? କପିଳାସ ତାଳ
ବୃକ୍ଷରେ ପରିପୂର୍ଣ୍ଣ ତାହା ଆଦି ଯତି ଗଣେଶଙ୍କ ମନ ମୋହୁଥାଏ । ସେଠାରେ ସୁନ୍ଦର
ସାରୀମାନେ ତପସ୍ୱୀମାନଙ୍କ ଆଶ୍ରମରେ ରହି ଜ୍ଞାନ ହରଣ କଲାଭଳି କଥାମାନ କହୁ-
ଥାନ୍ତି । କାହିଁ ଅବା ନିପୁଟା ଅର୍ଥାତ୍ ଗୁଜରାତି,ଖଜୁରୀ ଆଦି ଏକାଠି ଅଛନ୍ତି । ସେଠା-
ରେ ଶିବଙ୍କର ଗୂଢ଼ବାକ୍ୟରେ ଗୌରୀଙ୍କର ଅଭିମାନ ଦୂରହୋଇ ବାକ୍‌ସ୍ଫୁରିତ ହୁଏ ।

ପୁଣି ସଙ୍ଗୀତ ଅର୍ଥରେ ସେହି ସ୍ଥାନ ବାଦ୍ୟର ବିବିଧ ତାଳରେ ମୁଖରିତ ।
ସେଠାରେ 'ଆଦି' ଓ ଯତି ପ୍ରଭୃତି ତାଳ ମନ ମୋହୁଥାଏ । ତା ସହିତ ନିଃସାରି
ତାଳ ମଧ୍ୟ ଶୋଭା ପାଉଥାଏ । ପୁଣି ଝମ୍ପା ଏବଂ ରୂପକ ନାମକ ତାଳ ପ୍ରତିଧ୍ୱନିତ
ହେଉଛି । କାହିଁ ଅବା ନିପୁଟା, ଏକ ତାଳୀ, ସରିମା ଓ ଆଡ଼ତାଳ ମିଶିଅଛି ।
ଏସବୁ ଦ୍ୱାରା ଗୌରୀ ରାଗରେ ଶିବ ଅର୍ଥାତ୍ ମଙ୍ଗଳ ବାକ୍ୟ ପ୍ରକାଶ କରୁଅଛି ।
ଏହିପରି ମୋଟ ଦଶଟି ତାଳର ଅର୍ଥ ଏଠାରୁ ପ୍ରକାଶ ପାଉଅଛି ।



Digitized by PPRACHIN, SOA

"ବାଦିତ ସିଂହ ନନ୍ଦନ ପୁଣି ନଳ କୁବର ବିଳାସ ଇଚ୍ଛୁ ଯେ,
ନାନ୍ଦୀ ପ୍ରମୁଖରେ ଶ୍ଳୋକ ବିଖ୍ୟାତରେ ଲଘୁଗୁରୁ ଉପୁଜୁଛି ଯେ ।
ନିସ୍ମାନ, ଦ୍ରୁତରେ ବିରାମ ଅଛି ଯେ,
ନଭପ୍ରାପ୍ତ ପାଞ୍ଚ ଷଷ୍ଠ ଅଷ୍ଟକଳା ଚନ୍ଦ୍ରବିମ୍ବ ପ୍ରକାଶୁଛି ଯେ" ।

କାବ୍ୟ ଅର୍ଥକୁ ବାଦ ଦେଇ ସଙ୍ଗୀତ ଅର୍ଥ ହେଉଛି, ଏଠାରେ କେହି ଏକ ତାଳ ମଧ୍ୟରୁ ସିଂହ ନନ୍ଦନ ତାଳ ପ୍ରକାଶ କରୁଛନ୍ତି । କେହି ନଳକୁବର ଅର୍ଥାତ୍ ଫୁଙ୍କାବାଦ୍ୟ ବଜାଇ କ୍ରୀଡ଼ା କରୁଛନ୍ତି । ଗାୟକମାନେ ନାନ୍ଦୀ ପ୍ରମୁଖରେ ଅର୍ଥାତ୍ ନାନ୍ଦୀ ନାମକ ତାଳ ଆରମ୍ଭ କାଳରେ ଶ୍ଳୋକ ରଚନାରେ ପ୍ରସିଦ୍ଧି ଅର୍ଜ୍ଜନ କରିବା ପାଇଁ ତନ୍ମଧ୍ୟରେ ଲଘୁ ଓ ଗୁରୁ ଜାତ କରୁଛନ୍ତି । ସେହି ତାଳରେ ସ୍ୱରର ଅତିଦୀର୍ଘ, ଦ୍ରୁତ ଓ ବିରାମ ପ୍ରଭୃତି ନିସ୍ୱନମାନ ଅଛି । ସେହି ସ୍ଥାନ ଆକାଶ ପରି । ଆକାଶ ପଞ୍ଚମୀ, ଷଷ୍ଠୀ ଓ ଅଷ୍ଟମୀ କଳାଯୁକ୍ତ ଚନ୍ଦ୍ରବିମ୍ବ ଦ୍ୱାରା ଶୋଭିତ ହେଲାପରି ଏଠାରେ ଚନ୍ଦ୍ର ବିମ୍ବ ଛଳରେ, ଝାଞ୍ଜ ବାଦନୀ ତାଳଦ୍ୱାରା ପଞ୍ଚମ, ଷଷ୍ଠ ଓ ଅଷ୍ଟକାଳକୁ ପ୍ରକାଶ କରୁଛି ।

ତା ପରବର୍ତ୍ତୀ ପଦ ମାନଙ୍କରେ ଶୁଦ୍ଧ ସାଲଗ, ଗ୍ରସ୍ଥା, ଲଗ ଏବଂ ସୁଡ ପ୍ରଭୃତ ଛନ୍ଦ ଲକ୍ଷଣ, ପୁଣି ଜଣା ଅଜଣା ଚିହ୍ନରେ ଯୁକ୍ତ ହୋଇ ମେଦିନୀ, ନନ୍ଦିନୀ, ଦୀପିନୀ, ପାବନୀ, ତାରାବଳୀ ପ୍ରଭୃତି ଲକ୍ଷଣରେ ମନୋହର ହୋଇଅଛି । ନିଷାଦ, ଋଷଭ, ଗାନ୍ଧାର, ମଧ୍ୟମ, ଷଡ଼ଜ, ଧୈବତ, ପଞ୍ଚମ ସ୍ୱର ବ୍ୟବହୃତ ହୋଇଛି । ଏହା ସହିତ ମନୋହର ଚନ୍ଦ୍ରକଳା, ଚନ୍ଦ୍ରପଦା, ଧ୍ରୁବପଦା ଓ ପାଞ୍ଚାଲୀ ଆଦି ଛନ୍ଦର ମଧ୍ୟ ସଙ୍ଗମ ଘଟିଛି । ସେଠାରେ ହସ୍ତମୁଦ୍ରା ବେଳେ ମାଧୁରୀ, ସାବେରୀ, ତୁରଙ୍ଗ ପ୍ରଭୃତି ରାଗିଣୀ ଖ୍ୟାତ ହୋଇଅଛି । ମୋଟ ଉପରେ ଚାରି ପ୍ରକାର ନୃତ୍ୟ, ଗୀତ ପ୍ରଚଳିତ । ବସନ୍ତ ରାଗ, ସୋମରାଗ, କେଦାର ରାଗ, ଭୈରବ ରାଗ, କଳହଂସ ରାଗମାନ ପ୍ରକାଶ ପାଉଛି । ତା'ପରେ କବି ନର୍ତ୍ତକୀ ମାନଙ୍କର ଜନ ମନ ବିମୋହିନୀ ନୃତ୍ୟର ବର୍ଣ୍ଣନା କରିଛନ୍ତି । ସେଥିପାଇଁ କବି ଲେଖିଛନ୍ତି—

"ପଦ ଯୁଗ ବେଗ ବେଗ ପ୍ରଚଳନେ ବାଦନ୍ତି ମଞ୍ଜୁ ମଞ୍ଜିର ଯେ,
ଦ୍ୱିରଦ ମନ୍ଥର ମନ୍ଥନ କରିକି ଦେଉଛନ୍ତି ଷୀର ତୁରଯେ ।
ନର୍ତ୍ତକୀ, ଲସ୍ୟ କୁରି ମୁନଙ୍କର ଯେ,
ଲୁଟି ହୋଇଅଛି ମାନ ବଡ଼ ପଣ କୁରୁ ରାଜାଠାରୁ ଯାଇ ଯେ" ।

(କୋ. ବ୍ର. ସୁ. ପ/୩୧)

॥ ଛବଣ ॥

Digitized by PPRACHIN, SOA

ଏଥିରୁ ସ୍ପଷ୍ଟ ଭାବରେ ସୂଚିତ ହୁଏ ଯେ ଉପେନ୍ଦ୍ର ଭଞ୍ଜଙ୍କର ସଙ୍ଗୀତ ଶାସ୍ତ୍ରରେ ଗଭୀର ପ୍ରବେଶ ଥିଲା । ସେତେବେଳେ ସଙ୍ଗୀତ ଶାସ୍ତ୍ର ସମ୍ମତ ରାଗ ରାଗିଣୀର ପ୍ରୟୋଗ ତାଙ୍କର କାବ୍ୟ ମାନଙ୍କରେ ଯେ କରିଛନ୍ତି ତାହାନୁହେଁ, ସେ କେତେକ ନୂତନ ରାଗର ମଧ୍ୟ ସୃଷ୍ଟି କରିଥିଲେ ଅର୍ଥାତ୍ କେତେକ ରସ ଭାବାନୁଯାୟୀ ନିଜସ୍ୱ ରାଗ ସୃଷ୍ଟି କରି ଯାଇଛନ୍ତି । ସେଥିପାଇଁ କାଳୀଚରଣ ଲେଖିଛନ୍ତି "ଭଞ୍ଜ କବି ସଙ୍ଗୀତ ଶାସ୍ତ୍ର ସମ୍ମତ ନିର୍ଦ୍ଦିଷ୍ଟ ରାଗ ରାଗରାଗିଣୀର ବାହାରେ ଆଉ କେତେ ଗୁଡ଼ିଏ ରାଗ ନାମ ଦେଇ ସଙ୍ଗୀତ ରଚନା କରି ଯାଇଛନ୍ତି । ମୁଁ ଯେତେଦୂର ପାଣ୍ଡୁଲିପି ଦେଖିଛି ଏଗୁଡ଼ିକ ଭଞ୍ଜ କବିଙ୍କର ସ୍ପଷ୍ଟ ଭାବାନୁଯାୟୀ ଶ୍ରଦ୍ଧାନାମ" । (୩୩) ଏଥିରୁ ଜଣାଯାଏ ଭଞ୍ଜକବି ସଙ୍ଗୀତରେ କେତେକେ ସ୍ୱାତନ୍ତ୍ର୍ୟ ଆଣିଥିଲେ ।

ଏଠାରେ ଗୋଟିଏ ଉଦାହରଣ ଦେଲେ ତାହା ସ୍ପଷ୍ଟ ହୋଇ ଉଠିବ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ୩୯ଛାନ୍ଦର ରାଗ ଚନ୍ଦ୍ରା ଭୈରବ । ଚନ୍ଦ୍ରା ଭାବ ଓ ଭୈରବ ରାଗର ମିଶ୍ରଣରେ ଏ ଗୀତଟି ରଚିତ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସ୍ୱପ୍ନରେ ଯେଉଁ ପ୍ରିୟଙ୍କୁ ଦେଖିଛି, ତାହା ସେ ଭୁଲି ପାରୁନାହିଁ । ତେଣୁ ବିରହରେ ସେ ଅଧୀରା । ସାଧାରଣତଃ ପାହାନ୍ତି ପ୍ରହରରେ ଯେଉଁ ସ୍ୱପ୍ନ ଦେଖାଯାଏ, ତାହା ସତ୍ୟ ବୋଲି ଧରି ନିଆ ଯାଇଥାଏ । ଏହି ପାହାନ୍ତି ସମୟର ରାଗ ଭୈରବ । ରାଜପୁତ୍ର ପୁଷ୍ପକେତୁଙ୍କ ନିକଟରୁ ଉପାଧ୍ୟାୟର ସ୍ତ୍ରୀ ଓ ଅବଧୂତ ଶୀଘ୍ର ବିଦାୟ ନେବାରୁ ସେ ମନ୍ତ୍ର ଛଳରେ ପ୍ରେମ ପତ୍ର ଦେଲେ ବୋଲି ହୃଦୟ ମଧ୍ୟରେ ବିଚାର କରୁଛନ୍ତି । ରାଜ-ପୁତ୍ର ହୃଦୟ ମଧ୍ୟରେ ଚନ୍ଦ୍ରା କହୁଥିବାରୁ ଭଞ୍ଜ ରାଗର ନାମ 'ଚନ୍ଦ୍ରା ଭୈରବ' ଦେଇଛନ୍ତି । କେବଳ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରୁ ନୁହେଁ ଭଞ୍ଜ ସାହିତ୍ୟରୁ ଏହିଭଳି ବହୁ ଉଦାହରଣ ଦେଇ ତାଙ୍କର ସଙ୍ଗୀତ ଶାସ୍ତ୍ର ମଧ୍ୟରେ କେତେ ଗଭୀର ପ୍ରବେଶ ଥିଲା, ତାହା ଅନୁଧ୍ୟାନ କରିହେବ । କବି କେବଳ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ବହୁ ରାଗ ଓ ବାଣୀର ପ୍ରୟୋଗ କରିଛନ୍ତି । ସେ ଗୁଡ଼ିକ ହେଲେ ମଙ୍ଗଳ ଗୁର୍ଜ୍ଜରୀ, ମାଳବ (ତୋଡ଼ିବାଣୀ) କେଦାର- ଚକ୍ରକେଳୀବାଣୀ, ମଙ୍ଗଳ ବରାଡ଼ୀ- ମୁନିବର ବାଣୀ, ଗୁର୍ଜ୍ଜରୀ, ବସନ୍ତ, ରସକୋଇଲି, ଦେଶାକ୍ଷ, ଶଙ୍କରାଭରଣ, ବରାଡ଼ି- ଆଷାଢ଼ଶୁକ୍ଳବାଣୀ, ଘଣ୍ଟାରବ, କଳସା ଗୌଡ଼, ଚନ୍ଦ୍ରାକୌଶିକ, କାଳୀ, ରାମକେରୀ, ମାଳବ, କଳହଂସ-କେଦାର ଓ ଭୂପାଳ, ମଙ୍ଗଳ, କନଡ଼ା, କଲ୍ୟାଣ ଆହାରୀ, ଚନ୍ଦ୍ରା ଭୈରବ, ଚନ୍ଦ୍ରା-ଦେଶାକ୍ଷ, କାଫି କାମୋଦୀ, ମାଳ ବରାଡ଼ି, କୁମ୍ଭକାମୋଦୀ, ପାହାଡ଼ିଆ କେଦାର,

---

(୩୩) ଡ଼ଃ. କାଳୀଚରଣ ପଟ୍ଟନାୟକ, ଭଞ୍ଜପ୍ରଭା, ସଙ୍ଗୀତ ସମ୍ରାଟ ଉପେନ୍ଦ୍ର ଭଞ୍ଜ ।



Digitized by PPRACHIN, SOA

ବସନ୍ତ ବରାଡ଼ି, ବଚନ ଦେଶାକ୍ଷ, ସିନ୍ଧୁ ଦେଶାକ୍ଷ, ଚକ୍ରା ବରାଡ଼ି, କଳିଙ୍ଗ ଗୌଡ଼ା, ପଞ୍ଚମ ବରାଡ଼ି-କଳସା ବାଣୀ, ଛଡିଆଣ୍ଟା । ଏତଦ୍ ବ୍ୟତୀତ ଭକ୍ତଙ୍କର ଅନ୍ୟାନ୍ୟ କାବ୍ୟ ଓ ସଙ୍ଗୀତ ପ୍ରତି ଦୃଷ୍ଟି ନିକ୍ଷେପ କଲେ ତାଙ୍କର ସଙ୍ଗୀତ ଶାସ୍ତ୍ରର ପ୍ରବେଶ ଦେଖି ବିସ୍ମିତ ନ ହୋଇ ରହି ହୁଏନା । ଅପୂର୍ବ ସାହିତ୍ୟ ସୃଷ୍ଟି ସହ ଅସାଧାରଣ ସଙ୍ଗୀତ ଜ୍ଞାନ ତାଙ୍କ ସୃଷ୍ଟିକୁ ଊର୍ଦ୍ଧ୍ୱଗାମୀ କରିଛି । ପ୍ରବନ୍ଧର କଳେବର ଦୃଷ୍ଟିରୁ ବିସ୍ତୃତ ଭାବେ ଆଲୋଚନା କରିବା ସମ୍ଭବ ନୁହେଁ ।

ସଂକ୍ଷିପ୍ତରେ ଏତିକି କୁହାଯାଇ ପାରେ ଯେ ରସ ପଞ୍ଚକର ବିବିଧ ଦୋହଦ ନିମିତ୍ତ 'ରାଜବିଜେ' ରାଗ ବ୍ୟବହାର କରାଯାଇଛି । ପୁଣି ଭିନ୍ନ ଭିନ୍ନ ଚୁମ୍ବନର ଲକ୍ଷଣ ଲାଗି କରୁଣାଶ୍ରୀ, କଉଶିକ, କଲ୍ୟାଣ କନଡ଼ା, କେଦାର, କାଳୀ ପ୍ରଭୃତି ରାଗ ବ୍ୟବହାର କରାଯାଇଛି ।

ପରବର୍ତ୍ତୀ କାଳରେ କବିସୂର୍ଯ୍ୟ, ବନମାଳୀ, ଗୋପାଳ କୃଷ୍ଣ, ପ୍ରଭୃତି କବି ମାନଙ୍କୁ ଭଞ୍ଜ ସଙ୍ଗୀତ ବହୁ ଭାବରେ ପ୍ରଭାବିତ କରିଛି ଏବଂ ଆଧୁନିକ ଯୁଗରେ ମଧ୍ୟ ସେହି ସଙ୍ଗୀତ-ସମ୍ରାଟଙ୍କର ଅନୁରାଗୀ ବହୁ ସଙ୍ଗୀତଜ୍ଞ, ଅମ୍ଳାନ ଭଞ୍ଜ ସଙ୍ଗୀତର ଚର୍ଚ୍ଚା କରିଥାନ୍ତି ।



ଅଧ୍ୟାପକ,
ଭଦ୍ରକ ମହାବିଦ୍ୟାଳୟ,
ଭଦ୍ରକ, ଜି-ବାଲେଶ୍ୱର ।



Digitized by PPRACHIN, SOA

# ।। ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ ।।

ଗଜେନ୍ଦ୍ର ଷଡ଼ଙ୍ଗୀ

"କବି ଉପଇନ୍ଦ୍ର ତବ କୃପାରେ ହୋଇଛି
ଏତେ ମନୋରଥ ସାର୍ଥେ କି ସଂଶୟ ଅଛି ହୋ" । । ୭୩ ।
(କୋ. ବ୍ର. ସୁ ୧ମ ଛାନ୍ଦ)

"କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟର ଆଦ୍ୟଛାନ୍ଦରେ ମଙ୍ଗଳାଚରଣ ଅବସରରେ କବି ଉପେନ୍ଦ୍ର ନିଜ କାବ୍ୟର ନିର୍ବିଘ୍ନ ପରିସମାପ୍ତି ପାଇଁ ଜଗନ୍ନାଥଙ୍କ ନିକଟରେ ନିବେଦନ କରିଛନ୍ତି । "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ"କୁ ଶ୍ରୀହର୍ଷଙ୍କ ନୈଷଧ କାବ୍ୟ (୧) ଅନୁରୂପ କରି ଗଢ଼ିବା ପାଇଁ ସେ ଯେଉଁ ଦୁଃସାହସିକ ପଦକ୍ଷେପ ନେଇଛନ୍ତି ପ୍ରଭୁ କୃପାବିନା ତାହା ନିଶ୍ଚିତ ଭାବରେ ଦୁଃସାଧ୍ୟ ବିଷୟ । ପୁନଶ୍ଚ :

ରଚିବି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଚରିତ ।
ସୁଜାତି ସୁମନା ପରି ହୋଇବ ଏ ଗୀତ ହେ ।୭୦।
ସୁରଭିରେ ମୋହିତ-ମାନସ ହେବେ ଦିବ୍ୟେ ।
ଗୁଣିବନ୍ତେ ହୃଦେ ମାଳା କରିଣ ଧରିବେ ହେ ।୭୧।
ରସିକ ଭ୍ରମରେ ହେବେ ରସ ପେନି ବଶ ।
ନିର୍ଗୁଣେ ପେନିଲେ ନ ପେନିଲେ ଅଛି କିସ ହେ ।୭୨।

ଏସବୁ ସମ୍ଭବ ଜଗନ୍ନାଥଙ୍କ କୃପାବଳରେ । ଏ ଭରସା ରଖି ସେ ଆଗେଇ ଯାଇଛନ୍ତି କାବ୍ୟ ରଚନାରେ ।

---

(୧) ଏତ ପରିକ୍ଳୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତୀ ଦୃଷ୍ଟ ଦୃଷ୍ଟାନ୍ତରେ ଏଥିଅଛି ବିଶେଷତି ।
ଯେସନ ନୈଷଧ ପରିଚ୍ଛେ । ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରିଏ ।୩୧।
( ୧୧ଶ ଛାନ୍ଦ )



Digitized by PPRACHIN, SOA

ଏହା ସଂସ୍କୃତ କାବ୍ୟାଦର୍ଶ ଅନୁସାରେ ପାରମ୍ପରିକ ଖଣ୍ଡରେ କାବ୍ୟାରମ୍ଭର ସୂଚନା ଦିଏ । କିନ୍ତୁ ଏହା ଦର୍ଶାଇବା ଏ ରଚନାର ଲକ୍ଷ୍ୟ ନୁହେଁ । ଲକ୍ଷ୍ୟ ହେଉଛି, ଉପେନ୍ଦ୍ର, ସମଗ୍ର ଉତ୍କଳର ତଥା ନିଜର ପ୍ରିୟ ଦେବତା ଜଗନ୍ନାଥଙ୍କ ଲୀଳା ଓ ମହିମାର ବର୍ଣ୍ଣନା ସହିତ ଶ୍ରୀକ୍ଷେତ୍ରର ଯେଉଁ ମନୋଜ୍ଞ ପରିବେଶର ଚିତ୍ରଣ କରିଛନ୍ତି, ସେଥିରୁ ତାଙ୍କର ଭକ୍ତିମତ୍ତା,ମୌଳିକତା ଓ ଉପସ୍ଥାପନ । କୌଶଳର ଏକ ପାଠକୀୟ ଉପଲବ୍ଧିକୁ ପ୍ରକାଶ କରିବା ।

( ୧ )

ପ୍ରଥମ ପଦରେ କବି ଶ୍ରୀକ୍ଷେତ୍ରକୁ ଭାରତର ଏକ ପୁଣ୍ୟ ଧାମ ରୂପେ ବର୍ଣ୍ଣନା କରିଛନ୍ତି । ଏଠି ଅଧିଷ୍ଠିତ ଦେବତା ହେଉଛନ୍ତି ପୁରୁଷ ରୂପୀ/ନାରାୟଣ । ସେ ଦେଖି । ଜଗନ୍ନାଥ ଏଠି ମାନବ ରୂପରେ କଳ୍ପିତ । ମାନବର ସମସ୍ତ ଦୈନନ୍ଦିନ ମର୍ମ ଏହାଙ୍କ ପୂଜାବିଧିରେ ପରିଲକ୍ଷିତ । ସେ ମଣିଷ ପରି ସ୍ନାନ କରନ୍ତି, ଭୋଜନ କରନ୍ତି, ଶୟନ କରନ୍ତି ପୁଣି ଆମୋଦ ପ୍ରମୋଦ ବି କରନ୍ତି । ରୋଗରେ ପୀଡିତ ହୁଅନ୍ତି ଏବଂ ମଣିଷ ପରି ଶରୀର ମଧ୍ୟ ତ୍ୟାଗ କରିଥାନ୍ତି । ଭାରତର ଅନ୍ୟାନ୍ୟ ପ୍ରସିଦ୍ଧ ତୀର୍ଥକ୍ଷେତ୍ରମାନଙ୍କରେ କୌଣସି ଦେବତା ଏପରି ଭାବରେ ପରିକଳ୍ପିତ ହୋଇନାହାନ୍ତି । ମଣିଷର ଦୈନନ୍ଦିନ କ୍ରିୟା କଳାପର ଏପରି ପ୍ରବର୍ତ୍ତନ ମଧ୍ୟ ଏହି ଦେବତାମାନଙ୍କ ଶାନ୍ତିନୀତରେ ପରିଲକ୍ଷିତ ହୁଏନାହିଁ, ଏବଂ ଜଗନ୍ନାଥଙ୍କ ପରି ସେହି ଦେବତାମାନଙ୍କର ବିଗ୍ରହାନ୍ତର ମଧ୍ୟ ହୁଏନାହିଁ । ଏହି ପୁରୁଷ ଶ୍ରେଷ୍ଠ ଜଗନ୍ନାଥଙ୍କ ନିବାସସ୍ଥଳ ହେଉଛି ପୁରୁଷୋତ୍ତମ କ୍ଷେତ୍ର ବା ପୁରୀ ।

ପରବର୍ତ୍ତୀ ପଦମାନଙ୍କରେ କବି ଏହି କ୍ଷେତ୍ରର ପବିତ୍ରତା ତଥା ମାହାତ୍ମ୍ୟକୁ ପ୍ରତିପାଦିତ କରିଛନ୍ତି ବିଭିନ୍ନ ପୌରାଣିକ ଉପାଖ୍ୟାନ ମାଧ୍ୟମରେ । ଏହି କ୍ଷେତ୍ରରେ ବେଦମତେ ନିର୍ବାଣ ମିଳେ । ଏହା ଶ୍ରେଷ୍ଠ ମୁକ୍ତି ସାରୂପ୍ୟକୁ ପ୍ରଦାନ କରିଥାଏ । ଏହାର ସାକ୍ଷୀ ହେଉଛି କରଟ ପକ୍ଷୀ ବା ଭୁଷୁଣ୍ଡ କାକ । ଏ ଉପାଖ୍ୟାନ ଆମର ଚିର ପରିଚିତ । ମହାଦେବ ବ୍ରହ୍ମହତ୍ୟା ପାପରୁ ମୁକ୍ତହେବା ଲାଗି ନାନା ତୀର୍ଥ ଭ୍ରମଣ ଶେଷରେ, ଏଠାରେ ପାପମୁକ୍ତ ହୋଇଥିଲେ । ତାର ପ୍ରମାଣ ହେଉଛନ୍ତି କପାଳମୋଚନ ମହାଦେବ । ସ୍ୱୟଂ କାଶୀଶ୍ୱରଙ୍କ ନିବାସ ଏହାର ପବିତ୍ରତାର ପ୍ରମାଣ ଦିଏ । ଏହି କ୍ଷେତ୍ର ଅନ୍ୟ ସମସ୍ତ ତୀର୍ଥକ୍ଷେତ୍ର ମାନଙ୍କର ମସ୍ତକମଣି ସଦୃଶ । ଏହାର ମହାପ୍ରସାଦ ସେବନରେ, ଘଣ୍ଟଘୋଷ ଶ୍ରବଣରେ ସମସ୍ତ ପାପତାପର ଜ୍ୱାଳା ପ୍ରଶମିତ ହୋଇଥାଏ । ବେଦ ସ୍ୱରୂପ ବଟରାଜାଙ୍କ ସମକ୍ଷରେ ପାପ ପଶୁ ବଳିଦାନରେ ସୁକର୍ମ ଉଦିତ ହୁଏ, ଏବଂ ସର୍ବୋପରି ତୀର୍ଥରାଜ (ସମୁଦ୍ର) ସ୍ପର୍ଶନରେ ପାପୀମାନଙ୍କୁ



Digitized by PPRACHIN, SOA

ଆମନ୍ତ୍ରଣ ଜଣାଏ ସମସ୍ତ ପାପତାପକୁ ତାର ବାଡ଼ି ବା ନଳରେ ଦଗ୍ଧୀଭୂତ କରିବା ପାଇଁ ।

ଏହି କ୍ଷେତ୍ର କମ୍ବୁକଣ୍ଟକ ରୂପେ ପରିଚିତ । ଏହି କଟକର ରାଜା ହେଉଛନ୍ତି— ଜଗନ୍ନାଥ । ଜଗନ୍ନାଥ ଚତୁର୍ବର୍ଣ୍ଣ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର)ଙ୍କୁ ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ ମୋକ୍ଷ) ପ୍ରଦାନ କରନ୍ତି । ବୈଷ୍ଣବ ମତାନୁସାରେ ଜଗନ୍ନାଥ— ଜଗତ + ନାଥ, ରାଧା ଓ କୃଷ୍ଣଙ୍କର ମିଳିତ ବିଗ୍ରହ । ଜଗନ୍ନାଥଙ୍କ ନାମ ସହିତ ଭକ୍ତଦେବୀ ରାଧା ଗୁପ୍ତ ଭାବରେ ଜଡ଼ିତ ହୋଇ ରହିଛନ୍ତି । ଏହା ବୈଷ୍ଣବ ତତ୍ତ୍ୱର ଅପେକ୍ଷା ରଖେ । କିନ୍ତୁ ଏଥିରେ ଜଗନ୍ନାଥଙ୍କ ମହିମା ପ୍ରକଟିତ । ସମଗ୍ର ଭାରତର ଜନମାନସରେ ଏକଦା ପ୍ରବଳ ଭକ୍ତି ଚେତନାର ପ୍ଲାବନ ସୃଷ୍ଟି କରିଥିବା ବୈଷ୍ଣବ ଧର୍ମର ସେ ଯେ ଆରାଧ୍ୟ ଦେବତା ରୂପେ ସ୍ୱୀକୃତ, ଏହା ପ୍ରମାଣିତ । ଉଭୟ ରାଧା-ପ୍ରକୃତି ଓ ପୁରୁଷ-କୃଷ୍ଣଙ୍କର ଯୁଗ୍ମରୂପ ତାଙ୍କର ନାମରେ ହିଁ ପରିକଳ୍ପିତ । ଏଥିରୁ ଉପେନ୍ଦ୍ରଙ୍କ ସମୟକୁ ଜଗନ୍ନାଥଙ୍କ ଠାରେ ଗୌଡ଼ୀୟ ବୈଷ୍ଣବ ତତ୍ତ୍ୱର ଯେ ସମ୍ପୂର୍ଣ୍ଣ ସଂସ୍ଥାପନ ହୋଇସାରିଲଣି, ଏହା ସୁସ୍ପଷ୍ଟ ।

ସ୍ୱୟଂ ଶିବ ଯାହାଙ୍କ ପଦ ଆଶ୍ରୟୀ, ଯାହାଙ୍କ ପାଦ ପଦ୍ମରେ ଲକ୍ଷ୍ମୀ ଏବଂ ଐଶ୍ୱର୍ଯ୍ୟ ଦାୟିନୀ (ଅଣିମା, ଲଘିମା, ପ୍ରାପ୍ତି, ପ୍ରାକାମ୍ୟ, ମହିମା, ଈଶିତ୍ୱ, ବଶିତ୍ୱ ଓ କାମାବଶାୟିତା) ବିମଳା ପ୍ରଭୃତି ଅଷ୍ଟ ମହାଦେବୀ ସେବାରତା ଏବଂ ଯାହାଙ୍କ ସମ୍ମୁଖରେ ଗରୁଡ଼ ଯୋଡ଼ହସ୍ତରେ ଦଣ୍ଡାୟମାନ ହୋଇ ଆର୍ତ୍ତଜନ ଗୁହାରିକୁ ଶ୍ରବଣ କରିବା ପାଇଁ ନିବେଦନ କରୁଛନ୍ତି; ସେହି ଜଗନ୍ନାଥ କୋଟି-କନ୍ଦର୍ପ-ଲାବଣ୍ୟ ମୂର୍ତ୍ତି ରୂପେ ରତ୍ନସିଂହାସନରେ ବିରାଜମାନ । ମସ୍ତକରେ ଜାଜ୍ଜ୍ୱଲ୍ୟମାନ ରତ୍ନ ମୁକୁଟ, କର୍ଣ୍ଣରେ ମକର କୁଣ୍ଡଳ, ପ୍ରବାଳ ନୌକା ପରି ଲାଲ ଅଧର । ସେ ଶ୍ରୀକ୍ଷେତ୍ରରେ ଦଶାବତାରର ବିଭିନ୍ନ ଲୀଳାମାନ ରଚନା କରି ଲୋକମାନସରେ ତାର ସ୍ମୃତି ଜାଗ୍ରତ କରାନ୍ତି ।

( ୨ )

ଏହାପରେ ପବିତ୍ର ସ୍ନାନ ପୂର୍ଣ୍ଣିମାର ବର୍ଣ୍ଣନା । ଜ୍ୟେଷ୍ଠମାସ ପୂର୍ଣ୍ଣିମା ତିଥିରେ ପୂର୍ବଦିନ ବ୍ରାହ୍ମମୁହୂର୍ତ୍ତ ବା ରାତ୍ର ପାହାନ୍ତାରୁ ପଣ୍ଡା, ପଡ଼ିହାରୀ, ପ୍ରଭୃତି ସେବକବୃନ୍ଦ ମହାପ୍ରଭୁଙ୍କ ନିକଟରେ ଉପସ୍ଥିତ ହେଲେ । ବହୁଦୂର ଦେଶାଗତ ଯାତ୍ରୀଗଣ ନିଜ ନିଜର ନିତ୍ୟକର୍ମ ସମାପନ ପୂର୍ବକ, ମନ୍ଦିର ଦ୍ୱାରରେ ଉପସ୍ଥିତ ହୋଇ ହରିଧ୍ୱନି ଦେଲେ । ତାହାପରେ ତୁରୀ, ଘାହାଡ଼ା ଢୋଲ । ମେଧା, ମୃଦଙ୍ଗ,



Digitized by PPRACHIN, SOA

ମର୍ଦ୍ଦଳ, କଂସାଳ, ତାଳ, କର୍ଣ୍ଣାଳ, ପଟହ, ଝଞ୍ଜି ଇତ୍ୟାଦିର ସମ୍ମିଶ୍ରିତ ବାଜଣାରେ ଚତୁର୍ଦ୍ଦିଗ କମ୍ପି ଉଠିଲା । ଏ ସବୁ ପ୍ରଭୁ ବିଜୟର ପ୍ରାକ୍ ପ୍ରସ୍ତୁତ । ଆଗମନର ସମୟ ଆସନ୍ନ । ଜଗନ୍ନାଥ,ବଳଭଦ୍ର ଏଠି ହସ୍ତୀରୂପରେ କଳ୍ପିତ । ଜଗନ୍ନାଥ-ଦକ୍ଷିଣ କୁଞ୍ଜର, ଯେ ବାମନ,ସେ କଳା ଏବଂ ଅଗ୍ରଜ ବଳଭଦ୍ର ହେଉଛନ୍ତି ପୂର୍ବଗଜ-ଐରାବତ, ଯାହାଙ୍କ ବର୍ଣ୍ଣ ଶ୍ୱେତ ବର୍ଣ୍ଣ । ପ୍ରଥମେ ଆସୁଛନ୍ତି ବଳଭଦ୍ର । ଉପେନ୍ଦ୍ରଙ୍କ ବର୍ଣ୍ଣନାରୁ ଏସବୁ ଲକ୍ଷ୍ୟ କରଯାଉ—

× × ×

ଜାଣିଲେ ନିଶ୍ଚୟ ପ୍ରଭୁ ଦକ୍ଷିଣ କୁଞ୍ଜର ହେ ।୩୦।

ପୂର୍ବଜରେ ପୂର୍ବଗଜ ଭାବ ଉପୁଜାଇ,
ପହଣ୍ଡି ବିଜୟ କଲେ ଝୁଲାଇ ଝୁଲାଇ ସେ ।୩୧।

ଏମନ୍ତ ନୋହିଲେ କି ପ୍ରାସାଦ ଦନ୍ତିତେଜି
ମଣ୍ଡପ ସର ଅବଗାହରେ ଚଉ ମଣ୍ଡି ହେ ।୩୨।

ସାର ଗନ୍ଧସାର ପଙ୍କେ ଭୂଷିତ ହୋଇବେ
ଜନ-ପଙ୍କ-ପଙ୍କଜ ବନକୁ ଉଜାଡିବେ ହେ ।୩୩।

ବଳଭଦ୍ରଙ୍କ ଆଗମନ ପରେ ସୁଭଦ୍ରା ଏବଂ ତ୍ରିତାପ (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ) ଖଣ୍ଡ ଭଞ୍ଜନ କାରୀ ସୁଦର୍ଶନ ମଧ୍ୟ ସ୍ନାନ ମଣ୍ଡପରେ ବିଜୟ କଲେ । ସର୍ବଶେଷରେ ସ୍ନାନ ମଣ୍ଡପକୁ ଆସୁଛନ୍ତି ଜଗନ୍ନାଥ —

ଇନ୍ଦ୍ରପଦ ଦାତା ଯେ ରାଜାଧିରାଜେଶ୍ୱର
ବିଜେ କଲେ ଦ୍ୱିଜେ ଦେଇ ନିଜ କରଭର ହେ ।୩୮।
ଚାଲନ୍ତି ଚାମର ଶ୍ୱେତ ଛତ୍ର ଟେକା ତହିଁ
× × × ।୩୯।

ଏମନ୍ତେ ସ୍ନାନ ମଣ୍ଡପେ ସିଂହାସନ ପର
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ହେ ।୪୫।

ଏହାପରେ ଆରମ୍ଭ ହେଲା ସ୍ନାନ ମହୋତ୍ସବ । ଜଳ ଢାଳସମାନ ଢଳା-ଗଲା ମୂର୍ତ୍ତିମାନଙ୍କ ମୁଖମଣ୍ଡଳରେ ।

॥ ବଠନ୍ତ ॥

Digitized by PPRACHIN, SOA

ଢ଼ାଳିଲେ ଭୃଙ୍ଗୁରେ ନୀର ଶ୍ରୀମୁଖ ମଣ୍ଡଳେ ।
ଧାରମାନ ପତନ ହୋଇଲା ମହୋଜ୍ଜ୍ୱଳେ ହେ । ୪୭ ।
କି ମେରୁ-ସ୍ୱର-ମାରଗ ହେମ-ଶୃଙ୍ଗୁ ଖସି ।
କାଳିନ୍ଦୀ ଯମୁନା ହରିତାଳ ଧାର ଆସି ହେ । ୪୮ ।
ଲେପନ ଚନ୍ଦନ ଝରି ଦିଶିଲା ଏମନ୍ତ ।
ସେ ତିନଶୃଙ୍ଗୁ କି ଜାତ ତରଳ-ରଜତ ଯେ । ୪୯ ।

( ୩ )

ପ୍ରଥମେ ଉପେନ୍ଦ୍ରଙ୍କ ଗ୍ରନ୍ଥ ପରିକଳ୍ପନାଟିକୁ ଲକ୍ଷ୍ୟ କରାଯାଉ—

(କ) କ୍ଷେତ୍ରର ପରିଚୟ— ପ୍ରଥମ ପଦ ।
(ଖ) କ୍ଷେତ୍ରର ମାହାତ୍ମ୍ୟ— ୨ୟ ପଦ ଠାରୁ ୧୧ଶ ପଦ ପର୍ଯ୍ୟନ୍ତ ।
(ଗ) କ୍ଷେତ୍ରାଧିପତି ଜଗନ୍ନାଥଙ୍କ ସମ୍ପର୍କରେ ସୂଚନା— ୧୨ଶ ପଦ ।
(ଘ) ଜଗନ୍ନାଥଙ୍କ ମହିମା ଓ ରୂପ ବର୍ଣ୍ଣନା— ୧୩ଶ ପଦ ଠାରୁ ୨୨ଶ ପଦ ପର୍ଯ୍ୟନ୍ତ ।
(ଙ) ସ୍ନାନ ପୂର୍ଣ୍ଣିମାର ବର୍ଣ୍ଣନା— ୨୪ଶ ଠାରୁ ୫୪ ପଦ ପର୍ଯ୍ୟନ୍ତ ।
(ଚ) କବିଙ୍କର ବ୍ୟକ୍ତିଗତ ଅନୁଭୂତି— ୫୦ ଓ ୫୫ ପଦରେ ।
(ଛ) କବିଙ୍କ ସ୍ତୁତି— ୫୭ ପଦଠାରୁ ।

କବିଙ୍କର ବର୍ଣ୍ଣନାର ମୂଳଲକ୍ଷ୍ୟ ହେଉଛି- ସ୍ନାନଯାତ୍ରା । ମୂଳ ବିଷୟ ବସ୍ତୁକୁ ଆସିବା ପୂର୍ବରୁ ଏହି ଯାତ୍ରାର ମୁଖ୍ୟ ନାୟକ, ସ୍ଥାନ, ସମୟ, ପରିବେଶ ଓ ପରିବେଷ୍ଟନୀର ସ୍ପଷ୍ଟ ଧାରଣାଟି ଆମ ଆଗରେ ସେ ଆଣି ଉପସ୍ଥାପନ କରିଛନ୍ତି । ସମଗ୍ର ଗ୍ରନ୍ଥଟିକୁ ୨ଟି ଭିନ୍ନ ଚିତ୍ର ଭାବରେ ଗ୍ରହଣ କରାଯାଇପାରେ । ସ୍ଥିରଚିତ୍ର ଏବଂ ଗତିଶୀଳ ଚିତ୍ର । ୧ମ ପଦ ଠାରୁ ୨୩ଶ ପଦ ପର୍ଯ୍ୟନ୍ତ କବି ଶ୍ରୀକ୍ଷେତ୍ର, ତାହାର ପରିବେଶ ଓ ଜଗନ୍ନାଥ ତଥା ତାଙ୍କର ମାହାତ୍ମ୍ୟ ସମ୍ପର୍କରେ ଯେଉଁ ସୂଚନା ଦେଇଛନ୍ତି, ସେଗୁଡିକ ଏକ ଏକ ସ୍ଥିରଚିତ୍ରର ଧାରଣା ଆଣେ । କାରଣ କବି ସମଗ୍ର ପରିବେଶର ଧାରଣା ସ୍ୱଳ୍ପ ସମୟ ମଧ୍ୟରେ ଦେବାର ଲକ୍ଷ୍ୟନେଇ, ଚୁମ୍ବକୀୟ ଭାବରେ କେତେକ ଏକାନ୍ତ ପବିତ୍ର ଓ ମହିମାବନ୍ତ ବସ୍ତୁ ଓ ପରିବେଶର ବର୍ଣ୍ଣନା କରିଯାଇଛନ୍ତି । ଏହାକୁ ସ୍ନାନଯାତ୍ରା ବର୍ଣ୍ଣନାର ଉପକ୍ରମଣିକା ବା ବିଷୟ ପ୍ରବେଶ ଭାବରେ ଗ୍ରହଣ କରାଯାଇ ପାରେ ।



Digitized by PPRACHIN, SOA

କିନ୍ତୁ ସ୍ନାନ ପୂର୍ଣ୍ଣିମାର ବର୍ଣ୍ଣନାକୁ କବି ଗତିଶୀଳ ଚିତ୍ରଟିଏ ଭାବରେ, ଏକ ପରିବେଶରୁ ଦୃଶ୍ୟ ପରେ ଦୃଶ୍ୟକୁ,କ୍ରମାନ୍ୱୟରେ ଆଙ୍କି ଯାଇଛନ୍ତି । ଯାହା ଫଳରେ ପାଠକ ଏହି ଯାତ୍ରା ଏବଂ ତାହାର ତତ୍‌କାଳୀନ ପରିବେଶ ବା ପରିବେଷ୍ଟନୀର ଏକ ସମ୍ପୂର୍ଣ୍ଣ ତଥା ପ୍ରାଞ୍ଜଳ ଧାରଣା ଲାଭ କରିଥାଏ ।

( ୪ )

ଏତେ ସବୁ ବ୍ୟାଖ୍ୟାର ଲକ୍ଷ୍ୟ ହେଉଛି,ଉପେନ୍ଦ୍ରଙ୍କର ବର୍ଣ୍ଣନା ବାସ୍ତବରେ ଜଣେ ପ୍ରତ୍ୟକ୍ଷଦର୍ଶୀର ବିବରଣୀ ସଦୃଶ । ଉପେନ୍ଦ୍ର ଜଗନ୍ନାଥ ଧାମର ମହିମା ଓ ପବିତ୍ରତା ସହିତ ଥିଲେ ସମ୍ପୂର୍ଣ୍ଣ ସଶ୍ଳିଷ୍ଟ । ଆଲୋଚ୍ୟ ଗ୍ରନ୍ଥର ପ୍ରଥମପର୍ଯ୍ୟାୟ ପାଠ କଲାବେଳେ ମନେହୁଏ, ଯେତେ ଯେପରି ତୀର୍ଥାଗତ ଯାତ୍ରୀଟିଏ ଆଗରେ ଜଣେ ଗାଇଡ୍ ବା ଦିଗ୍‌ଦର୍ଶକ ପୁରୀର ମାହାତ୍ମ୍ୟକୁ ବର୍ଣ୍ଣନା କରି ପ୍ରତ୍ୟେକ ପବିତ୍ର ସ୍ଥାନ ସହିତ ସେହି ଦିବ୍ୟଧାମକୁ ପରିଚିତ କରାଉଛନ୍ତି ।

"ସବୁଦିନେ ଲୀଳା ସ୍ଥାନ ନୀଳ ମଣ୍ଡାଧରରେ" ବାରମାସରେ ତେର ଯାତ୍ରାର ଚହଲ ଲାଗି ରହିଥାଏ । କିନ୍ତୁ ସ୍ନାନ ଓ ଗୁଣ୍ଡିଚା ହେଉଛି ଏମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଏହି ଦୁଇ ଯାତ୍ରାରେ ସ୍ୱୟଂ ଜଗନ୍ନାଥ ମନ୍ଦିର ବେଢାରୁ ଜନ ସମୁଦ୍ର ମଧ୍ୟକୁ ଆସିଥାନ୍ତି । ଦେଉଳ ଭିତରେ ଜଗନ୍ନାଥ ବିଭିନ୍ନ ଉପଚାରରେ ପୂଜିତ ହୋଇଥାନ୍ତି ଏବଂ ମନ୍ଦିର ପରିସରରେ ବହୁ ପର୍ବପର୍ବାଣୀ ଅନବରତ ଲାଗି ରହିଥାଏ । କିନ୍ତୁ ସର୍ବସାଧାରଣଙ୍କ ନିମନ୍ତେ ଏ ସମସ୍ତ ଦେଖିବାର ସୁଯୋଗ କ୍ୱଚିତ୍ ଆସିଥାଏ । ପୁଣି ରତ୍ନ ସିଂହାସନରେ ବିରାଜିତ ଜଗନ୍ନାଥ,କେମିତି ଆପଣାର ମନେ ହୁଅନ୍ତି ନାହିଁ । ମୂଳତଃ ଜଗନ୍ନାଥ ଇତର ଲୋକ ପୂଜିତ ଦେବତା ହେଲେ ମଧ୍ୟ, ବ୍ରାହ୍ମଣ ସଂସ୍କୃତିର ପ୍ରଭାବ ତଥା ବିଭିନ୍ନ ଧର୍ମ ପ୍ରଚାରକ ମାନଙ୍କ ଶ୍ରୀକ୍ଷେତ୍ର ଆଗମନ ଏବଂ ସେମାନଙ୍କ ପ୍ରବର୍ତ୍ତିତ ରୀତି ନୀତିର ପ୍ରବେଶ ଫଳରେ, ସେ କ୍ରମଶଃ ଜନସାଧାରଣଙ୍କ ଠାରୁ ଦୂରେଇ ଗଲା ଭଳି ମନେ ହୁଅନ୍ତି । କିନ୍ତୁ ସ୍ନାନ ଓ ଗୁଣ୍ଡିଚାରେ ଏହି "ଇନ୍ଦ୍ରପଦ ଦାତା ଯେ ରାଜାଧିରାଜେଶ୍ୱର", ସ୍ପୃଶ୍ୟ, ଅସ୍ପୃଶ୍ୟ, ପତିତ, ପାତିତ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ନିକଟରେ ଉପସ୍ଥିତ ହୁଅନ୍ତି । ମନେହୁଏ ସମସ୍ତଙ୍କର ଦୁଃଖ ଦୁର୍ଦ୍ଦଶାର ମୋଚନ ନିମିତ୍ତ ଓ ଭଲମନ୍ଦ ବୁଝିବା ସକାଶେ, ସେ ଜନଗହଳକୁ ଆସିଛନ୍ତି । ସେଠି ନଥାଏ କୌଣସି ଶୃଙ୍ଖଳିତ ଉପଚାରର ବନ୍ଧନ,କିମ୍ବା ପୁରୋହିତ କର୍ମକାଣ୍ଡର ଗୁରୁଗମ୍ଭୀର ଧ୍ୱନି । ସରଳ ଜନସାଧାରଣଙ୍କ ଭଳି ସେଠି ସବୁକିଛି



Digitized by PPRACHIN, SOA

ଘଟଇ । ତେଣୁ ସ୍ନାନ ଓ ଗୁଣ୍ଡିଚାରେ ବହୁଲୋକ ସମାଗମର ହୁଏତ ଏ ଏକ କାରଣ ହୋଇପାରେ ।

ଦ୍ୱିତୀୟତଃ, ଜଗନ୍ନାଥ ସମଗ୍ର ଓଡ଼ିଆ ଜାତିର ପ୍ରିୟ ଦେବତା । ନିଜର ପ୍ରିୟ ପ୍ରଭୁ ବାଧିକାରେ ପଡ଼ିଛନ୍ତି । ଅଣ୍ଟା ଜ୍ୱରରେ ଆକ୍ରାନ୍ତ ହୋଇଛନ୍ତି । କୌଣସି ବନ୍ଧୁ ଓ ଆତ୍ମୀୟ ବାଧିକାରେ ପଡ଼ିଲେ ଦେଖିଯିବା, ଆମ ଜାତିର ଚିରଚରିତ ଏକ ବିଧି । ଜଗନ୍ନାଥଙ୍କଠାରେ ଏହାର ବା ବ୍ୟତିକ୍ରମ ହୁଅନ୍ତା କିପରି ?

ତୃତୀୟତଃ, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ପ୍ରଭୃତି ମୂର୍ତ୍ତି ସମୂହ ଆମ ଆଗରେ ବିଚିତ୍ର ବେଶସ୍ୱରୂପେ ଦେଖାଦେଇଥାନ୍ତି । କିନ୍ତୁ ସ୍ନାନ ପୂର୍ଣ୍ଣିମାରେ ଏମାନଙ୍କର ପ୍ରକୃତ ସ୍ୱରୂପ ଦେଖିହୁଏ । ରଙ୍ଗଲାଗି ପୁନଃ ଚର୍ଚ୍ଚିତ ହେବାର ସମୟ ହେଉଛି, ସ୍ନାନ ପୂର୍ଣ୍ଣିମା ଓ ଗୁଣ୍ଡିଚାର ମଧ୍ୟବର୍ତ୍ତୀ ସମୟ-ଅବସର । ଏ ସମୟରେ ତେଣୁ ଜନ-ସମାଗମ ଏକାନ୍ତ ସ୍ୱାଭାବିକ ।

ଏ ଯାତ୍ରା ଦେଖିବା ଏକ ସୌଭାଗ୍ୟ ବୋଲି ଆମର ପ୍ରଚଳିତ ଲୋକ-ବିଶ୍ୱାସ ଅଛି । ସ୍ନାନଠାରୁ ଗୁଣ୍ଡିଚା ପର୍ଯ୍ୟନ୍ତ ଶ୍ରୀଧାମରେ ରହି ରଥାରୂଢ଼ ଜଗନ୍ନାଥଙ୍କୁ ଦେଖିବାର ସୌଭାଗ୍ୟକୁ ଜନ୍ମ ଜନ୍ମର ପୁଣ୍ୟ କର୍ମର ଫଳ ରୂପେ ଆମ ଲୋକ ସମାଜ ଗ୍ରହଣ କରିଛି । ଏ ଯାତ୍ରାର ଗୁରୁତ୍ୱ ମଧ୍ୟ ଆମେ ଉପେନ୍ଦ୍ରଙ୍କ ବର୍ଣ୍ଣନାରେ ଉପଲବ୍ଧି କରୁ—

"ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂଲୀଳା ଯାର
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।" ୨୪ ।

ପାଠକେ ଏଠି ଲକ୍ଷ୍ୟ କରନ୍ତୁ, "ଏ ବେନି ସ୍ୱୟଂଲୀଳା ଯାର" ଯାହାକି ଜଗନ୍ନାଥ ଉତ୍ପତ୍ତି ଠାରୁ, ସ୍ନାନ ଓ ଗୁଣ୍ଡିଚା ପ୍ରଚଳିତ ଥିବାର ପ୍ରମାଣ ଦିଏ । ସ୍ୱୟଂ ଜଗନ୍ନାଥ ଏହି ଯାତ୍ରାରେ ଅଂଶ ଗ୍ରହଣ କରନ୍ତି । 'ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର'ରେ ଆମେ ଦିନୋଟି କଥା ଲକ୍ଷ୍ୟ କରିପାରିବା ଉପେନ୍ଦ୍ରଙ୍କ ସମୟକୁ—

(କ) ଏହି ଦୁଇ ଯାତ୍ରାରେ ଜଗନ୍ନାଥ ମନ୍ଦିର ପରିସରରୁ ବାହାରକୁ ଆସୁଥିଲେ ଏବଂ ସର୍ବସାଧାରଣ ତାହାଙ୍କୁ ଦେଖିପାରୁନଥିଲେ ।

(ଖ) ବିଭିନ୍ନ ଉପଗୃହ (ଧର୍ମ ସମ୍ପ୍ରଦାୟମାନଙ୍କ ଦ୍ୱାରା ପ୍ରବର୍ତ୍ତିତ)ର ପ୍ରବେଶ ହୋଇ-ସାରିଲାଣି ମନ୍ଦିର ପରିସରରେ ।

॥ ପଞ୍ଚଦଶ ॥

Digitized by PPRACHIN, SOA

(ଗ) ଜଗନ୍ନାଥ ପତିତପାବନ ରୂପେ ସ୍ୱୀକୃତ ହୋଇସାରିଲେଣି ।

ସେ ଯାହାହେଉ ସେ ଦିନ ଏହି ପବିତ୍ର ଯାତ୍ରାର ଦର୍ଶକଟିଏ ଥିଲେ ଉପେନ୍ଦ୍ର । ଉତ୍ସୁକ ଯାତ୍ରୀଙ୍କ ମେଳରେ ରହି ସ୍ନାନ ଯାତ୍ରାର ସମଗ୍ର ଦୃଶ୍ୟକୁ ସେ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରିଛନ୍ତି । ପଣ୍ଡା ପଡ଼ିହାରୀଙ୍କ ନିତ୍ୟକର୍ମ (୧), ଯାତ୍ରୀ-ମାନଙ୍କର ହରିଧ୍ୱନି (୨), ପ୍ରଭୁ ବିଜେସ୍ଥ ନିମିତ୍ତ ଭୂଜ ପାହାଡ଼ା ଘଣ୍ଟିବା (୩), ମେଘା, ମୃଦଙ୍ଗ, ତାଳ, କଂସାଳ ଇତ୍ୟାଦି ବାଜିବା (୪), ମୂର୍ତ୍ତିମାନଙ୍କର ଝୁଲି ଝୁଲି ଟଳିବା (୫), ଜଗନ୍ନାଥ ସେବକମାନଙ୍କ କାନ୍ଧରେ ହାତ ଦେଇ ଆସିବା (୬), ବ୍ରାହ୍ମଣଗଣ ଛତ୍ର ଟେକି ଧରିବା ଏବଂ ଚାମର ଢ଼ାଳିବା (୭), ଲୋକ ସମାଗମ ଓ ସୂର୍ଯ୍ୟ ତାପରୁ ରକ୍ଷା ପାଇବା ପାଇଁ କଳାଛତା ଧାରଣ (୮), ଲୋକଙ୍କର ହଳଦିଆ ବସ୍ତ୍ର ପରିଧାନ (୯), ମୟୂରପୁଚ୍ଛ ଫିଙ୍ଗିବା (୧୦), ନାଗରା ବାଜିବା (୧୧), ଫୁଲ ଫିଙ୍ଗିବା (୧୨), ବ୍ରାହ୍ମଣଗଣ ଜଳ ଢ଼ାଳିବା (୧୩), ମୂର୍ତ୍ତିମାନଙ୍କ ଦେହରୁ ରଙ୍ଗ ଛୁଡ଼ିବା(୧୪), ଇତ୍ୟାଦିରୁ ଉପେନ୍ଦ୍ରଙ୍କ ପର୍ଯ୍ୟବେକ୍ଷଣ ଶୈଳୀକୁ ପ୍ରଶଂସା ନକରି ରହିହୁଏନାହିଁ । ଫଳତଃ ତତ୍କାଳରେ ଅନୁଷ୍ଠିତ ଏକ ଯାତ୍ରାର ଜୀବନ୍ତ ଚିତ୍ରଟିଏ ଆଜି ମଧ୍ୟ ଆମ ଆଖି ଆଗରେ ନାଚିଉଠେ ।

ଏହି ଯାତ୍ରାର ଜଣେ ପ୍ରତ୍ୟକ୍ଷ ଦର୍ଶକ ଭାବରେ ଉପେନ୍ଦ୍ର ନିଜକୁ ଭାଗ୍ୟବାନ ମଣିଛନ୍ତି । ଚକ୍ଷୁ ତାଙ୍କର ପବିତ୍ର ହୋଇଛି । ମନରୁ ଦୁଃସହ ଦୁଃଖ ମାନ ଦୂରୀଭୂତ ହୋଇଛି । ଏହି ମହାନ୍ ଯାତ୍ରାର ବର୍ଣ୍ଣନା କରିବାର ସୁଯୋଗ ପାଇଥିବାରୁ ସେ ପୁଲକିତ ହୋଇ ଗାଇ ଉଠିଛନ୍ତି—

"ଭାଗ୍ୟରୁ ଏ ଉପମାକାରକ ମୁଁ ଯେ ହେଲି
ପୁଲକିତ ଶରୀରେ ହରିରେ ସ୍ତୁତି କଲି ହେ ।୫୫।

ଏଠାରେ ଆମେ (କ) ତତ୍କାଳୀନ ଜଗନ୍ନାଥ ଦର୍ଶନକାଙ୍କ୍ଷୀ ଭକ୍ତଟିଏର ଉଦ୍ବେଳିତ ପ୍ରାଣର ଉଲ୍ଲାସକୁ ଉପଲବ୍ଧି କରିଥାଉ ।

(ଖ) ସ୍ୱୟଂ ଉପେନ୍ଦ୍ରଙ୍କୁ ଆମେ ଏଠି ଭେଟିଥାଉ । ନିଜ ରଚନାରେ ଖୁବ୍ କମ୍ ଜାଗାରେ ଆମେ ଉପେନ୍ଦ୍ରଙ୍କୁ ଏଭଳି ଅବସ୍ଥାରେ ସାକ୍ଷାତ୍ କରିବା ।*

---

*ଏହାଦ୍ୱାରା ଉପେନ୍ଦ୍ରଙ୍କ ସମ୍ପର୍କରେ ପ୍ରଚଳିତ କେତେକ ଅପ ଆଲୋଚନା—ଯଥା (୧) ଉପେନ୍ଦ୍ର ପୁରୀ ଯାଇନଥିଲେ (୨) ଉପେନ୍ଦ୍ର ସମୁଦ୍ର ଦେଖିନଥିଲେ (୩) ଉପେନ୍ଦ୍ର ଅହଂକାରୀ ଥିଲେ ଇତ୍ୟାଦିର ସମାଧାନ ହୋଇପାରିବ ବୋଲି ମୋର ବିଶ୍ୱାସ । ଏଥିପାଇଁ ଏ ଛାନ୍ଦର ୧୦।୧୧।୫୦।୫୫ ପଦ ଏକାନ୍ତ ପଠନୀୟ ।



Digitized by PPRACHIN, SOA

ଏପରି ଏକକ ବର୍ଣ୍ଣନାକୁ ନେଇ ମଙ୍ଗଳାଚରଣ ରଚନା କରିବା ବୋଧହୁଏ ଉପେନ୍ଦ୍ରଙ୍କ ରଚନାରେ ହିଁ ଦେଖାଯାଏ (୧)। ସମଗ୍ର ଓଡ଼ିଆ ସାହିତ୍ୟରେ ଏପରି ଏକକ ପରିବେଶର ଚିତ୍ରଣ (ମଙ୍ଗଳାଚରଣରେ) ଖୁବ୍ କମ୍ ପରିଦୃଷ୍ଟ ହୁଏ। ଏହାକୁ ଉପେନ୍ଦ୍ରଙ୍କର ଏକ ବିଶେଷତ୍ୱ ଭାବରେ ଗଣାଯାଇପାରେ।

ଆଲୋଚିତ ଗ୍ରନ୍ଥ ରଚନାରେ ଉପେନ୍ଦ୍ର କୃତ୍ରିମତାର ଆଶ୍ରୟ ନେଇ ନାହାନ୍ତି କିମ୍ବା ଶବ୍ଦ ପାଣ୍ଡିତ୍ୟ ମଧ୍ୟରେ କବିତ୍ୱ ବିସର୍ଜ୍ଜି ଦେଇ ନାହାନ୍ତି। ବରଂ-ଭକ୍ତି-ଆବେଗ ଜନିତ ସରଳ ସ୍ୱତଃସ୍ଫୂର୍ତ୍ତିତା ମଧ୍ୟରେ ଏ ଗ୍ରନ୍ଥ ପ୍ରକାଶ ଲାଭ କରିଛି।

( ୪ )

ଉପସଂହାରରେ ଏତିକି କୁହାଯାଇପାରେ, ଏ ଗ୍ରନ୍ଥଟି କବିଙ୍କ ଜଗନ୍ନାଥ ପ୍ରୀତିର ନିଚ୍ଛକ ପ୍ରତିଲିପି। ଏଠାରେ ସେ ଉତ୍କଳଖଣ୍ଡର ପବିତ୍ରତାକୁ ପ୍ରକାଶ କରିଛନ୍ତି। ଉତ୍କଳ, ଉତ୍କଳୀୟ ଭିନ୍ନ ଅନ୍ୟମାନଙ୍କ ନିକଟରେ ଜଗନ୍ନାଥ ଦେଶରୂପେ ପରିଚିତ। ଜଗନ୍ନାଥ ଭିନ୍ନ ଉତ୍କଳ ମୂଲ୍ୟହୀନ। ଜଗନ୍ନାଥ ହେଉଛନ୍ତି ଓଡ଼ିଆର ଆଇ-ଡେଣ୍ଟିଟି/ପରିଚୟପତ୍ର। କବି ଜଗନ୍ନାଥଙ୍କୁ ଭାରତର ଶ୍ରେଷ୍ଠ ଦେବତା ଭାବରେ ସର୍ବ-ଧର୍ମର ଆଧାର ରୂପେ ଏବଂ ଶ୍ରୀକ୍ଷେତ୍ରକୁ 'ଭରତ ଖଣ୍ଡେ ପୁଣ୍ୟଧାମ', 'ଅନ୍ୟକ୍ଷେତ୍ର ସମସ୍ତଙ୍କ ଏ ମସ୍ତକମଣି', 'କ୍ଷେତ୍ର ନରେନ୍ଦ୍ର ପଦଭି ସମ୍ଭାବିତ' ଇତ୍ୟାଦି ଭାବେ ପ୍ରକାଶ କରି ଏବଂ ପୁରୁଷୋତ୍ତମ କ୍ଷେତ୍ରର ପ୍ରତ୍ୟେକ ବସ୍ତୁ ଓ ପରିବେଶରେ ପବିତ୍ରତାର ପ୍ରକଟନ କରି ଜାତୀୟ କର୍ତ୍ତବ୍ୟଟିଏ କରିଯାଇଛନ୍ତି। ଏହା କ'ଣ ଉପେନ୍ଦ୍ରଙ୍କର ସ୍ୱଭୂମି ପ୍ରୀତିର ନିଦର୍ଶନ ନୁହେଁ କି? (୨)

ମହାଯାତ୍ରା ଓ ଚିଲିକାରେ ଥିବା ଜଗନ୍ନାଥ, ଶ୍ରୀକ୍ଷେତ୍ର ଓ ଉତ୍କଳ ବର୍ଣ୍ଣନାକୁ ନେଇ ଆମେ ରାଧାନାଥଙ୍କୁ ଉତ୍କଳୀୟତାର ଶ୍ରେଷ୍ଠ ଉପାସକର ଗୌରବ ଦେଇଥାଉ,(୩) କିନ୍ତୁ ତାଙ୍କର ପ୍ରାୟ ଦୁଇ ଶତାବ୍ଦୀ ପୂର୍ବରୁ ରଚିତ ଏହି ରଚନାରେ ଉପେନ୍ଦ୍ରଙ୍କ ଉତ୍କଳପ୍ରୀତିର ଯେଉଁ ନିଦର୍ଶନ ମିଳେ, ସେଥିପାଇଁ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇପାରିବା ନାହିଁ, ନୀରବ ସ୍ୱୀକୃତିର ମାଳାଟିଏ ପିନ୍ଧାଇବାରେ କୌଣସି ପ୍ରତିବନ୍ଧକ ଅଛି କି ?

ନୂଆସାହି, ଭଞ୍ଜନଗର
ଗଞ୍ଜାମ।

---

(୧) ରସିକ ହାରାବଳୀ ତୃତୀୟ ଗ୍ରନ୍ଥ ଦ୍ରଷ୍ଟବ୍ୟ,
(୨) ଅବଶ୍ୟ 'ଜାତୀୟତା' ଏକ ଆଧୁନିକ ଶବ୍ଦ।
(୩) ରାଧାନାଥଙ୍କୁ ସମାଲୋଚନା କରିଯାଇଛିବୋଲି କେହି ଯେପରି ମନେ ନକରନ୍ତି।

॥ ସତତ୍ତରଣ ॥

Digitized by PPRACHIN, SOA

# ।। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ଏକ ନୈଷଧୀୟ ସ୍ୱପ୍ନ ।।

—ଡକ୍ଟର ରାଘବାନନ୍ଦ ନାୟକ
ଏମ୍.ଏ.;ଡି.ଲିଟ୍;



ରଚିବ "କୋଟି ବ୍ରହ୍ମାଣ୍ଡ-ସୁନ୍ଦରୀ" ଚରିତ ।
ସୁଜାତ ସୁମନାପରି ହୋଇବ ଏ ଗୀତ ।
ସୁରଭିରେ ମୋହିତ-ମାନସ ହେବେ ଭବ୍ୟ ।
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ।
(କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ : ପ୍ରଥମ ଛାନ୍ଦ- ୭୦/୭୧)

ଉପେନ୍ଦ୍ରଙ୍କର ସ୍ୱପ୍ନ ଥିଲା ସେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଆଖ୍ୟାନ ରଚନା କରିବେ । ଉତ୍ତମ ଜାଇଫୁଲ୍ ପରି ଏହାର ସଙ୍ଗୀତର ସୌରଭରେ ବିଦଗ୍ଧ ବ୍ୟକ୍ତିଗଣ ମୁଗ୍ଧ ହେବେ, ହୃଦୟରେ ମାଳାପରି ଗୁଣବନ୍ତ ଲୋକମାନେ ଧାରଣ କରିବେ ଏହି କାବ୍ୟଟିକୁ । ତାଙ୍କର କାଳ୍ପନିକ କାବ୍ୟମାନଙ୍କ ମଧ୍ୟରେ ଯଥାର୍ଥରେ ଏହା ମୁକୁଟାଳଙ୍କାର; ଅଳଙ୍କାର ଓ ବର୍ଣ୍ଣନା ଦୃଷ୍ଟିରୁ ଅନ୍ୟ କାବ୍ୟ ଗୁଡ଼ିକୁ ଏହା ଅତିକ୍ରମ କରିଯାଇଛି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ଯୌବନ ହିଁ ଏହି କାବ୍ୟର ଶ୍ରେଷ୍ଠ ଉପଜୀବ୍ୟ । କବି କଳ୍ପନାରେ ପ୍ରେମ ଓ ଅମୃତର ସାରଭାଗରେ ବିଧାତା ରାଜଜେମାକୁ ନିର୍ମାଣ କରିଥିଲେ । କାବ୍ୟାମୃତ ଓ ପ୍ରେମ ରସରେ ତାଙ୍କର ସମଗ୍ର କାବ୍ୟଟି ବିଧୌତ । ତେଣୁ କବି କହିଛନ୍ତି—

'ସାରଭାଗ କଲା ନୃପ-ଜେମାକୁ । ଅସାର ଭାଗ କଲା ଉପମାକୁ ।
ଏକଥା ନିଶ୍ଚେ ଆସିଲା ମନକୁ । କହି ଭଜିଲେ କବି ମଉନକୁ ।
(କୋ : ବ୍ର : ସୁ : ୭।୨୬)

**ସର୍ବଭାରତୀୟ ରୀତି ପରମ୍ପରା:—**

ସଂସ୍କୃତ ଅଳଙ୍କାର ଶାସ୍ତ୍ରରେ ପ୍ରଥମେ ଦଣ୍ଡୀ ଓ ପରେ ବାମନଙ୍କ ଦ୍ୱାରା ପ୍ରବର୍ତ୍ତିତ ରୀତିବାଦର ଆଦର୍ଶର ଭିତ୍ତି ଉପରେ ଭାରତୀୟ ସାହିତ୍ୟ କ୍ଷେତ୍ରରେ ରୀତି-



Digitized by PPRACHIN, SOA

ଯୁଗର ସୁନ୍ଦର ପରମ୍ପରା ପ୍ରଦର୍ଶିତ ହୋଇଥିଲା । ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀ ବେଳକୁ ବିଭିନ୍ନ ଭାରତୀୟ କାବ୍ୟ ସାହିତ୍ୟରେ ଆଲଙ୍କାରିକତା ତଥା ରୀତିବାଦର ପ୍ରଭାବ ପରିଲକ୍ଷିତ ହୁଏ । ହିନ୍ଦୀ ସାହିତ୍ୟରେ ରୀତିବାଦର କବି ବିହାରୀଲାଲ, ମତିରାମ, ଭୂଷଣ, ଦେବଦତ୍ତ, କେଶବ ଦାସ ଓ ଘନାନନ୍ଦ ପ୍ରଭୃତି ପ୍ରଶସ୍ତି ପ୍ରଧାନ କାବ୍ୟ ରଚନା କରି ଅଳଙ୍କାର, ରସ ଓ ଭାଷାର ପ୍ରୟୋଗରେ ସଫଳତା ଅର୍ଜନ କରିଥିଲେ । ମାତ୍ର ଏହା ସ୍ୱୀକାର୍ଯ୍ୟ ଯେ ମୋଗଲ ଶାସନ କାଳରେ ହିନ୍ଦୀ ସାହିତ୍ୟର ବିଶେଷ ଉନ୍ନତି ହୋଇନଥିଲା ।

ହିନ୍ଦୀ ସାହିତ୍ୟର କବି କେଶବ ଦାସ ବ୍ରଜ ଭାଷାରେ ଅଳଙ୍କାର ଧର୍ମୀ କାବ୍ୟ ରଚନା କରିଥିଲେ । ନାୟିକାମାନଙ୍କର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗର ଆଲଙ୍କାରିକ ଚିତ୍ରଣ, ବାଲ୍ୟଠାରୁ ଯୌବନ ପର୍ଯ୍ୟନ୍ତ ବିଭିନ୍ନ ବୟସର ଅଙ୍ଗଶୋଭା ବର୍ଣ୍ଣନା ଏହି ଶ୍ରେଣୀର ହିନ୍ଦୀ କାବ୍ୟମାନଙ୍କର ଆଭିମୁଖ୍ୟ ଥିଲା । ରସ ଶାସ୍ତ୍ର ଅନୁସାରେ ନାୟକମାନଙ୍କର ଲକ୍ଷଣ ବର୍ଣ୍ଣନା ଥିଲା ଏହି କାବ୍ୟ ଗୁଡ଼ିକର ସାଧାରଣ ଉପଜୀବ୍ୟ । ହିନ୍ଦୀ ସାହିତ୍ୟରେ ସୁଜନ ପ୍ରଭୃତି କବିମାନେ ଚମତ୍କାର ଶବ୍ଦ ଗୁମ୍ଫରେ ସୁନ୍ଦର ପଦାବଳୀ ରଚନା କରିଛନ୍ତି । ଏହାବ୍ୟତୀତ ରସିକ, ଗୋବିନ୍ଦ, ବୈତାଳ, ଗୋବିନ୍ଦ ସିଂହ, ସୁବଳସିଂ ଚୌହାନ, ନାଗରୀ ଦାସ, ବୋଧା, ଦ୍ୱିଜଦେବ, ଗୁମାନ ମିଶ୍ର, ଜୋଧରାଜ ପ୍ରଭୃତି କବିଗଣ ରୀତି ସାହିତ୍ୟର ବିକାଶ ସାଧନ କରିଛନ୍ତି ।

ଓଡ଼ିଆ କାବ୍ୟ ପରମ୍ପରାର ଏହି ଧାରା ସହିତ ହିନ୍ଦୀ ସାହିତ୍ୟ ପରମ୍ପରାର ସାମ୍ୟ ଏହି ଦୃଷ୍ଟିରୁ ତୁଳନାତ୍ମକ ଭାବରେ ଅଧ୍ୟୟନ କରାଯାଇପାରେ । ଭଞ୍ଜଙ୍କ କାବ୍ୟନାୟିକା ଗୁଡ଼ିକର ଗତାନୁଗତିକତା ଆଲଙ୍କାରିକ ରୂପ ବର୍ଣ୍ଣନା ସେହି ସର୍ବ-ଭାରତୀୟ ପ୍ରବୃତ୍ତିର ପ୍ରତିଫଳନ-ଏହା ଉପଲବ୍ଧି କଲେ ଭଞ୍ଜପ୍ରତିଭାର ଯଥାର୍ଥ ମହତ୍ତ୍ୱ ଅବଧାରଣ କରିହେବ । କାରଣ କେବଳ ଓଡ଼ିଆ ସାହିତ୍ୟରେ ନୁହେଁ, ସମଗ୍ର ଭାରତୀୟ କାବ୍ୟ ସାହିତ୍ୟରେ ଭଞ୍ଜ ସର୍ବଶ୍ରେଷ୍ଠ ଆଲଙ୍କାରିକ କବି । ଅଳଙ୍କାର ଶାସ୍ତ୍ରୋକ୍ତ ସମସ୍ତ ଲକ୍ଷଣରେ ତାଙ୍କର କାବ୍ୟ ସୌଧ ବିମଣ୍ଡିତ । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କବି ସ୍ୱୀକାର କରିଛନ୍ତି— ଯେଉଁମାନେ କବି, ଅର୍ଥଜ୍ଞ ପଣ୍ଡିତ ଏବଂ ସହୃଦୟ ରସଜ୍ଞ କେବଳ ସେହିମାନେ ଏହାର କାବ୍ୟରସ ଗ୍ରହଣ କରିବାକୁ ସକ୍ଷମ ହେବେ ।

ଗୁଜରାଟୀ ସାହିତ୍ୟରେ ପ୍ରଣୟ ପ୍ରଧାନ କାଳ୍ପନିକ କାବ୍ୟ ରଚନା ଦୃଷ୍ଟିରୁ ଷୋଡ଼ଶ ଶତାବ୍ଦୀ ଥିଲା ଅତ୍ୟନ୍ତ ସମୃଦ୍ଧ । ବୈଷ୍ଣବମାନଙ୍କ ଗୃହଗୋଷ୍ଠି ମୁଖ୍ୟ

॥ ଅଗ୍ରେ ଲିଖ ॥

Digitized by PPRACHIN, SOA

ସମ୍ପ୍ରଦାୟ ମଧ୍ୟରୁ ବଲ୍ଲଭ ସମ୍ପ୍ରଦାୟର ଭକ୍ତିଭାବ ବା ଦାର୍ଶନିକ ସିଦ୍ଧାନ୍ତ ଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ଗୁଜରାଟୀ ସାହିତ୍ୟ ବିଶେଷ ପ୍ରଭାବିତ ହୋଇଥିଲା । ମରାଠୀ ସାହିତ୍ୟରେ ମୟୂର ପନ୍ତ ତାଙ୍କ ସାହିତ୍ୟରେ ଆଲଙ୍କାରିକ କାବ୍ୟଶୈଳୀ ପ୍ରବର୍ତ୍ତନ କରିଥିଲେ । ମାତ୍ର ଉତ୍କଳୀୟ ଆଲଙ୍କାରିକ ପରମ୍ପରାର ଐଶ୍ୱର୍ଯ୍ୟ ସହିତ ଉତ୍ତର ଭାରତର କୌଣସି ପ୍ରାଦେଶିକ ସାହିତ୍ୟ ତୁଳିତ ହେବାର ସ୍ପର୍ଦ୍ଧା କରିନପାରେ ।

ବଙ୍ଗ ସାହିତ୍ୟରେ ଚୈତନ୍ୟ ଯୁଗରୁ ମଙ୍ଗଳ କାବ୍ୟର ଧାରା ସହ ଚୈତନ୍ୟଙ୍କ ପ୍ରଭାବରେ ବୈଷ୍ଣବ ଚେତନା ସମ୍ବଳିତ କାବ୍ୟ ପରମ୍ପରା ପରିଲକ୍ଷିତ ହୁଏ । ବଙ୍ଗ ସାହିତ୍ୟରେ ଓଡ଼ିଆ ଓ ହିନ୍ଦୀପରି ରୀତିକାବ୍ୟମାନ ସମୃଦ୍ଧ ନୁହେଁ । ତଥାପି ମଙ୍ଗଳ ସାହିତ୍ୟ ମଧ୍ୟରେ ରୀତିଧାରାର ଆଭାସ ପରିଲକ୍ଷିତ ହୁଏ । ଚୈତନ୍ୟ ପରବର୍ତ୍ତୀ କାଳରେ କୃଷ୍ଣଲୀଳାତ୍ମକ ବହୁ ସଙ୍ଗୀତ ବଙ୍ଗଳାରେ ରଚିତ ହୋଇଥିଲା । କବି ଜ୍ଞାନଦାସ ଥିଲେ ରାଧାକୃଷ୍ଣ ପ୍ରେମଲୀଳାର ବିପୁଳ ଚିତ୍ରକର ।

ମଧ୍ୟ ଯୁଗର ଶେଷ ଓ ସୁବିଖ୍ୟାତ କବି ଭାବରେ ବଙ୍ଗଳାର ଭାରତ-ଚନ୍ଦ୍ରଙ୍କୁ ଗ୍ରହଣ କରାଯାଏ । ସେ ଥିଲେ ଉତ୍କଳର କବି ଉପେନ୍ଦ୍ର ଭଞ୍ଜଙ୍କ ସମ-କାଳୀନ । ଜଣାଯାଏ, ଭାରତଚନ୍ଦ୍ର ପୁରୀ ଆଗମନ କରି ସେଠାରେ ଅବସ୍ଥାନ କରିଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ସହ ତାଙ୍କର ସଂଯୋଗ ଫଳରେ ସମ୍ଭବତଃ ଓଡ଼ିଆ 'ରସ ପଞ୍ଚକ' ସଦୃଶ ସେ 'ରସମଞ୍ଜରୀ' ନାମକ ଏକ ରସ ଅଳଙ୍କାର ସଂପର୍କୀୟ ଗ୍ରନ୍ଥ ରଚନା କରିଛନ୍ତି । ବଙ୍ଗ ସାହିତ୍ୟରେ ନାନାବିଧ ଛନ୍ଦର ପ୍ରଚଳନ କରିବାରେ ଭାରତ ଚନ୍ଦ୍ରଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । କେବଳ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାହିଁକି, ଉପେନ୍ଦ୍ରଙ୍କର କୌଣସି କାବ୍ୟଭଳି ଆଲଙ୍କାରିକ କୃତି ମଧ୍ୟ ତତ୍କାଳୀନ ବଙ୍ଗ ସାହିତ୍ୟ ଭଣ୍ଡାରରେ ସମ୍ପୂର୍ଣ୍ଣ ଅନୁପଲବ୍ଧ ।

ଦାକ୍ଷିଣାତ୍ୟର ତେଲୁଗୁ ସାହିତ୍ୟରେ ପ୍ରବନ୍ଧ ଯୁଗ ବା ମଧ୍ୟଯୁଗ ସ୍ୱର୍ଣ୍ଣଯୁଗ ଭାବରେ ଅଭିହିତ । ଷୋଡ଼ଶ ଶତାବ୍ଦୀ ପ୍ରାରମ୍ଭରୁ ପ୍ରବନ୍ଧ ରଚନା ସ୍ୱତନ୍ତ୍ର ମହାକାବ୍ୟ ପ୍ରଣୟନର ପରମ୍ପରା ଆରମ୍ଭ ହୋଇଥିଲା । ତେଣୁ କେବଳ ତେଲୁଗୁ ସାହିତ୍ୟ ପରମ୍ପରା ସହିତ ଭଞ୍ଜ ସ୍ୱୀୟ ସାହିତ୍ୟ ସାଧନାର ତୁଳନା ଚଳିପାରେ । ଏ ଯୁଗର ସର୍ବଶ୍ରେଷ୍ଠ କାବ୍ୟକାର ହେଲେ ଆଲସନି ପେଦାନା । ଓଡ଼ିଆ ସାହିତ୍ୟର ଉପେନ୍ଦ୍ରଙ୍କ ପରି ତାଙ୍କୁ ତେଲୁଗୁ ସାହିତ୍ୟର କବି ସମ୍ରାଟ ବୋଲି କୁହାଯାଏ । ଶ୍ରୀନାଥ ସଂସ୍କୃତ ମହାକବି ଶ୍ରୀହର୍ଷଙ୍କ ନୈଷଧକୁ ତେଲୁଗୁ ସାହିତ୍ୟରେ ଭାଷାନ୍ତର କରି ଯେଉଁ ନୂତନ ଶୈଳୀର ପ୍ରବର୍ତ୍ତନ କରିଥିଲେ, ତାହା ପେଦାନଙ୍କ ସାଧନାରେ ସମୃଦ୍ଧିର ଚୂଡ଼ା ସ୍ପର୍ଶ କରିଥିଲା । ସମଗ୍ର ଭାରତୀୟ ସାହିତ୍ୟରେ ଉପେନ୍ଦ୍ରଙ୍କ



Digitized by PPRACHIN, SOA

ସାହିତ୍ୟର ସମକକ୍ଷ ତୁଳନା କେବଳ ତାଙ୍କ ସହିତ କରାଯାଇପାରେ । ତେଲୁଗୁ ସାହିତ୍ୟର ଅନ୍ୟତମ କବି କୃଷ୍ଣଦେବ ରାୟଙ୍କ ରଚନା ପାଣ୍ଡିତ୍ୟ ପୂର୍ଣ୍ଣ ଓ ଦୁର୍ବୋଧ । ତାଙ୍କ 'ବିଷ୍ଣୁଚରିତମ୍' ସହିତ ଓଡ଼ିଆ କାବ୍ୟ ଗୁଡିକ ତୁଳନାତ୍ମକ ଅଧ୍ୟୟନ କରାଯାଇ ପାରେ ।

## ନୈଷଧୀୟ ଅଭୀପ୍ସା :—

ନୈଷଧ ସଂସ୍କୃତ ଭାଷାର କାବ୍ୟ କୋଣାର୍କ ଭାବରେ ସୁବିଦିତ । ସେହିପରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ହେଉଛି ଓଡିଶାର ନୈଷଧ । ସଂସ୍କୃତ ସାହିତ୍ୟ ସହ ସମକକ୍ଷ ହେବାର ମର୍ଯ୍ୟାଦାକରି ଆମର ସାହିତ୍ୟ ଓ ଭାଷାକୁ ଏହା ଆଭିଜାତ୍ୟର ଐଶ୍ୱର୍ଯ୍ୟରେ ବିମଣ୍ଡିତ କରିଛି । ତାଙ୍କର ଶୈଳୀ ଅନୁସରଣ କରି ଉପେନ୍ଦ୍ର ଭଞ୍ଜ ଓଡିଆ ସାହିତ୍ୟରେ ଚରମ ଉର୍ଦ୍ଧ୍ୱମା ସ୍ପର୍ଶ କରିଛନ୍ତି । ତେଣୁ ସେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ କହିଛନ୍ତି— 'କହେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବିପୁଞ୍ଜ ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚାର ।' କବି ନୈଷଧକାରଙ୍କୁ ନିଜର ଆଦର୍ଶ ଭାବରେ ଗ୍ରହଣ କରିଥିବା କଥା । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ସାକ୍ଷ୍ୟରୁ ପ୍ରମାଣିତ ହୁଏ—

'ଯେନ ନୈଷଧ ପରାୟେ ।
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।'
(କୋ.ବ୍ର.ସୁ ୧୦।୮୧)

ସଂସ୍କୃତ କାବ୍ୟ ସହିତ ସମକକ୍ଷ କରିବାର ଅଦ୍ୟମ ଅଭୀପ୍ସା 'ନୈଷଧୀୟ ଚରିତମ୍'ର ଅନୁରୂପ ଆଳଙ୍କାରିକ କାବ୍ୟରଚନାର ସ୍ୱପ୍ନ ଉପେନ୍ଦ୍ରଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ରଚନାରେ ହିଁ ସିଦ୍ଧିଲାଭ କରିଛି ।

ଅଳଙ୍କାର ଶାସ୍ତ୍ରର ସ୍ୱର୍ଣ୍ଣ ଶୃଙ୍ଖଳରେ କାବ୍ୟ ସୁନ୍ଦରୀଙ୍କୁ ସୁମଣ୍ଡିତ କରିବାକେ ଶ୍ରୀହର୍ଷ ହିଁ ଥିଲେ ଶ୍ରେଷ୍ଠ ବିଧାଣୀ । ବିଚିତ୍ର କଳ୍ପଲୋକର ଇନ୍ଦ୍ରଧନୁରେ, ପାଣ୍ଡିତ୍ୟର ବର୍ଣ୍ଣ ବିଭାରେ ତାଙ୍କର କାବ୍ୟାଲୋକ ଯେପରି ଅନୁରଞ୍ଜିତ ହୋଇଥିଲା, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଉପେନ୍ଦ୍ର ଭଞ୍ଜ ସେହି ସ୍ୱପ୍ନକୁ ପ୍ରତ୍ୟକ୍ଷ କରିଛନ୍ତି । ଆଳଙ୍କାରିକ ସଂସ୍କୃତ କାବ୍ୟଯୁଗରେ ନୈଷଧ ହିଁ ଥିଲା ସର୍ବଶ୍ରେଷ୍ଠ କୃତି । ଏହି ଶ୍ରୀହର୍ଷ ହିଁ ହେଉଛନ୍ତି ଓଡିଆ ସାହିତ୍ୟରେ ରୀତି ପରମ୍ପରାର ଉତ୍ତମ କବିର ଆଦର୍ଶ ଓ କାବ୍ୟଗୁରୁ । ସେଥିପାଇଁ ରୀତିଯୁଗର ଶ୍ରେଷ୍ଠ ଶବ୍ଦ ସମ୍ରାଟ ଉପେନ୍ଦ୍ର ଭଞ୍ଜ ହିଁ ଏହି ନୈଷଧର ଜୟଗାନ କରିଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କବିଙ୍କ ମୌଳିକ କଳ୍ପନା ପ୍ରସୂତ ଶୃଙ୍ଗାର ରସାଶ୍ରୟୀ କାବ୍ୟ । କଥାବସ୍ତୁ ଦୃଷ୍ଟିରୁ ନୈଷଧଠାରୁ ଭିନ୍ନ ହେଲେହେଁ



Digitized by PPRACHIN, SOA

ପାଣ୍ଡିତ୍ୟ ଓ ଶୃଙ୍ଗାର ରସବୋଧରେ ଏହା ଶ୍ରୀହର୍ଷଙ୍କ ଦୁର୍ଲଭ ମାର୍ଗରେ ପଦସଞ୍ଚାର କରିଛି । ଶ୍ରୀହର୍ଷଙ୍କପରି ଉପେନ୍ଦ୍ର ଭଞ୍ଜଙ୍କ ଶୃଙ୍ଗାର କଳାର ବର୍ଣ୍ଣନା ପୁଣି ବାତ୍ସାୟନଙ୍କ କାମଶାସ୍ତ୍ର ଉପରେ ଆଧାରିତ ।

ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ ଶ୍ରୀହର୍ଷ ଓଡ଼ିଶାରେ ଜନ୍ମଗ୍ରହଣ କରି ଉତ୍କଳର ଆଳଙ୍କାରିକ ପରମ୍ପରା ଓ ସଂସ୍କୃତର ଚରମ ନିଦର୍ଶନ ପ୍ରତିଷ୍ଠା କରିଯାଇଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କର ସେହି ପରମ୍ପରାର ଉତ୍ତରାଧିକାର ଓ ଓଡ଼ିଆ ସାହିତ୍ୟରେ ତାର ରୂପାନ୍ତର କାବ୍ୟ ଯୁଗର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଉତ୍କଳରେ 'ନୈଷଧ ଚରିତମ୍'ର ସମଧିକ ସମାଦର ଯୋଗୁଁ କବି ଉପେନ୍ଦ୍ରଭଞ୍ଜ ଏହାକୁ ହିଁ କାବ୍ୟାଦର୍ଶଭାବରେ ଗ୍ରହଣ କରିଥିଲେ । କାରଣ ଉତ୍କଳରେ ନୈଷଧ କାବ୍ୟର ବହୁ ପାଣ୍ଡିତ୍ୟପୂର୍ଣ୍ଣ ଟୀକା ପରିଲକ୍ଷିତ ହୁଏ । ଏହାଦ୍ୱାରା କାବ୍ୟଟିର ଜନପ୍ରିୟତାର ପ୍ରମାଣ ମିଳେ । ନୈଷଧକାରଙ୍କ ସମକାଳୀନ 'ଆର୍ଯ୍ୟ ସପ୍ତଶତୀ' ଗ୍ରନ୍ଥର ପ୍ରଣେତା ଗୋବର୍ଦ୍ଧନାଚାର୍ଯ୍ୟଙ୍କ ଭ୍ରାତା ଉଦୟନାଚାର୍ଯ୍ୟ ନୈଷଧ ଉପରେ ରଚନା କରିଥିଲେ ଯେଉଁ ପ୍ରସିଦ୍ଧ ଟୀକା, ତାହା ସର୍ବଭାରତୀୟ ସ୍ତରରେ ପ୍ରଥମ ଓ ପ୍ରକୃଷ୍ଟ ବ୍ୟାଖ୍ୟା । ନୈଷଧ ଭିତ୍ତିରେ ସହୃଦୟାନନ୍ଦ ଭଳି ଅନେକ କାବ୍ୟ ରଚନା ଓଡ଼ିଶାରେ ପରିଦୃଷ୍ଟ ହୋଇଥିଲା । ତେଣୁ ଉପେନ୍ଦ୍ର ଭଞ୍ଜଙ୍କ ପ୍ରାଣରେ ସଂସ୍କୃତ ସାହିତ୍ୟର ସମତୁଲ୍ୟ ରଚନା ପାଇଁ ଅଭୀପ୍ସା ଜାଗ୍ରତ ହେବା ସ୍ୱାଭାବିକ । ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟ ସେହି ସ୍ୱପ୍ନର ସଫଳ ଅଭିବ୍ୟକ୍ତି ।

## ରୂପସୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ :—

ଦାନୀ ଓ ସୁଶାସକ ଚମ୍ପାନଗରୀର ରାଜା ବିଶ୍ୱାନନ୍ଦକ ମନ୍ତ୍ରୀ ବୁଦ୍ଧି-ସାଗରଙ୍କ ପରାମର୍ଶରେ ବଦ୍ରିକା ନାରାୟଣ ତୀର୍ଥ ଦର୍ଶନ ମାନସରେ ଯାତ୍ରାକଲେ । ଏଠାରେ ସ୍ମରଣଯୋଗ୍ୟ ଯେ ସମ୍ଭବତଃ ରାଜା ଧନଞ୍ଜୟ ଭଞ୍ଜଙ୍କ ସହିତ ଉପେନ୍ଦ୍ରଭଞ୍ଜ ଭାରତର କୃଷ୍ଣଧାମ ବୁଲି ଦେଖିଥିଲେ । ହିମାଳୟରେ ଥିବା ଉତ୍ତର ଧାମ ବଦ୍ରି-ନାଥର ବର୍ଣ୍ଣନାରେ କବିଙ୍କର ସ୍ୱ ଅନୁଭୂତ ପ୍ରତିଫଳିତ ହୋଇଛି ଏଥିରେ ଶ୍ରୀନଗର ଓ ହିମାଳୟର ବର୍ଣ୍ଣନା ପରିସ୍ଫୁଟ ହୋଇଛି ।
କବି ଲେଖିଛନ୍ତି—

'ଶ୍ରୀନଗରୁ ଆଦ୍ୟବର୍ଣ୍ଣ ଲୁଟିଲେ । ଘୋଷବାସୀ ପ୍ରାୟେ ଆସି ଭେଟିଲେ ।
ଆଗ ହୋଇଲେ ସେ ମାର୍ଗ ଦେଖାଇ । ପାପହା ଗଙ୍ଗାକୂଳେ ହେଲେ ଯାଇ ।'

ସସୈନ୍ୟ ଓ ଆଡ଼ମ୍ବର ପୂର୍ଣ୍ଣ ଏହି ତୀର୍ଥ ଯାତ୍ରା କାଳରେ ରାଜା ଦେଖିଲେ ଗୋଟିଏ ଅସୁର ଅତି ସୁନ୍ଦର ହଂସୀଟିଏ ଧରି ଦୌଡ଼ିବାରେ ଲାଗିଛି । ଅସୁରକୁ



Digitized by PPRACHIN, SOA

ବିଧିକରି ହଂସୀକୁ ପରିଚୟ ମାଗିବାରୁ ସେ ବ୍ରହ୍ମାଙ୍କର ବାହନ ବୋଲି କହିଲା । ଏହି ଚନ୍ଦ୍ରିକା ତୀର୍ଥରେ ବ୍ରହ୍ମା ରାଜାଙ୍କ ଉପରେ ସନ୍ତୁଷ୍ଟ ହୋଇ ବରଦେଲେ ଯେ ସେ ରତିମର୍ଦ୍ଦୀ ଅପ୍ସରାକୁ ଭୋଗକରି ଏକ ଅନନ୍ୟ ସୁନ୍ଦରୀ କନ୍ୟା ଲାଭ କରିବେ । ସ୍ରଷ୍ଟାଙ୍କର ଏହି ବର ଲାଭ ଫଳରେ ଅପସରା ସଂଭୋଗରୁ ଯେଉଁ କନ୍ୟା ପ୍ରାପ୍ତ ହେଲେ ତାହାର ନାମ ହେଲା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । କବିଙ୍କ ସ୍ୱପ୍ନ ମାନସୀ ଏହି କନ୍ୟାର ଜନ୍ମ ବୃତ୍ତାନ୍ତରେ କବି କାଳିଦାସଙ୍କ ଶକୁନ୍ତଳା ଭଳି ସ୍ୱର୍ଗ ଓ ମର୍ତ୍ତ୍ୟର ସଂଯୋଗରେ ଏକ ବିଶ୍ୱରୂପସୀ କୋଟି ବ୍ରହ୍ମାଣ୍ଡର ସାର ସୁନ୍ଦରୀ ଜାତ ହେବାର ପରିକଳ୍ପନା କରିଛନ୍ତି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଆଭ୍ୟୁଦୟରେ କବି ଲେଖିଛନ୍ତି— 'ନଥିଲା ନାହିଁ ନୋହିବ ଏ ବାଣୀ । କୁମ୍ଭାଣ୍ଡଠାରେ ସରବ୍ବଦ ପୁଣି । ବୋଲିବ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । ପ୍ରେମ ଅଙ୍କୁରରୁ ପ୍ରେମ ମଞ୍ଜରୀ ।' (କୋ: ବ୍ର. ସୁ.- ୨/୯୮-୪୯) । ନିମଣ୍ଟ ରୂପବନ୍ତୀ ଏହି କନ୍ୟାଟି ଯୌବନର ଐଶ୍ୱର୍ଯ୍ୟରେ ଶ୍ରୀମଣ୍ଡିତ ହେଲା । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ବର୍ଣ୍ଣନାରେ କବି ମହାଭାରତ ଓ ରାମାୟଣର ଆରୋପ କରିଛନ୍ତି— ପୌରାଣିକ ବିଦଗ୍ଧତାର ଆଶ୍ରୟ ଗ୍ରହଣ କରିଛନ୍ତି । ଏଥିରେ ଗୋଟିଏ ପକ୍ଷରେ ନାୟିକାର ଅଙ୍ଗ ସମୂହ ଓ ଅନ୍ୟ ପକ୍ଷରେ ରାମାୟଣ ଓ ମହାଭାରତରେ ବ୍ୟକ୍ତିତ୍ୱ ସମୂହର ବର୍ଣ୍ଣନା ଶ୍ଳେଷାଦି ଅଳଙ୍କାର ସହାୟତାରେ ଆରୋପ କରି ଅପୂର୍ବ ପ୍ରତିଭାର ନିଦର୍ଶନ ଦେଇଛନ୍ତି । କବି କହିଛନ୍ତି— 'କଲି କି ସୃଷ୍ଟି କିଛୁ ନହିଁଲା ହରି-ଲୀଳା ଏ ରୂପେ ନିବାଉଲା ।' (କୋ. ବ୍ର· ସୁସ୍ଥା:— ୩/୧୫) ପୁନଶ୍ଚ କୌଶିକ ତଟ ବନବିହାର ବର୍ଣ୍ଣନା ଛଳରେ ଗୋପଲୀଳା ଅନ୍ତର୍ଗତ ବନବିହାରର ସଂକେତ ଦେଇଛନ୍ତି ।

ଶଚୀ ଓ ଶାରଦାଙ୍କ ଅଂଶଯାତ ତଥା ବ୍ରହ୍ମାବାହନ ହଂସୀ ଜାତ ଶଚୀକଳା, ବାଣୀକା ଓ ଶାରଦା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ସହଚରୀ ଭାବରେ କୌଶିକ ତଟ ଉପବନରେ ପ୍ରମୋଦମଗ୍ନ ହୋଇ ରହିଲେ । ପୁଷ୍ପପୁର ରାଜକୁମାର ପୁଷ୍ପକେତୁ ନାରଦମୁନିଙ୍କ ସଙ୍ଗୀତ କଳାରେ ତୃପ୍ତକରି ଏକ ଅଦ୍‌ଭୁତ ପୁରୁଷର ସାହଚର୍ଯ୍ୟ ଲାଭ କରିଥିଲେ । ରାଜନେମା ଓ ରାଜକୁମାରଙ୍କ ମିଳନରେ ସହାୟକ ହୋଇଥିଲେ ମାଙ୍ଗଳା ଓ ଅଦ୍‌ଭୁତ ପୁରୁଷ । ବିସ୍ମାଜନକ କସ୍ତୁରୀ ମୃଗ ଛେଦନ ପଣ କରିଥିବାରୁ ଭିନ୍ନ ଦେଶର ରାଜାମାନେ ତଥା ପୁଷ୍ପକେତୁ ଚମ୍ପାନଗରୀକୁ ଆଗମନ କରିଥିଲେ । ପୁଷ୍ପକେତୁ ମାଳ୍ୟାଣୀ ଓ ବିଦ୍ୟାନିଧିଙ୍କ ସହାୟତାରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ସହ ପତ୍ର ବିନିମୟ କରି ସଂଯୋଗ ସ୍ଥାପନ କରିଥିଲେ । ପରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କୁ ବିବାହ କରିଥିଲେ । ମିଳନର ଶଙ୍ଖଧ୍ୱନିରେ କାବ୍ୟଟି ଶେଷ



Digitized by PPRACHIN, SOA

ହୋଇଛି । ବିଷୟବସ୍ତୁର ବୈଚିତ୍ର ନଥିଲେ ମଧ୍ୟ ଶବ୍ଦ ସମ୍ରାଟ ଉପେନ୍ଦ୍ର ଭଞ୍ଜ ଶ୍ରେଷ୍ଠ କାବ୍ୟ ସିଦ୍ଧିର ପରିଚୟ ଦେଇଯାଇଛନ୍ତି । କାବ୍ୟ ଦୃଷ୍ଟିରୁ ଏହା ସହଜ ପାଠ୍ୟ ହୋଇନାହିଁ, ନୈଷଧ କାବ୍ୟ ଭଳି ଏହା କ୍ଲିଷ୍ଟ ଓ ଗୂଢ଼ାର୍ଥପୂର୍ଣ୍ଣ ହୋଇଛି ।

**ଶବ୍ଦ ସାଗର ପାର :—**

'ତରଣି କୁଳର ସାର । ଅଛ୍ରିସୁରୁ ନିରନ୍ତର ।
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସମୁଦ୍ର ପାର ।'

(କୋ: ବ୍ର: ସୁ - ୧୪/୬୮)

କେବଳ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ନୁହେଁ, ଉପେନ୍ଦ୍ର ଭଞ୍ଜ ବହୁ କାବ୍ୟରେ ତାଙ୍କର ଶବ୍ଦ ସିଦ୍ଧିର ଅପୂର୍ବ ନିଦର୍ଶନ ଦେଇଯାଇଛନ୍ତି । ସମଗ୍ର ଭାରତୀୟ ସାହିତ୍ୟରେ ଏହି ସିଦ୍ଧିର ପଟାନ୍ତର ନାହିଁ । ତେଣୁ ଯଥାର୍ଥରେ ସେ ଶବ୍ଦ ସମ୍ରାଟ ଗୌରବର ଅଧିକାରୀ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଏହି କଳା କୌଶଳର ଚମତ୍କାରିତା ମଧ୍ୟ ଚରମ ସୀମା ସ୍ପର୍ଶ କରିଛି । କାବ୍ୟ ନାୟିକାକୁ କବି ଏକ ଲାବଣ୍ୟ ସାଗର ଭାବରେ ଦର୍ଶନ କରିଛନ୍ତି । ତେଣୁ ସାଗରରେ ମଗର ରହିବାପରି, ଗଣ୍ଡ ଦେଶରେ ମକର ଚିହ୍ନ ଆଙ୍କି ଦେଇଛନ୍ତି । ସମୁଦ୍ରରେ ଭଉଁରୀ ଓ ଲୁଣିଆ ବୋଲି ସୁନ୍ଦରୀର ହସ୍ତରେ ସୁନା କଙ୍କଣ ଖଞ୍ଜିଦେଇଛନ୍ତି । ସମୁଦ୍ର ପୟ ବା ଜଳରେ ରାଜହଂସର ଖେଳାପରି ସୁନ୍ଦରୀ ପୟରେ ବା ପାଦରେ ଶୀଘ୍ର ହଂସକ ବା ନୂପୁର ପିନ୍ଧାଇ ଦେଇଛନ୍ତି । କବି ଲେଖିଛନ୍ତି—

'ସୁମନା ମାନେ ମାନସେ ବିସ୍ମର । ଲବଣୀ-ସିନ୍ଧୁ ନିଶ୍ଚେ ଏ ନାଗରୀ
କରି ମକର ତୁରତେ ରଜିତ । ଭରମ କଟକେ କରେ ସଂଯୁତ ।
ପୁଣି ସେ ସତ୍ୱର । ପୟରେ ଖେଳା ଦେଇ ହଂସକର ।'

(କୋ: ବ୍ର: ସୁ - ୧୨/୧୮)

ଶବ୍ଦ ବିନ୍ୟାସରେ କେବଳ ନୁହେଁ, ରୂପକଳ୍ପରେ ମଧ୍ୟ କାବ୍ୟନାୟିକା ସର୍ବକାଳୀନ ମାନସ ସୁନ୍ଦରୀରେ ପରିଣତ ହୋଇଛି ।

କବି କଳ୍ପନାରେ ରାଜଜେମା ସତେ ଯେପରି ସୁନାର ପୁତ୍ତଳୀଙ୍କ ପ୍ରତିମାଟିଏ । ସୁଭଦ୍ରିକା ସଖୀଗଣ ତାଙ୍କୁ ସୁନ୍ଦର ଆସନରେ ବସାଇ ହଳଦୀ ଲଗାଇ ଦେଲେ ଯେ ହଳଦୀଗୁଣ୍ଡା ସୁନାଗୁଣ୍ଡ ପରି ଝଡ଼ିପଡ଼ିଲା—

॥ ଚୌପଦୀ ॥

Digitized by PPRACHIN, SOA

ସୁଭଦ୍ରଜା ବଳୀ ଭଳି ଏ ବାଳା । ବିଶୁଦ୍ଧ ହେମ ପୂରଟ ପିଉଳା ।
ଦିବ୍ୟପୀଠ ତୁଳ ପାଟେ ବସାଇ । ହରିଦ୍ରା ଲେପଦେଇ ଉକୁଟାଇ ।
ପତନ ସେ ରେଣୁ । କର-କରତେ ଘରଷଣ ଯେଣୁ ।

(କୋ ·ବ୍ର: ସୁ.- ୧୨/୬)

ନାୟିକାର କେଶ ବିନ୍ୟାସରେ ସ୍ଥାନେ ସ୍ଥାନେ କବି ନୈଷଧକୁ ବଳି-ଯାଉଥିବା ଭଳି ମନେହୁଏ । ଏହି କେଶ ନୀଳ 'ଚିକ୍କଣ କୁଟିଳ କୋମଳ । ପ୍ରଲମ୍ବ ଗହଳ ସୁଗନ୍ଧସ୍ଥଳ । କାଳନ୍ଦୀ ଧାରାପରି ବେଣୀରେ ଦାସ କେରେଣ୍ଡା ଫୁଲର ଗୁଚ୍ଛାଟି ଗଣ୍ଠି ରୂପକ କରି ଫୁଟିଛି । କେଶ ଆଗରେ ସ୍ୱର୍ଣ୍ଣ ଦେଖି ମନେ ହେଉଛି ଯେପରି ବଣା ହୋଇ ହଂସ କାଳନ୍ଦୀରେ ଭସି ଯାଉଛି—

'ବଳି ଭଳି ବେଣୀ ହେଲି ଏ ଦୃଷ୍ଟି । କରୁଣ୍ଟକ ଗଣ୍ଠି କହ୍ଲାର ଫୁଟି ।
ରାଜହଂସ ପନ୍ତି ମୋତି-ସୀମନ୍ତ । ସ୍ୱର୍ଣ୍ଣ-ପିହାଣିଆ ଅଗ୍ରରେ ତଥି ।
ବଣା ଏକ ହଂସୀ । କାଳନ୍ଦୀ ସ୍ରୋତେ ଯାଉଅଛି ଭସି ।'

(କୋ. ବ୍ର· ସୁ.- ୧୨।୧୦)

ଏହିସବୁ ଉପମାରୁ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ ନୈପୁଣ୍ୟ ସହ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ଲାବଣ୍ୟ ଯେପରି ବର୍ଣ୍ଣନା କରିଛନ୍ତି ତାହାର ତୁଳନା ମିଳେନାହିଁ ।

ରାଜକୁମାରୀ ଜଣକୁ ବଣକୁ ପଠାଇଥିଲି ରାଜକୁମାର ସଂପର୍କରେ ତଥ୍ୟ ତଥ୍ୟ ସଂଗ୍ରହ କରିବାକୁ ସେହିପରି ରାଜକୁମାର ମଧ୍ୟ ରାଜକୁମାରୀର ବୃତ୍ତାନ୍ତ ଜାଣିବା ପାଇଁ ଜଣକୁ ବଣକୁ ପଠାଇଥିଲି । ଅଦ୍‌ଭୁତ ପୁରୁଷ ଓ ମାଙ୍ଗଳୀ ଦୁହେଁ ଶୁଆଶାରୀ ରୂପ ଧାରଣକରି ଚମ୍ପାପୁର ମଧ୍ୟରେ ଲବଙ୍ଗଲତାରେ ବସି ଭେଟ ହୋଇ ଗୀତ ଗାଇଲେ । କଳହଂସ କେଦାର ଓ ଭୂପାଳ ଦୁଇଟି ଭିନ୍ନରାଗ । ଦୁହେଁ ଅକ୍ଷର ଗଣନାରେ ସମାନ । — କଳହଂସ କେଦାର ରାଗରେ ୨ୟ ଓ ୪ର୍ଥ ପାଦ ଶେଷରେ । ଯେ' ଯୁକ୍ତ ହୁଏ— ଏତକ ମାତ୍ର ଅଧିକ । ବଂଶ ଛାନ୍ଦରେ ରାଜକୁମାର ପୁଷ୍ପକେତୁ ତରଫରୁ ଶୁକ କଳହଂସ କେଦାର ରାଗରେ ରାଜକୁମାରର ଗୁଣ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନାକରି ଗୀତ ଗାଇଲି । ସେହି ଛାନ୍ଦକୁ ରାଜକନ୍ୟା ପକ୍ଷରୁ ଶାରୀ ଭୂପାଳ ରାଗରେ ଗାଇବାରୁ ରାଜକୁମାରୀର ଗୁଣ ଓ ସୌନ୍ଦର୍ଯ୍ୟ ଉଦ୍‌ଭାସିତ ହୋଇ-ଉଠିଲି । ଏପରି ଶବ୍ଦ ସିଦ୍ଧି ସମଗ୍ର ବିଶ୍ୱରେ କୁତ୍ରାପି ଦେଖାଯାଏ ନାହିଁ । ଉପେନ୍ଦ୍ର-ଭଞ୍ଜ କବିସମ୍ରାଟ, ଶବ୍ଦ ସମ୍ରାଟ ଓ ସଙ୍ଗୀତ ସମ୍ରାଟ ହେବାର ପ୍ରାମାଣିକତା ଏହି ଛାନ୍ଦରେ ସନ୍ନିବେଶିତ କରିଯାଇଛନ୍ତି ।

॥ ପଞ୍ଚମ ଉଲ୍ଲାସ ॥

Digitized by PPRACHIN, SOA

ନୈଷଧୀୟ ଉତ୍କଳ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଉତ୍କାରେ ମହାସିନ୍ଧା, ପ୍ରାଚୀନାଗରୀ, ଏହାର ମୁକୁଳିତ ପଦ୍ମ ଓ ବର୍ଣ୍ଣିତୋସରୁ ନିଷ୍କୃତ ଯାଇଥିବା ଭ୍ରମର କଥା ଉପେନ୍ଦ୍ର କହିଛନ୍ତି । ଏଠାରେ ଉପେନ୍ଦ୍ରଭଞ୍ଜଙ୍କ କବିତ୍ୱ, ରସିକତା, ସୌନ୍ଦର୍ଯ୍ୟବୋଧ ଓ ପ୍ରକୃତ ପ୍ରାଣତା ଫୁଟିଉଠିଛି—

ହେଲା ନଶିବାଣ ଗଲା ଦଶୀ ଦଣ କ ପ୍ରାଚୀ ନାଗରୀବର
ନୀଳଶାଢ଼ୀ ଶୁଭ୍ର ଅରୁଣ ସଂଗରେ ପିନ୍ଧିଲା ଲୋହିତାମ୍ବର ।
କ ଫୁଲି, କଞ୍ଜୁ ଉଡଯିବା ଇଚ୍ଛୁ ଅଳି
ସେହି ପଦ୍ମିନୀ ସୁରସଙ୍ଗୀଲି— କାନ୍ତ ଉପରକୁ ଦେଲା ଢାଳି ।

ରାତ୍ର ପାହିବାରୁ ଦଶମାନେ ଦିଶିଲେ । ପ୍ରାଚୀ ନାଗରୀବର ନୀଳଶାଢ଼ୀ ଶୁଭ୍ର ଅରୁଣ ସଙ୍ଗରେ ଲୋହିତାମ୍ବର ପିନ୍ଧିବାରୁ ବଡ଼ ସୁନ୍ଦର ଦେଖାଗଲା । ଅଳି ପଦ୍ମରୁ ଉଡ଼ିଯିବାକୁ ଇଚ୍ଛା କରନ୍ତେ ମନେହେଲା ସେହି ରସିକା ପଦ୍ମିନୀ ପ୍ରେମିକ ସୂର୍ଯ୍ୟଙ୍କୁ ପ୍ରତି ଭ୍ରମର ରୂପକ ତୋଳା ଢାଳି ଦେଇ ରହିଛି ।

ସେହିପରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ୨୫ ଛାନ୍ଦରେ ଏକାଧାରରେ କବି ବର୍ଷା, ଶୀତ ଓ ଗ୍ରୀଷ୍ମ ଏହି ତିନୋଟି ଋତୁର ବର୍ଣ୍ଣନା କରିଛନ୍ତି । ଏହା ତାଙ୍କ ଶବ୍ଦ ସାଧନାର ଏକ ଶ୍ରେଷ୍ଠ ସିଦ୍ଧିର ପରିଚୟ । ଉକ୍ତ ଛାନ୍ଦର ସଂପୂର୍ଣ୍ଣ ଚରଣ ପଦ ପର୍ଯ୍ୟନ୍ତ ଚନ୍ଦ୍ରିକାଦେଶାକ୍ଷ ବୃତ୍ତିରେ ବର୍ଷା ଋତୁର ରୂପ ବର୍ଣ୍ଣିତ ହୋଇଅଛି । କିନ୍ତୁ ପ୍ରତ୍ୟେକ ପାଦର ଆଦ୍ୟ ଅକ୍ଷର ଲୋପ କଲେ, ଏହା କାମିକାମୋଦୀ ବୃତ୍ତିରେ ପରିଣତ ହୋଇଯାଏ ଓ ଏଥିରେ ଶୀତ ଋତୁର ବର୍ଣ୍ଣନା ପରିଲକ୍ଷିତ ହୁଏ । ପୁନଶ୍ଚ ପ୍ରତ୍ୟେକ ପାଦରେ ଆଦ୍ୟ ଦୁଇଟି ଅକ୍ଷର ପରିତ୍ୟାଗ କଲେ ଏହା ମାଳବଗୌଡ଼ ବୃତ୍ତରେ ପରିଣତ ହୋଇଯାଏ ଏବଂ ଏଥିରେ ଗ୍ରୀଷ୍ମ ଋତୁର ବିଭବ ଲକ୍ଷିତ । ନୈଷଧ ଆଦର୍ଶର ପ୍ରତିଫଳନ ଏଥିରେ ଦେଖାଗଲେ ମଧ୍ୟ ଉପେନ୍ଦ୍ରଭଞ୍ଜ ହିଁ ଶବ୍ଦର ସମୁଦ୍ର ଅତିକ୍ରମ କରି ମହାକବିର ଆସନରେ ଚିରଦିନ ଲାଗି ସୁପ୍ରତିଷ୍ଠିତ ହୋଇଛନ୍ତି, ସନ୍ଦେହ ନାହିଁ ।

●

ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ
ଗଙ୍ଗାଧର ମେହେର ମହାବିଦ୍ୟାଳୟ ।
ସମ୍ବଲପୁର । ୭୬୮୦୦୪



Digitized by PPRACHIN, SOA

# ॥ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନନ୍ଦନତତ୍ତ୍ୱ ॥

ଡକ୍ଟର କୁଳମଣି ରାଉତ
ଏମ୍. ଏ., ପି ଏଚ୍. ଡି.

ପ୍ରାଚ୍ୟ ଚିନ୍ତାଧାରାରେ ନନ୍ଦନତତ୍ତ୍ୱ ହେଉଛି ରମ୍ୟ କଳାର ବିଜ୍ଞାନ ଓ ଦର୍ଶନ । ଇନ୍ଦ୍ରିୟ ଅନୁଭୂତ ପରମ ବସ୍ତୁକୁ ରମ୍ୟକଳା ଉପସ୍ଥାପନା କରିଥାଏ । ଦ୍ୱନ୍ଦ୍ୱବାଦୀ ମାନଙ୍କ ଦୃଷ୍ଟିକୋଣରୁ ନୁହେଁ, ସୌନ୍ଦର୍ଯ୍ୟ ସୃଷ୍ଟିରୁ ନନ୍ଦନତତ୍ତ୍ୱ ଏଇ ପରମ ସମ୍ପର୍କରେ ଧାରଣା ପ୍ରଦାନ କରିଥାଏ । ଯଦିଓ ହେଗେଲ୍ ସ୍ଥାପତ୍ୟ, ସଂଗୀତ, କବିତା, ଭାସ୍କର୍ଯ୍ୟ ଓ ଚିତ୍ରକଳାକୁ ରମ୍ୟକଳା ବୋଲି କହିଛନ୍ତି, ତଥାପି ଭାରତୀୟ ତତ୍ତ୍ୱବିଦ୍ ମାନେ ପ୍ରଥମ ତିନିଗୋଟିକୁ ରମ୍ୟକଳା ଭାବରେ ଗ୍ରହଣ କରିଛନ୍ତି, କାରଣ କବିତା, ସଂଗୀତ ଓ ସ୍ଥାପତ୍ୟ ପ୍ରାଧାନ୍ୟ ବହନକାରୀ କଳା, ଅଥଚ ଭାସ୍କର୍ଯ୍ୟ ଓ ଚିତ୍ରକଳା ଗୌଣକାରୀ ଓ ଅପ୍ରଧାନ କଳା । ଫଳରେ ଭାରତୀୟ ନନ୍ଦନତତ୍ତ୍ୱରେ କବିତା, ସଂଗୀତ ଓ ସ୍ଥାପତ୍ୟ ସମ୍ବନ୍ଧରେ ଅଧିକ ସୃଷ୍ଟି ହୋଇଛି ଏବଂ ସେ ସମ୍ବନ୍ଧରେ ନିରୀକ୍ଷା ଓ ସମୀକ୍ଷା ଚାଲିଛି । ରମ୍ୟକଳାର ଦର୍ଶନ ଭାବରେ ଏହା ଆଲୋଚ୍ୟ କଳାକାରଙ୍କର ଧ୍ୟାନ ଧାରଣା, ଚିନ୍ତା ଚେତନା ଓ ଅଧ୍ୟାତ୍ମବାଦୀ ଜୀବନାଦର୍ଶର ଉପସ୍ଥାପନ କରିଛି । ତାହା ହେଉଛି ରସ ବ୍ରହ୍ମବାଦ, ନାଦବ୍ରହ୍ମବାଦ ଓ ବାସ୍ତୁବ୍ରହ୍ମବାଦ । ସୌନ୍ଦର୍ଯ୍ୟ ବିଜ୍ଞାନ ଭାବରେ ଏହା ପ୍ରତ୍ୟେକଟିର ଗଠନ କୌଶଳ ଓ କଳା ପରିପାଟୀ ସମ୍ପର୍କରେ ଆଲୋଚନା ପ୍ରଦାନ କରିଛି ।

ସାହିତ୍ୟ-ସୃଷ୍ଟି ଏକ ଉଦ୍ଭାବନୀ ପ୍ରତିଭା, ଏଇ ପ୍ରତିଭାର ଏକ ମାଧ୍ୟମ । ଶୈଳୀ ଏକ ଆବିଷ୍କାର । ଏହାର ଉପସ୍ଥାପନ, ରୀତି ଏକ ସ୍ୱତନ୍ତ୍ର କୌଶଳ— ଚମତ୍କାର ବିସ୍ମୟ । ଚତୁଃଷଷ୍ଠୀ କଳା ମଧ୍ୟରେ କବିତା ସର୍ବୋତ୍ତମ । ଏହା ସର୍ବଶ୍ରେଷ୍ଠ ରୋମାଣ୍ଟିକ୍ କଳା । ମାନବ ଜୀବନର ଯାବତୀୟ ବିଭାଗକୁ କଳା ରୂପାୟିତ କରିବାକୁ ପ୍ରୟାସୀ ହୋଇଥାଏ । କବିତା କେବଳ ମାନବ ଜୀବନର ସକଳ ବିଭାଗ ନୁହେଁ; ଏହା ମାନବର ଯାବତୀୟ ଆଶା ଆକାଂକ୍ଷା, ଚିନ୍ତା ଚେତନା, ବିଶ୍ୱାସ ଓ କଳ୍ପନାକୁ ଭାଷା ମାଧ୍ୟମରେ ଉପସ୍ଥାପନ କରିଥାଏ । ଅନ୍ୟକଳା ସବୁ ନୟନ ବା କର୍ଣ୍ଣକୁ ଆପ୍ୟାୟିତ କରୁଥିବାବେଳେ, କବିତା ନୟନ, କର୍ଣ୍ଣ ଓ ମନ ମାଧ୍ୟମରେ



Digitized by PPRACHIN, SOA

ଅନ୍ୟାନ୍ୟ ଇନ୍ଦ୍ରିୟକୁ ଆକର୍ଷଣ କରିଥାଏ । ଏଣୁ ଭାରତରେ କଳାର ଦର୍ଶନ ଭାବରେ ନନ୍ଦନତତ୍ତ୍ୱକୁ ସଂଗୀତ ଓ ସ୍ଥାପତ୍ୟ ଦୃଷ୍ଟିରୁ ବିଚାର ଆଲୋଚନା କରାଯାଇ, ସମ୍ପୂର୍ଣ୍ଣ ଭାବରେ ଏହା କବିତା ଆଲୋଚନା ପାଇଁ ଉଦ୍ଦିଷ୍ଟ ହୋଇଛି । ଏହାକୁ ତିନୋଟି ଦିଗରୁ ବିଚାର କରାଯାଇପାରେ । ଯଥା— ଲେଖକ, ପାଠକ ଓ ଶ୍ରୋତା । ପ୍ରଥମ ଦୁଇଟିକୁ କାବ୍ୟ-ଉପସ୍ଥାପନର ମାଧ୍ୟମ ଭାବରେ ଏବଂ ତୃତୀୟଟିକୁ କାବ୍ୟ ଉପଭୋଗର ମନସ୍ତାତ୍ତ୍ୱିକ-ପ୍ରସ୍ତୁତ-ପ୍ରଣାଳୀ ଓ ସର୍ବୋପରି ଏହାର ମୁଖ୍ୟ ପ୍ରବୃତ୍ତିମାନଙ୍କର ବ୍ୟାଖ୍ୟା ବିଶ୍ଳେଷଣର ଉପାଦ୍ୟଭାବରେ ଗ୍ରହଣ କରାଯାଇଛି ।

ପାଠକ ଓ ଶ୍ରୋତାଙ୍କର ଇନ୍ଦ୍ରିୟଗୁଡ଼ିକ ବିଶେଷକରି ନୟନ, କର୍ଣ୍ଣ ଓ ମନ ସର୍ବଦା ସୌନ୍ଦର୍ଯ୍ୟ-ଗ୍ରାହ୍ୟ-ମାନବିକ-ଶକ୍ତି ଭାବରେ ଗୃହୀତ । ସହୃଦୟ ହିଁ ରସଭୋକ୍ତା । ସହୃଦୟତା ହିଁ ନନ୍ଦନତତ୍ତ୍ୱ ଅନୁଭବର ସର୍ବୋଚ୍ଚ ସୋପାନ । ସୌନ୍ଦର୍ଯ୍ୟାନୁଭୂତି ପାଇଁ ରସ ସର୍ବାଦୌ ଆବଶ୍ୟକ । ବୀରବର ଉପେନ୍ଦ୍ର କହିଛନ୍ତି :—

"ରସ ତରଙ୍ଗିଣୀ ଗ୍ରନ୍ଥ ସାହିତ୍ୟ ଦର୍ପଣ କବି ସମ୍ମତକୁ ଆଣିବି ।"

(ପ୍ରଥମ ଛାନ୍ଦ-ରସପଞ୍ଚକ)

ସଂସ୍କୃତ ରୀତିବାଦୀ ସାହିତ୍ୟ ଆଦର୍ଶରେ ସେ ଛନ୍ଦୋବଦ୍ଧ ପଦ, ସରସ ଧ୍ୱନି ଗର୍ଭିତ ଅଲଙ୍କାର ଓ ରସ ସୃଷ୍ଟି କରିବାକୁ ପ୍ରୟାସୀ । କାରଣ :—

"କବି କଳ୍ପଲତା ମତେ ଏ ଭାବେ । ସାହିତ୍ୟ ରତ୍ନାକର ମାଘ କାବ୍ୟେ ।"

[ ଚିତ୍ରକାବ୍ୟ ବନ୍ଧୋଦୟ ]

ଭୋଜରାଜଙ୍କ ମତରେ ସୌନ୍ଦର୍ଯ୍ୟାନୁଭୂତି ପାଇଁ ଶୃଙ୍ଗାର ଏକମାତ୍ର ନିମିତ୍ତ ବା ମାଧ୍ୟମ ନୁହେଁ, ବରଂ ଏହା ନାନ୍ଦନିକ ଅନୁଭୂତିର ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ସେ କହନ୍ତି ପୂର୍ବ ଜନ୍ମରୁ ସୁକୃତିରୁ ଏହାର ଅବଶେଷ ଆତ୍ମା ସହିତ ରହିଥାଏ । ଏହା ଏକ ବିଚିତ୍ର ପ୍ରକାରର ଅହଂକାର : ଏହାହିଁ ଶୃଙ୍ଗାର : ଏହାକୁ ମଧ୍ୟ ଅଭିମାନ କୁହାଯାଏ । ତେଣୁ ଏହା ରସ । ମାନବ ମାତ୍ରକେ ରସିକ ନୁହନ୍ତି । ଅଳ୍ପ କେତେକ ମନୁଷ୍ୟଙ୍କ ମଧ୍ୟରେ ସହୃଦୟତା ଆବଦ୍ଧ । ଏହି ତାତ୍ତ୍ୱିକ ଦୃଷ୍ଟି-କୋଣରୁ, 'ଶୃଙ୍ଗାର ପ୍ରକାଶରେ' ଭୋଜରାଜ ଶୃଙ୍ଗାରକୁ ଏକମାତ୍ର ରସ ଭାବରେ ଗ୍ରହଣ କରିଛନ୍ତି । ପୂର୍ବଜନ୍ମ ସତ୍କୃତି ଯୋଗୁଁ ଯେଉଁମାନଙ୍କ ହୃଦୟରେ ସତ୍ତ୍ୱଗୁଣର ପ୍ରାବଲ୍ୟ ରହିଥାଏ, ଯେମାନଙ୍କ ହୃଦୟରେ ଶୃଙ୍ଗାର ଚେତନା ଉଦୟ ହୁଏ । ଏହି ଶୃଙ୍ଗାର ହିଁ ମନୁଷ୍ୟଙ୍କୁ ଗୋଟିଏ ପ୍ରକାରରେ ଆତ୍ମ-ସଚେତନ କରାଇଥାଏ । ଏହାର କେନ୍ଦ୍ରବିନ୍ଦୁ ପ୍ରେମ । ବୀରବର ଉପେନ୍ଦ୍ର ଏ ମତର ସମର୍ଥକ । ସେ କହନ୍ତି :—

"ନବ ରସରେ ସାର ଆଦ୍ୟେ ଲେଖି ଶୃଙ୍ଗାର" ।



Digitized by PPRACHIN, SOA

ସ୍ଥାୟୀଭାବ ହିଁ ରସ ସଞ୍ଚାର କରାଏ । ଏହା ଆସ୍ୱାଦ୍ୟ । ଏହି ଆସ୍ୱାଦ୍ୟ ଅନୁପମ-ଆନନ୍ଦଯୁକ୍ତ-ଚେତନା ଅଟେ । ରସ ସ୍ୱାଦ ଗ୍ରହଣ କରୁଥିବା ବ୍ୟକ୍ତି ସହୃଦୟ-ରସିକ । ଏହି ପ୍ରକାର ଅଲୌକିକ-ନିର୍ଭର-ଆନନ୍ଦ-ଚେତନାକୁ ପ୍ରକଟ କରୁଥିବା କାରଣରୁ ଏବଂ ଏହାର ହେତୁ ହୋଇଥିବାରୁ କାବ୍ୟକୁ ମଧ୍ୟ 'ରସବତ୍' କୁହାଯାଏ । ଜ୍ଞାନ ସ୍ୱରୂପ-ଆନନ୍ଦମୟ-ରସକୁ କାବ୍ୟ ପ୍ରକାଶ କରୁଥିବାରୁ 'ରସବତ୍' ଅଟେ । ଏହି ଆନନ୍ଦ-ଚେତନା ବା ସହୃଦୟତା ବ୍ୟକ୍ତିତ୍ୱର ଯାବତୀୟ ସୀମାର ଊର୍ଦ୍ଧ୍ୱରେ ଅବସ୍ଥାନ କରେ । ରସିକ, ବିଦଗ୍ଧ ହୋଇଯାଏ ନୈର୍ବ୍ୟକ୍ତିକ । ଆସ୍ୱାଦ୍ୟ ରସ ଏକ, କାରଣ ବ୍ରହ୍ମମୟ ପରିଦୃଶ୍ୟମାନ ଜଗତ୍ ଆନନ୍ଦମୟ । ଏହି ଆନନ୍ଦରେ ଭିନ୍ନତା, ସ୍ୱରୂପରେ ପାର୍ଥକ୍ୟ, ଉପଭୋଗରେ ବୈଷମ୍ୟ ଲକ୍ଷ୍ୟ କରାଯାଏ ନାହିଁ । ତେଣୁ ଆନନ୍ଦ-ଦାୟୀ ବୈଚିତ୍ର୍ୟପୂର୍ଣ୍ଣ ରସ ମଧ୍ୟ ଏକ । ତଥାପି ରସଭୋକ୍ତାମାନଙ୍କର ହୃଦୟରେ ଆବେଗ ଓ ଶ୍ରଦ୍ଧାର ପାର୍ଥକ୍ୟ ରହେ । ପୂର୍ବ ଜନ୍ମର ସୁକୃତ ଓ ଏ ଜନ୍ମର ବିଭିନ୍ନ ସଂସ୍କାର ଏବଂ ପାରିପାର୍ଶ୍ୱିକ ଅବସ୍ଥା ଯୋଗୁଁ ସହୃଦୟର ଆବେଗ ଓ ଶ୍ରଦ୍ଧାରେ ମଧ୍ୟ ଭିନ୍ନତା ପରିଲକ୍ଷିତ ହୁଏ । ଆବେଗମୟ ଶ୍ରଦ୍ଧାକୁ ଗୃର ମୌଳିକ ରସ ଭାବରେ ବିଭକ୍ତ କରାଯାଇଛି । ଏହି ସ୍ଥାୟୀଭାବ ଚିରନ୍ତନ ଅଧ୍ୟାତ୍ମ(Subjective)ର ଅନୁଗାମୀ ହୋଇ ହୃଦୟର ବିକାଶରେ ଶୃଙ୍ଗାର, ବିସ୍ତାରରେ ବୀର, କ୍ଷୋଭରେ ବୀଭତ୍ସ ଓ ଉତ୍ତେଜନାରେ ରୌଦ୍ରରସ ପ୍ରକାଶ କରେ । ଯେତେବେଳେ ମନୁଷ୍ୟର ଚିତ୍ତ ଯାବତୀୟ ବନ୍ଧନରୁ ମୁକ୍ତ ହୋଇ ରତି ଆଶ୍ରୟୀ ହୁଏ, ତାହା ରସ ଉଦ୍‌ବୋଧକ ହୋଇଯାଏ । ମାନବ ହୃଦୟରେ ଏହି ସ୍ଥାୟୀଭାବ ଅବଚେତନା ସ୍ତରରେ ସୁପ୍ତ ଅବସ୍ଥାରେ ରହିଥାଏ । କାବ୍ୟରେ ବର୍ଣ୍ଣିତ ବିଷୟବସ୍ତୁ ପାଠକ ଓ ଶ୍ରୋତାର ମନରେ ତତୁଲ୍ୟ ସୁପ୍ତ ଭାବକୁ ଜାଗ୍ରତ କରାଇଦିଏ । ପାଠକ ଓ ଶ୍ରୋତା ହୃଦୟରେ ସ୍ଥାୟୀ ଭାବର ଉଦ୍ରେକ ହେଲେ, ସେ ଆପଣାକୁ ଭୁଲିଯାଏ; ଭୁଲିଯାଏ ନିଜର ସୀମା ପରିଧିକୁ । ସେ ଆପଣା ବ୍ୟକ୍ତିତ୍ୱକୁ ପଛକୁ ଫିଙ୍ଗିଦେଇ ହୋଇଯାଏ ମୁକ୍ତମନା । ମନଟା ଦେହକୁ ଭୁଲିଯାଇ ନାୟକ ନାୟିକାଙ୍କ ଅବସ୍ଥା ମଧ୍ୟରେ ପ୍ରବେଶ କରିଯାଏ । ଏହା ଏପରି ଏକ ଅନୁଭୂତି, ଯେ ବିଶ୍ୱଜନୀନ ଭାବବିଳାସରେ ମଣିଷର ଚେତନ ମନଟା ହଜିଯାଏ, ବର୍ଣ୍ଣିତ କାବ୍ୟ-ପ୍ରସଙ୍ଗରେ ବ୍ୟକ୍ତିତ୍ୱ ଅସ୍ପଷ୍ଟ ହୋଇଯାଏ । ଏଣୁ ନାନ୍ଦନିକ ଅନୁଭୂତି ବିମର୍ଷ କିମ୍ବା ଆନନ୍ଦର ସର୍ବବ୍ୟାପୀ ସାର୍ବଜନୀନ ବିଷୟ ହୋଇଯାଏ ।

ଶୃଙ୍ଗାର ଶବ୍ଦ 'ଶୃ' ଧାତୁରୁ ନିଷ୍ପନ୍ନ । "ଶୃ ହିଂସାୟାମ୍" ଏବଂ "ଶୃଣୋତି ହିଂସତି ଇତି ଶୃଙ୍ଗାର" ଅର୍ଥାତ୍ ହିଂସା କରିବା, ନଷ୍ଟ କରିବା ବା ହତ୍ୟା କରିବା । ଏହାକୁ ଶୃଙ୍ଗାର କୁହାଯିବାର ତାତ୍ପର୍ଯ୍ୟ ହେଉଛି ଯେ ଏହି ରସ ଯାହାଙ୍କ ହୃଦୟରେ ଉଦ୍‌ବୋଧିତ ହୁଏ ବା ଯେଉଁ ବ୍ୟକ୍ତି ଏହାକୁ ଅନୁଭବ କରନ୍ତି; ତାଙ୍କର



Digitized by PPRACHIN, SOA

ବ୍ୟକ୍ତିଙ୍କୁ ଏହା ବିଦୂରିତ କରେ ବା ହତ୍ୟାକରେ । ଅର୍ଥାତ୍ ସେ ନୈର୍ବ୍ୟକ୍ତିକ ହୋଇଯାଆନ୍ତି । ନାନ୍ଦନିକ ଅନୁଭୂତିରୁ ବୁଝାଯାଇଛି ଶୃଙ୍ଗାରର ମୌଳିକ ଅର୍ଥ ପ୍ରେମ, ପ୍ରୀତି । ଯାହାଙ୍କର ପ୍ରୀତିର ନାନ୍ଦନିକ ଅନୁଭୂତି ପାଇଁ ପ୍ରଚଣ୍ଡ ତୃଷା ରହିଥାଏ, ତାଙ୍କୁ ଶୃଙ୍ଗାରୀ କୁହାଯାଏ । ସେମାନେ ରସିକ, ପ୍ରଣୟର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଯୋଗ୍ୟ । ଯେଉଁପରି ସେଉଁମାନେ କେବଳ ବସନ ଭୂଷଣରେ ସଜ୍ଜିତ ହୁଅନ୍ତି, କଳାସର ପ୍ରାଚୁର୍ଯ୍ୟ ମଧ୍ୟରେ କାଳାତିପାତ କରନ୍ତି, ସେମାନେ ବ୍ୟସନୀ । କିନ୍ତୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର କବି ଶୀର୍ଷରର ଉପେନ୍ଦ୍ର ଶୃଙ୍ଗାରୀ— "ଶୃଙ୍ଗାରୀ ଚେତ କବିଃ କାବ୍ୟେ ଜାତଂ ରସମୟଂ ଜଗତ୍, ସ ଏବ ଚେତ୍ ଶୃଙ୍ଗାରୀ ନୀରସଂ ସର୍ବମେବ୍ ତତ୍ ।" (ସରସ୍ୱତୀ କଣ୍ଠାଭରଣ) ତାଙ୍କର ଶୃଙ୍ଗାର ଚେତନା ଦ୍ୱାରା କାବ୍ୟଜଗତ୍ ରସମୟ ହୋଇଯାଇଛି ।

ଶୃଙ୍ଗାରର ମୌଳିକ ଆବେଗ ହେଉଛି ପ୍ରଣୟ । ନାନ୍ଦନିକ ଅନୁଭୂତି, ଯୌନ-ସମ୍ବେଗ ଅନୁଭୂତିଠୁ ସମ୍ପୂର୍ଣ୍ଣ ପୃଥକ । ଯୌନ-ସମ୍ବେଗରେ ପ୍ରଣୟର ଆବେଗ ପରସ୍ପରକୁ ନିବିଡ଼ଭାବରେ ଉପଭୋଗ କରିବାରେ ପର୍ଯ୍ୟବସିତ । ତେଣୁ ଏହା କ୍ଷଣ-କାଳ ସ୍ଥାୟୀ । କିନ୍ତୁ କାବ୍ୟ ବର୍ଣ୍ଣିତ ପ୍ରଣୟ-ଆବେଗ ନାନ୍ଦନିକ ଅନୁଭୂତି ସୃଷ୍ଟି କରି ରହିଥାଏ । ଏହା ଅପରିବର୍ତ୍ତିତ ଓ ଦୀର୍ଘସ୍ଥାୟୀ । କାବ୍ୟର ପ୍ରାରମ୍ଭରୁ ପରିଣତି ପର୍ଯ୍ୟନ୍ତ ପ୍ରଣୟ-ଆବେଗର ସୌନ୍ଦର୍ଯ୍ୟ ନିର୍ବିଘ୍ନ ଅବସ୍ଥାରେ ଅପରିବର୍ତ୍ତିତ ରହିଥାଏ । ଏଥିରେ ଅଣୁ ପରିମାଣର ଦୁଃଖ ବା ବିଷର୍ଣ୍ଣତା ନଥାଏ । ଏହା ସମ୍ପୂର୍ଣ୍ଣ ଭାବରେ ମାନସ ରାଜ୍ୟର ଦିବ୍ୟାନନ୍ଦ ।

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ବର୍ଣ୍ଣିତ ପ୍ରଣୟରେ ଯୌନାବେଗର ଅନୁଭବ ଓ ଏହାର ଅବଶେଷର ସଙ୍କେତ ଉପେନ୍ଦ୍ର ଓ ପାଠକ, ଏହି ଉଭୟଙ୍କ ପାଇଁ ଲୋଡ଼ା ହୋଇଅଛି । କବି କାବ୍ୟରେ ପରିବେଶ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ତଥା ପୁଷ୍ପ-କେତୁଙ୍କ ମଧ୍ୟରେ ଏହାର ନିଚ୍ଛକ ଉପସ୍ଥାପନରେ ଏପରି କ୍ଷମ ହୋଇଛନ୍ତି ଯେ ତାହା ସୌନ୍ଦର୍ଯ୍ୟପ୍ରେମୀ ପାଠକଙ୍କ ହୃଦୟରେ ଉତ୍ଫୁଲ୍ଲ ଅନୁଭୂତି ସୃଷ୍ଟି କରିଛୁ । କାବ୍ୟର ପ୍ରାରମ୍ଭରୁ ପରିଣତି ପର୍ଯ୍ୟନ୍ତ ପାଠକମାନଙ୍କ ହୃଦୟରେ ଏହି ଆବେଗକୁ କବି ବାନ୍ଧିଇ ରଖିପାରିଛନ୍ତି । ପ୍ରସଙ୍ଗ କ୍ରମେ ନାନ୍ଦନିକ ଆନନ୍ଦ ଓ ଯୌନକ୍ରୀଡା-ଲବ୍‌ଧ-ଦାମ୍ପତ୍ୟ-ସୁଖ ମଧ୍ୟରେ ପାର୍ଥକ୍ୟ ସୂଚାଇଦେବା ଆବଶ୍ୟକ ମନେ କରୁଛୁ । ରତି କ୍ରୀଡ଼ାରେ ନିମଜ୍ଜିତ ଦୁଇଜଣଙ୍କର ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଶେଷ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରହେ । ଏଥିରେ ଦମ୍ପତିର କାମାସକ୍ତି ଓ ଇନ୍ଦ୍ରିୟ ଲାଳସା ଚରିତାର୍ଥ କରିବାର ଦୁର୍ବାର ପ୍ରୟାସ ରହିଥିବାରୁ, ଉଭୟଙ୍କର ସ୍ୱତନ୍ତ୍ର ବ୍ୟକ୍ତିସତ୍ତାର ଉପସ୍ଥିତି ପୂର୍ବରୁ ଅନୁମାନ କରି ନିଆ ହୋଇଛି । ଏହା ସମ୍ପୂର୍ଣ୍ଣ ଭାବରେ ଦେହଗତ । ଏହି ଉପ-



Digitized by PPRACHIN, SOA

ଭୋଗକୁ ସାର୍ଥକ କରିବା ପାଇଁ ଦୈହିକ ଉତ୍ତେଜନା ସମ୍ବନ୍ଧୀୟ ପରିବେଶ ଓ ଯାବତୀୟ ଉପାଦାନର ଉପସ୍ଥିତି ଲୋଡ଼ାହୁଏ । ଏଥିରୁ ଯେଉଁ ସୁଖ ମିଳେ ତାହା ପୂର୍ଣ୍ଣତଃ ଇନ୍ଦ୍ରିୟ ଉପଭୁକ୍ତ ଅନୁଭୂତ । କବିବର ଉପେନ୍ଦ୍ର ଏହାର ସୂଚନା ଦେଇଛନ୍ତି ନିମ୍ନୋକ୍ତ ଅଂଶରେ :—

"ଆଶ୍ଳେଷ ଶ୍ଳେଷ ସ୍ୱରୂପ ରୂପକ ବ୍ୟାପିତ ।
ଚୁମ୍ବନ ଯମକ ଆଶା ଆଶୟ ଉଦ୍ଧତ ଯେ । ୪୪ ।
ଦିବ୍ୟବର୍ଣ୍ଣ ଦର୍ଶନ ପ୍ରସ୍ତାର ହୋଇଗଲା ।
ଲକ୍ଷଣ ସହିତ ହୋଇ ଅଲଙ୍କାର ମେଳା ଯେ ।
ନାନାବନ୍ଧ ବିଖ୍ୟାତ ଶୃଙ୍ଖଳା ଧ୍ୱନି ଯେଣି ।
ବକ୍ରୋକ୍ତି ଜନ୍ମିବ ମେଳ ହୋଇଲେ ସଜନୀ ଯେ । ୪୫ ।
ଛଳ ବ୍ୟକତ ତହିଁରେ ମଦନ କଳ୍ପିତର ।
ବିରୋଧ ପ୍ରକାଶି ବାଳା ଚୁମ୍ବନ ଦେବାରେ ଯେ ।
ପୁନରୁକ୍ତ ପଦାଭାସ ଆଶ୍ୱାସ ବଚନ ।
ରସ ପଣ୍ଡିତରେ ଯାହା ହୁଅଇ ରଚନ ଯେ । ୪୬ ।
[ ୩୪ ଛାନ୍ଦ- କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ]

ନାନ୍ଦନିକ ଅନୁଭୂତି-ଦୈହିକ-ପ୍ରଣୟର ଅତିକ୍ରାନ୍ତ ଭାବ । ଏହା ସହିତ ସମ୍ପୃକ୍ତ ଯାବତୀୟ ଅବସ୍ଥା ଓ ପରିବେଶ, ଆନନ୍ଦ ବିଧାୟକ ଉପାଦାନ, ଆବେଗ ଉଦ୍ରେ଼କ ସକଳ ବସ୍ତୁ କେବଳ କଳ୍ପନା ରାଜ୍ୟରେ ବିଚରଣ କରୁଥାଆନ୍ତି । ସୌନ୍ଦର୍ଯ୍ୟପ୍ରେମୀ ହୃଦୟରେ, ନାନ୍ଦନିକ ବସ୍ତୁର ସକଳ ଅବସ୍ଥା ଓ ଉପାଦାନକୁ କାବ୍ୟରେ ଉପସ୍ଥାପନ କରାଯାଇ, ଏ ପ୍ରକାରର ପ୍ରଣୟ ସୃଷ୍ଟି କରାଯାଇପାରେ । ଏଠାରେ ସ୍ମର୍ତ୍ତବ୍ୟ ଯେ ଆମ ସଂସାରରେ ଲକ୍ଷ୍ୟ କରାଯାଉଥିବା, ଅନୁଭବ କରାଯାଉଥିବା ବିଷୟ ବା ଦୃଶ୍ୟର ଏହା ଅନୁକୃତ ନୁହେଁ; ବରଂ ଉପେନ୍ଦ୍ରଙ୍କ ମନୋରାଜ୍ୟକୁ ପ୍ରଭାବିତ କରି କଳ୍ପନା-ରାଜ୍ୟରେ ରୂପାୟିତ ହୋଇଥିବା ଭାବାବଳୀର ଉପସ୍ଥାପନ ମାତ୍ର । ଏହା ଦମ୍ପତିଙ୍କୁ ଏପରି ନିମଜ୍ଜିତ କରିଦିଏ ଯେ ଉଭୟେ ନିଜକୁ ଅନ୍ୟ ମଧ୍ୟରେ ଖୋଜି ପାଆନ୍ତି,ଜଣେ ଅନ୍ୟରେ ରୂପାନ୍ତରିତ ହୋଇଯାଏ; ଗୋଟିଏ ହୁଏ ଦେହ, ଅନ୍ୟଟି ହୁଏ ପ୍ରାଣ । ପ୍ରଣୟ ସାଧନ ସାମଗ୍ରୀ, ପରିବେଶ ଓ ପ୍ରଣୟୀ-ଯୁଗଳ ସବୁ ମିଶିଯାଇ ଏକାକାର ହୋଇଯାଆନ୍ତି । ପ୍ରଣୟୀ ଯୁଗ୍ମ ହୁଅନ୍ତି ନୈର୍ବ୍ୟକ୍ତିକ । ପ୍ରଣୟୀ ପ୍ରଣୟିନୀଙ୍କର ପାରସ୍ପରିକ ଆତ୍ମନିମଜ୍ଜନ ମଧ୍ୟରେ ପ୍ରେମର କଳାତ୍ମକ ସୌନ୍ଦର୍ଯ୍ୟ ବିକଶିତ ହୁଏ । ଦେହ ଏଠାରେ ଅପ୍ରାସଙ୍ଗିକ । ଇନ୍ଦ୍ରିୟକୁ ଏଠାରେ ଅବଜ୍ଞା କରାଯାଏ । ଶରୀର ସହିତ ଏହାର କୌଣସି ସମ୍ପର୍କ ନଥାଏ ।

॥ ଏକାବନ ॥

Digitized by PPRACHIN, SOA

ଏଥିରୁ ପ୍ରଣୟର ନାନ୍ଦନିକ ଆନନ୍ଦ ଉପଲବ୍ଧ ହୁଏ । ଯଦି ଓ ନାୟକ ନାୟିକାଙ୍କ ମାଧ୍ୟମରେ ପ୍ରଣୟ ଉପସ୍ଥାପିତ ହୋଇଥାଏ, ପ୍ରଣୟର ନାନ୍ଦନିକ ଅନୁଭୂତ ଏକକ ସମୂହୀୟ ଅନୁଭୂତ । ଏମାନେ ଦେହରେ ଇହଲୋକରେ ପୃଥକ ହେଲେହେଁ ଅଧ୍ୟାତ୍ମ ସ୍ତରରେ ଏମାନେ ଅଭିନ୍ନ ଭାବରେ ସଂଯୁକ୍ତ ହୋଇଥାନ୍ତି । ସେମାନଙ୍କ ଦ୍ୱୈତ-ସ୍ୱରୂପ ଏହି ଐକ୍ୟରେ ଲୋପ ପାଇଯାଏ ।

ଭରତ ଓ ବାତ୍ସ୍ୟାୟନ କାମର ଦଶଦଶାକୁ ସ୍ୱୀକୃତ ଦେଇଛନ୍ତି । ମୃତ୍ୟୁ ଏହାର ଦଶମ ଅବସ୍ଥା । ସ୍ୱୀକାର କରାଯାଇଛି ଯେ ମୃତ୍ୟୁ ପ୍ରସଙ୍ଗରେ ମଧ୍ୟ ଶୃଙ୍ଗାର ବର୍ତ୍ତମାନ ରହିପାରେ । ପ୍ରଣୟ କ୍ଷେତ୍ରରେ ପ୍ରଣୟୀ କିମ୍ବା ପ୍ରଣୟିନୀ କିମ୍ବା ଉଭୟଙ୍କର ମୃତ୍ୟୁ ଶୋକ ଉଦ୍ରେକ କରାଇବା ପାଇଁ ଦାୟୀ ହୁଏ । ଶୋକ କରୁଣ ରସର ସ୍ଥାୟୀଭାବ । ଏଣୁ ସ୍ୱତଃ ପ୍ରଶ୍ନ ହୁଏ ବିପ୍ରଲମ୍ଭ ଶୃଙ୍ଗାର କିପରି କରୁଣ ରସ-ଠାରୁ ଭିନ୍ନ ? ଯଦି ଉଭୟଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାୟୀଭାବ ଶୋକ ଏବଂ ଏହା ଶୃଙ୍ଗାରର ଦଶମ ଅବସ୍ଥା ନାୟକ ନାୟିକାଙ୍କ ମୃତ୍ୟୁରେ ଉପସ୍ଥାପିତ ହୁଏ, ତେବେ ଏହା କରୁଣ ରସ ହେବା ଯଥାର୍ଥ । ବିପ୍ରଲମ୍ଭ ଶୃଙ୍ଗାର ଓ କରୁଣ ମଧ୍ୟରେ ପାର୍ଥକ୍ୟ ସେମାନଙ୍କ ସ୍ଥାୟୀଭାବ ଉପରେ ନିର୍ଭର କରେ । ଶୃଙ୍ଗାରର ସ୍ଥାୟୀଭାବ ରତି,ଶୋକ ନୁହେଁ । ଏହି ଦୁଇଟି ରସ ମଧ୍ୟରେ ମୌଳିକ ପ୍ରଭେଦ ହେଉଛି ଯେ ପ୍ରଥମଟି (ଶୃଙ୍ଗାର) ମୂଳରୁ ଆଲମ୍ବନ ବିଭାବ ନାୟକ, ନାୟିକାଙ୍କ ଉପସ୍ଥିତିକୁ ଗ୍ରହଣ କରି-ନେଇଛି । ଭବିଷ୍ୟତରେ ଯେ କୌଣସି ସ୍ତରରେ, ଯେ କୌଣସି ଅବସ୍ଥାରେ ସେମାନଙ୍କ ମିଳନ ସମ୍ଭବ । କାଳିଦାସ କହନ୍ତି :—

"ଆଶାବନ୍ଧଃ କୁସୁମ ସଦୃଶଂ ପ୍ରାୟ ଶୋହ୍ୟଙ୍ଗନାନାଂ,
ସଦ୍ୟଃ ପାତି ପ୍ରଣୟୀ ହୃଦୟଂ ବିପ୍ରଯୋଗେ ରୁଣଦ୍ଧି ।"

( ମେଘଦୂତ - ୧/୧୦ )

ସାଧାରଣତଃ ବିପ୍ରଲମ୍ଭ ଶୃଙ୍ଗାରରେ କେବଳ ଆଶା ସମୂହ ପ୍ରଣୟୀଙ୍କୁ ବଞ୍ଚାଇ ରଖେ । କୁସୁମ ସଦୃଶ ପ୍ରଣୟିନୀର କୋମଳ ହୃଦୟ ଯେକୌଣସି ମୁହୂର୍ତ୍ତରେ ତରଳି ଯାଇପାରେ । ଦୂରତା ପ୍ରଣୟର ବାଧକ ହୋଇନପାରେ । ଆତ୍ମାର ମିଳନ ହିଁ ପ୍ରଣୟର ସର୍ବକାଳୀନ ଲକ୍ଷ୍ୟ । କବିବର ଉପେନ୍ଦ୍ର ଚମତ୍କାର ଭାବରେ ଏହାକୁ ରୂପାୟିତ କରିଛନ୍ତି :—

"ଦୂରେ ଥିଲେ ପାଶେ ଥିଲପରି, ଥିବୁ ଯେଣି,
କେତେ ଦୂରେ ଚନ୍ଦ୍ର, କେତେ ଦୂରେ କୁମୁଦିନୀ,



Digitized by PPRACHIN, SOA

ପ୍ରୀତ ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ, ଯେ ଯାହାର, ସେ ତାହାର ।"
( ପ୍ରେମ ସୁଧାନିଧି )

ବିପ୍ରଲମ୍ଭ ଶୃଙ୍ଗାରରେ, ଯଦି ଆବଶ୍ୟକ ହୁଏ, ମୃତ୍ୟୁ ପ୍ରଦର୍ଶିତ ହୋଇପାରେ (କାରଣ ମୃତ୍ୟୁ ଶୃଙ୍ଗାରର ଗୋଟିଏ ଅବସ୍ଥା ବୋଲି ସ୍ୱୀକୃତ), ତେବେ ଏହା ଇହ ଓ ପରଲୋକର ଏକ ସଂଯୋଜକ ଭାବେ ବର୍ଣ୍ଣିତ ହେବ । ପରଲୋକରେ କବି ସେମାନଙ୍କର ମିଳନ ବ୍ୟବସ୍ଥା କରିପାରନ୍ତି । [ରଘୁବଂଶ- (ଅଷ୍ଟମ ସର୍ଗ—ଅଜଇନ୍ଦୁମତୀ-) କାଳିଦାସ] ପୁଣି ବିପ୍ରଲମ୍ଭ ଶୃଙ୍ଗାରରେ ମୃତ୍ୟୁ ଏକ କ୍ଷଣସ୍ଥାୟୀ ଅବସ୍ଥା ବୋଲି ଅନ୍ୟକେତେକ ତତ୍ତ୍ୱବିଦ୍ ମତଦାନ କରିଛନ୍ତି । ମୃତ୍ୟୁର ଅର୍ଥ ଜୀବନର ଶେଷ ନୁହେଁ । ଦେହ ଓ ପ୍ରାଣର ଏହା ଏକ ଚିରନ୍ତନ ବିଚ୍ଛେଦ ଅବସ୍ଥା ମାତ୍ର, ଯାହା ପ୍ରଣୟୀ ଯୁଗଳଙ୍କୁ ଏ ଶରୀରରେ ଶେଷଥର ପାଇଁ ମିଶିବାର ସୁଯୋଗ ଦେଇଥାଏ । ବିପ୍ରଲମ୍ଭ ଶୃଙ୍ଗାରରେ ଶୋକ କ୍ଲେଶଦାୟକ ନୁହେଁ । ଗଳ୍ପଦିନର ସମ୍ଭୋଗ ଶୃଙ୍ଗାରର ସ୍ମୃତି ସ୍ମରଣ ପାଇଁ, ମାନ ଅଭିମାନ ପଲ୍ଲବିତ ସ୍ମୃତିର ରୋମନ୍ଥନ ଏବଂ ଉପସ୍ଥିତ କ୍ଷେତ୍ରରେ ସେଇ ସୁଯୋଗର ଅଭାବ ଯୋଗୁଁ ବିରହର ଉପସ୍ଥାପନ କରାଯାଏ । ଏହାଦ୍ୱାରା ପ୍ରଣୟୀ ପ୍ରଣୟିନୀର ବା ଉଭୟ ପରସ୍ପରର ପ୍ରୀତିର ନିବିଡ଼ତା ଓ ଗଭୀରତାକୁ ଅନୁଭବ କରିଥାଆନ୍ତି ।

ବୀରବର ଉପେନ୍ଦ୍ର ଶୃଙ୍ଗାରର ଏହି ଭେଦକୁ ସ୍ୱୀକାର କରିଛନ୍ତି :—

"ସମ୍ଭୋଗ, ବିପ୍ରଲମ୍ଭ ବେନି ଶୃଙ୍ଗାର
ଯୋଗୀ ବିଯୋଗୀ ବିରଚନ କରନ୍ତି ଭାବି ବେଗେ କେଲି ଆଦର" ।୧୪।
(ଷଷ୍ଠ ଛାନ୍ଦ- କୋଟିବ୍ରହ୍ମାଣ୍ଡ ସୁନ୍ଦରୀ)

ଶୃଙ୍ଗାରରେ ସ୍ଥାୟୀଭାବ ରତି । ରତି ଭାବକୁ ଅନୁଭବରେ ଅଣାଇ ପାରୁଥିବାରୁ, ଏହାକୁ ଅନୁଭାବ କୁହାଯାଏ । ଏଥିରେ ବାକ୍, ଅଙ୍ଗ ଓ ଉପାଙ୍ଗ (ଅଙ୍ଗୁଳି ଆଦି) ସହ ସମ୍ପୃକ୍ତ ଅର୍ଥ ଲମ୍ବା କାବ୍ୟାଦି ପ୍ରତିପାଦ୍ୟ ବସ୍ତୁ ବାକ୍ ଓ ଅଙ୍ଗର ଅନୁଭାବ ଦ୍ୱାରା ଅନୁଭାବିତ ହୁଏ । ଏହା ଲୌକିକ ଓ ସ୍ୱଭାବଗତ ବା ପ୍ରାକୃତିକ ହୋଇଥିବାରୁ ସର୍ବଜନ ବୋଧ । ପାରିପାର୍ଶ୍ୱିକ ଅବସ୍ଥା, ବସନ୍ତ ଋତୁ, ଯୌବନ କାଳ ପ୍ରଭୃତି ଏହାର ଉଦ୍ଦୀପନ ବିଭାବ ।

"ଉଦ୍ଦୀପନକାରୀ କାଳର ରୀତି ।
ଆଲମ୍ବନ ଭାବ । ଛୁଇଛୁ କେମନ୍ତେ ଦମ୍ଭ ରହିବ" । ୨୧ ।
(ଦ୍ୱାବିଂଶ ଛାନ୍ଦ, କୋ.ବ୍ର.ସୁ.)

॥ ଭେପନ ॥

Digitized by PPRACHIN, SOA

ନାୟକ ପୁଷ୍ପକେତୁ ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କୁ ଅବଲମ୍ବନ କରି ଶୃଙ୍ଗାର ରସ ପାଠକ ବା ଶ୍ରୋତା ହୃଦୟରେ ଉଦ୍‌ବୋଧିତ ହେଉଥିବାରୁ, ଏମାନେ ଆଳମ୍ବନ ବିଭାବ । ଆମେ ପୁଣି ଏଠାରେ ଉପେନ୍ଦ୍ରଙ୍କୁ ଉଦ୍ଧାର କରୁଛୁ :—

"ଆଳମ୍ବନ ଭାବ ଅବଲମ୍ବନ ସହଜେ ।
ଏ ପ୍ରକାର ଉଦ୍ଦୀପନ ଭାବେ ଧୈର୍ଯ୍ୟ ଭାଜେ ଯେ ।" ୪୩ ।

(ପଞ୍ଚବିଂଶ ଛାନ୍ଦ, କୋ.ବ୍ର.ସୁ)

ପ୍ରଣୟରେ ପୂର୍ବରାଗ ନୀଳି, କୁସୁମ୍ଭ ଓ ମଞ୍ଜିଷ୍ଠା ଭେଦରେ ନିବଦ୍ଧ । ଯେଉଁ ଅନୁରାଗ ନାୟକ ନାୟିକାଙ୍କ ହୃଦୟରୁ କେବେ ଦୂର ହୁଏନାହିଁ ଓ ଅତିଶୟ ଶୋଭନୀୟ, ତାହା ମଞ୍ଜିଷ୍ଠା ରାଗ । ପ୍ରୀତ ଯେତିକି ପୁରୁଣା ହୋଇ ଯାଉଥାଏ, ଏଥିରେ ଅନୁରାଗ ସେତିକି ବଢ଼ୁଥାଏ । ଅନୁକୂଳ ନାୟକର ବୈଶିଷ୍ଟ୍ୟ ହେଉଛି ଏକ ପତ୍ନୀବ୍ରତା ନାୟିକାର ରତି ଗୁଣରେ ଆକୃଷ୍ଟ ହୋଇ ପୁଷ୍ପକେତୁ କେବେ ତାର ନିକଟରୁ ଦୂର ହୋଇନି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସ୍ୱାଧୀନ ଭର୍ତ୍ତୃକା । ବୀରବର ଉପେନ୍ଦ୍ରଙ୍କ ଭାଷାରେ କୁହାଯାଇପାରେ :—

"ରମା ସ୍ୱାଧୀନ ଭର୍ତ୍ତୃକା ଅନୁକୂଳ ପୁଂସ ।
ହୋଇ ମଞ୍ଜିଷ୍ଠାନୁରାଗ କରିବେ ପ୍ରକାଶ ଯେ ।" ୮୭

(ନବସ୍ତ୍ରିଂଶ ଛାନ୍ଦ, କୋ.ବ୍ର.ସୁ)

ଏଠାରେ ଉଲ୍ଲେଖନୀୟ ଯେ ରୂପ ଗୋସ୍ୱାମୀ 'ଉଜ୍ଜ୍ୱଳ ନୀଳମଣି'ରେ ରାଧାକୃଷ୍ଣଙ୍କ ଅପ୍ରାକୃତ-ପ୍ରେମକୁ ଉଜ୍ଜ୍ୱଳ ରସ ଭାବରେ ଗ୍ରହଣ କରିଛନ୍ତି । ଆଲୋଚ୍ୟ କାବ୍ୟରେ ଉପେନ୍ଦ୍ର ଉଜ୍ଜ୍ୱଳ ରସକୁ ମାନବକ-ପ୍ରେମ ଭାବରେ ବର୍ଣ୍ଣନା କରିଛନ୍ତି । ପୁଷ୍ପକେତୁ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କର କାମକ୍ରୀଡ଼ା ବର୍ଣ୍ଣନାରେ ଉଜ୍ଜ୍ୱଳ ରସର ସୃଷ୍ଟି ସମ୍ଭବ ହୋଇଛି:—

"ପ୍ରକାଶ ଉଜ୍ଜ୍ୱଳ ରସ ହୋଇବାର ପଡ଼ି ।
ଲଜ୍ଜା ଘନ କ୍ରମେ କ୍ରମେ ଗଲା ଛାଡ଼ି ଛାଡ଼ି ଯେ ।" ୩୫

(ଚତୁର୍ସ୍ତ୍ରିଂଶ ଛାନ୍ଦ, କୋ.ବ୍ର.ସୁ)

ବୀରବର ଉପେନ୍ଦ୍ର ନିଜ କାବ୍ୟରେ ଶୃଙ୍ଗାର ରସର ଆଲମ୍ବନ ବିଭାବ ବର୍ଣ୍ଣନା ପ୍ରସଙ୍ଗରେ ନାୟିକା-ଅବସ୍ଥା-ଭେଦରେ ଆଠ ପ୍ରକାର ବୋଲି କହିଛନ୍ତି । ଯଥା :— ଅଭିସାରୀ, ସ୍ୱାଧୀନ ଭର୍ତ୍ତୃକା, ବିପ୍ରଲବ୍‌ଧା, ବିରହୋତ୍କଣ୍ଠିତା, କଳହାନ୍ତରିତା, ବାସକ ସଜ୍ଜା, ପ୍ରୋଷିତ ଭର୍ତ୍ତୃକା ଓ ଖଣ୍ଡିତା । (ଷଡ଼ବିଂଶ ଓ



Digitized by PPRACHIN, SOA

ଅଷ୍ଟବିଂଶ ଛାନ୍ଦ, କୋ.ବ୍ର.ସୁ) ସେ ନବରସର ନାମୋଲ୍ଲେଖ କରି (ଦଶମ ପଦ, ସପ୍ତବିଂଶ ଛାନ୍ଦ) ଶୃଙ୍ଗାର ରସର ବିରୋଧୀ ରସର ଉଲ୍ଲେଖ କରି କହନ୍ତି :—

"ନ ଚଳି ଚଳି ଶୃଙ୍ଗାର ବୀର ରସ ବିରୋଧୀ ବଳାତକାର" । ୧୮ ।
(ସପ୍ତବିଂଶ ଛାନ୍ଦ)

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କେବଳ ସମ୍ଭୋଗ ଶୃଙ୍ଗାରର ଚିତ୍ର ପ୍ରଦତ୍ତ ହୋଇଛି । ଉପେନ୍ଦ୍ର ଆପଣାର ସର୍ବଶ୍ରେଷ୍ଠ କୃତିରେ ବିପ୍ରଲମ୍ଭ ଶୃଙ୍ଗାରକୁ ତ୍ୟାଗ କରିଛନ୍ତି । ସେ ଏଥିରେ ଶୃଙ୍ଗାରର ଦୁଇଟି ଅବସ୍ଥାକୁ ଗ୍ରହଣ କରିନାହାନ୍ତି । ଅଭିନବ ଗୁପ୍ତ ବିପ୍ରଲମ୍ଭ ଶୃଙ୍ଗାରକୁ ସ୍ୱୀକାର କରିନାହାନ୍ତି । ମିଳନରେ ପ୍ରଣୟର ଉପସ୍ଥାପନକୁ ଚମତ୍କାର ଓ ଅଧିକ ଚିତ୍ତାକର୍ଷକ କରିବାପାଇଁ ବିଚ୍ଛେଦ/ବିରହ ମଧ୍ୟ ଉପସ୍ଥାପନ କରାଯାଇଥାଏ । କିନ୍ତୁ ଉପେନ୍ଦ୍ର ଆଲୋଚ୍ୟ କାବ୍ୟରେ ସମ୍ଭୋଗର ଚିତ୍ର ଉପସ୍ଥାପନ କରି ପାଠକ ପାଠିକାମାନଙ୍କୁ କେବଳ ସ୍ୱାଦ୍ୟ ମିଷ୍ଟାନ୍ନ ପରିବେଷଣ କରିଛନ୍ତି ।

ସୌନ୍ଦର୍ଯ୍ୟ ପ୍ରାକୃତିକ ହେଉ ବା କଳାକୃତ ହେଉ, ତାହାର ଦୁଇଟି ଦୃଷ୍ଟି-ଭଙ୍ଗୀ ରହିଅଛି । ଯଥା, ଇନ୍ଦ୍ରିୟଗ୍ରାହ୍ୟ ଓ ବୋଧଗମ୍ୟ । ଇନ୍ଦ୍ରିୟଗ୍ରାହ୍ୟ ଓ ଦୃଷ୍ଟି-ଭଙ୍ଗୀ ଦୃଶ୍ୟ ଓ ଶ୍ରାବ୍ୟ ଶବ୍ଦ ମଧ୍ୟରେ ସୀମିତ । ଏଣୁ ଏଥିରେ ଚକ୍ଷୁ ଓ କର୍ଣ୍ଣ ହେଉଛନ୍ତି ନାନ୍ଦନିକ ଇନ୍ଦ୍ରିୟ । ପ୍ରଜ୍ଞା ଦ୍ୱାରା ମନୁଷ୍ୟ ଯେଉଁ ସୌନ୍ଦର୍ଯ୍ୟ ଅନୁଭବ କରେ, ତାହା ବୋଧଗମ୍ୟ । ମସ୍ତିଷ୍କ ହେଉଛି ଏଠାରେ ନାନ୍ଦନିକ ଅନୁଭୂତିର ମାଧ୍ୟମ । ଏଠାରେ ସ୍ମର୍ତ୍ତବ୍ୟ ଯେ ଇନ୍ଦ୍ରିୟଗ୍ରାହ୍ୟ ସୌନ୍ଦର୍ଯ୍ୟ ସ୍ଥାନ, କାଳ, ପାତ୍ର ଭେଦରେ ପୃଥକ ହୋଇପାରେ । ଏହା ପାଶବ ବୃତ୍ତିକୁ କିୟତ୍ ପରିମାଣରେ ଚରିତାର୍ଥ କରେ । ଏଥିରେ ଲାଳସାରି ସ୍ୱାଧୀନତା ରହେ କିମ୍ବା ସୌନ୍ଦର୍ଯ୍ୟ ଜାହିତ ବସ୍ତୁପ୍ରତି ସ୍ୱେଚ୍ଛାବୃତ୍ତିର କାମନା ଥାଏ । ଏଣୁ ନାନ୍ଦନିକ ଭବ ଏଥିରେ ଆଗ୍ରହହୀନ ହୋଇଯାଏ ।

ବସ୍ତୁର ସ୍ୱରୂପ ମାନବର ପ୍ରଜ୍ଞାଦ୍ୱାରା ମସ୍ତିଷ୍କରେ ଯେପରି ପ୍ରତିବିମ୍ବିତ ହୁଏ, ତାର ସାହିତ୍ୟିକ ପରିପ୍ରକାଶ ହେଉଛି ବୌଦ୍ଧିକ ସୌନ୍ଦର୍ଯ୍ୟ । ଏଠାରେ ନୈତିକତା ହିଁ ସତ୍ୟ; ସୌନ୍ଦର୍ଯ୍ୟ ନୈତିକତାର ଶକ୍ତି ସ୍ଥାପନ କରିଛି । କଳାର ସୌନ୍ଦର୍ଯ୍ୟକୁ ଏହି ଦୃଷ୍ଟିରୁ ଗ୍ରହଣ କରାଯିବ । ସାଧାରଣ ପାଠକ ଓ ଶ୍ରୋତା ସମ୍ମୁଖରେ ଇନ୍ଦ୍ରିୟଗ୍ରାହ୍ୟ ସୌନ୍ଦର୍ଯ୍ୟର ଉପସ୍ଥାପନ ମାଧ୍ୟମରେ ସେମାନଙ୍କ ପ୍ରଜ୍ଞା, ନୈତିକତା, ସତ୍ୟ-ପ୍ରୀତି ମନୋଭାବ ଜାଗ୍ରତ କରାଇବାକୁ କବି ଓ ବୈଜ୍ଞାନିକଗଣ ସବୁ ଯୁଗରେ ପ୍ରୟାସ କରି ଆସିଛନ୍ତି । ଯାହା ଇନ୍ଦ୍ରିୟ-ପ୍ରଗତ ଏ ଧରାରେ ଅତ୍ୟନ୍ତ ସୁନ୍ଦର ଓ ବାସ୍ତବ,



Digitized by PPRACHIN, SOA

ତାହା ମନୁଷ୍ୟର କୌଣସି ଏକ ଆବଶ୍ୟକୀୟ ଅଭିପ୍ସାକୁ ପୂରଣ କରୁଥିବାରୁ, ଅଧିକାଂଶ କ୍ଷେତ୍ରରେ ତାହା ଯଥାର୍ଥ ସୌନ୍ଦର୍ଯ୍ୟ ପଦବାଚ୍ୟ ହୋଇପାରେ ନାହିଁ। ଉଦାହରଣଟିଏ ନିଆଯାଉ :—

"ହେମଭୂ ସମ୍ଭୃତ ଶମ୍ଭୁ ଯୁଗଳେ। ନୀଳମଣିରେ ନିର୍ମିତ ପ୍ରଣାଳେ।
ପାଞ୍ଚ ପାଞ୍ଚ ଯୁକ୍ତ ସପ୍ତ କାକଳୀ। ପଙ୍କଜ-ଝୁମ୍ପା ଚମ୍ପାମାଳ ଝଳି ସେ।
ନିଶ୍ଚୟ କର ଏମନ୍ତ ଯେ।
ବେନି ପ୍ରଜାପତି ଅର୍ଚ୍ଚନ ଅଶୋକେ ପ୍ରପଦେ ସେ ଆଲିଙ୍ଗିତ ଯେ।" ୧୯
(ସପ୍ତମ ଛାନ୍ଦ, କୋ.ବ୍ର.ସୁ)

ଆଲୋଚ୍ୟ ପଦରେ ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବକ୍ଷୋଜର ବର୍ଣ୍ଣନା କରାଗଲାବେଳେ ଏଠାରେ 'ରହିବାକୁ ନଷ୍ଟେ ମନଲୋଚନ' ବୋଲି କବି ସ୍ୱୀକାର କରିଛନ୍ତି। ଏ ବର୍ଣ୍ଣନାରେ ଲାଳସାର ବହ୍ନି ଲୁକ୍କାୟିତ।

ୟୁରୋପୀୟ-ସଂସ୍କୃତିର-ନବ-ଜାଗରଣର ପରବର୍ତ୍ତୀ ଚିନ୍ତାନାୟକଗଣ କହନ୍ତି କଳା କେବଳ ଜାଗତିକ ବସ୍ତୁର ମାନସିକ ପ୍ରତିବିମ୍ବ ନୁହେଁ, ଏହା ସର୍ବଶ୍ରେଷ୍ଠ ମାନବିକ ଆବିଷ୍କାର। ଏହା ପୁଣି ଈଶ୍ୱର-ଦତ୍ତ-ଙ୍କୁରର ପ୍ରକାଶନ ମାତ୍ର ନୁହେଁ। ସୌନ୍ଦର୍ଯ୍ୟର ଚିତ୍ର ଚମତ୍କାରୀ ଉପସ୍ଥାପନ ହିଁ କଳା। ପ୍ରକୃତିର ସୁନ୍ଦର-ତମ ଉପାଦାନମାନଙ୍କ ମଧ୍ୟରୁ ସୂକ୍ଷ୍ମବୁଦ୍ଧି ସାହାଯ୍ୟରେ କବି ସର୍ବୋତ୍ତମ ଅଂଶଗୁଡ଼ିକୁ ମନୋନୀତ କରି ସୌନ୍ଦର୍ଯ୍ୟର କଳାତ୍ମକ ଉପସ୍ଥାପନ କରିଥାନ୍ତି। ପ୍ରକୃତିର ଅନନ୍ତ ସମ୍ପଦର ଗନ୍ତାଘରରୁ କାବ୍ୟ ବର୍ଣ୍ଣିତ ସୌନ୍ଦର୍ଯ୍ୟ ସକଳକୁ ମନୋନୀତ କରିବା, ମାନବିକ ଉପଯୋଗ ଓ ଗୁଣ ସମନ୍ୱିତ ଉପାଦାନଗୁଡ଼ିକୁ ସ୍ଥିର କରିବା ହିଁ, ଏହି ଆବିଷ୍କାରର ପ୍ରଥମ ପଦକ୍ଷେପ। ମାନବ ଜୀବନକୁ ଅଧିକ ସରସ, ସୁରଭିତ ଓ ସୌନ୍ଦର୍ଯ୍ୟ ମଣ୍ଡିତ କରି କାବ୍ୟରେ ଚିତ୍ରିତ କରିବା ପାଇଁ ଏହି ନିର୍ବାଚିତ ଉପାଦାନ ଗୁଡିକୁ ସମନ୍ୱିତ କରାଯାଏ। ଉପେନ୍ଦ୍ର ପ୍ରକୃତିରୁ ଏହି ସୌନ୍ଦର୍ଯ୍ୟର ଉପାଦାନକୁ ସଂଗ୍ରହ କରି ଚମତ୍କାର ଭାବରେ ନାୟିକା ମୁଖରେ ଜିଜ୍ଞାସା କରାଇଛନ୍ତି :— "ହେ ସଖୀ ପ୍ରିୟମୃଦେ ! ଶ୍ମଶାନରେ ଚିତାଗ୍ନି ପ୍ରଜ୍ୱଳିତ ହେଲାପରି ଆକାଶରେ ଅଗ୍ନିର ଜ୍ୱଳନ ସମ୍ଭବ କିପରି ? କାହାକୁ ଏଥିରେ ଦହନ କରାଯିବ। ଆକାଶରେ ଏ ଶ୍ମଶାନର ଦୃଶ୍ୟ ସମ୍ଭବିଲା କିପରି ? ସଖୀ କହିଲା — ଏହା ଚିତାଗ୍ନି ନୁହେଁ। ଅନୁଗତା ପଦ୍ମିନୀର ପ୍ରେମକୁ ଗ୍ରହଣ କରି ସୂର୍ଯ୍ୟ ତାକୁ ଅନୁସରଣ କରୁଛନ୍ତି। ଏହା ଉଷା କାଳର ରକ୍ତିମା। ଏହାପରେ ସୂର୍ଯ୍ୟୋଦୟ ହେବ। ଲକ୍ଷ୍ୟ କରନ୍ତୁ କବି ଗୀତକୁ :—

॥ ଛପନ ॥

Digitized by PPRACHIN, SOA

"ଅରୁଣା ଧରା ଧରା ଭୂଷା ପଙ୍କଜ-ଧନ୍ୟ ଶାଖା ପଲ୍ଲବରେ ଲୋଚନ ।
ବୋଲେ ବମନା-ମନ-ନନ୍ଦ ଦାମ୍ପିନୀ ଅନାନଭେ ଶୋଭିତ ଶମଶାନରେ,
କାଦମ୍ବିନୀ ! କାଷ୍ଠାବଳୀରେ ଶତ ଜଳ । କେ ଦଗ୍ଧ ହେବ ଭସ୍ମେ ଆଲୀ ।
ଅନୁଗତା ପଦ୍ମିନୀ ଅନୁରାଗକୁ ଯେନ ଅନୁସରଣେ ଭାନୁମିଳ ଯେ । ୬ ।

(ତ୍ରୟୋଦଶ ଛାନ୍ଦ- କୋ.ବ୍ର.ସୁ)

ଏହି କଳାକୃତ-ଆବିଷ୍କାର ଏକ ପୂର୍ଣ୍ଣାଙ୍ଗ-ଐକ୍ୟ । କବି ନିର୍ବାଚିତ-ଅଂଶ ଗୁଡ଼ିକ ଏକତ୍ର ହୋଇ କାବ୍ୟରେ ଜୈବିକ-ସଂହତ ରକ୍ଷା କରନ୍ତି । ସ୍ୱତଃ ପ୍ରଶ୍ନ ହୁଏ, ଏହି ଐକ୍ୟର ମୌଳିକ ଉତ୍ସ କଣ ? ଏହି ଜୈବିକ-ସଂହତର ଉତ୍ସ ହେଉଛି ଆବେଗ । ପାଠକ ଓ ଶ୍ରୋତା ହୃଦୟରେ ଏହି ଆବେଗ ସୃଷ୍ଟି ହୋଇ ପାରେ ରସ ଘନ ରୂପରେ ପରିଣତ ହୋଇଯାଏ । ମାନବ ଚକ୍ଷୁରେ ପ୍ରକୃତ ଯେପରି ଦୃଷ୍ଟ, କବି ଯଦି ସେହିପରି ତାକୁ ଉପସ୍ଥାପନ କରନ୍ତି, ତାହା ପ୍ରତିଭା ବା ସୌନ୍ଦର୍ଯ୍ୟ ପଦବାଚ୍ୟ ହୁଏନାହିଁ । ପରିଦୃଶ୍ୟମାନ ଜଗତରୁ କାବ୍ୟ-ଉପଯୋଗୀ ଉପାଦାନ ଗୁଡ଼ିକ କବି ଚୟନ କରି ନିଜର ମାନସ ରାଜ୍ୟରେ ଅଙ୍କିତ କରନ୍ତି । ଏହି ପ୍ରତିବିମ୍ବିତ ଉପାଦାନକୁ କବି ଅପୂର୍ବ ଶ୍ରୀ, କଳା ଓ ସୌନ୍ଦର୍ଯ୍ୟରେ ମଣ୍ଡିତ କରି ପ୍ରାକୃତିକ ପଦାର୍ଥ ଅପେକ୍ଷା ଅଧିକ ରମଣୀୟ କରି ଉପସ୍ଥାପନ କରନ୍ତି । ଏହାହିଁ ପ୍ରତିଭା । କବି ବହୁପାଠୀ ଓ ପ୍ରଚଣ୍ଡଧୀଶକ୍ତିର ଅଧିକାରୀ । ଏହି ଭିତ୍ତି ଭୂମି ଉପରେ ସେ କଳାର ଆବିଷ୍କାର ନିମିତ୍ତ ଆପଣାର ସମସ୍ତ ଶକ୍ତି ଓ ପ୍ରତିଭାର ବ୍ୟାପକ ନିୟୋଜନ କରିଥାଆନ୍ତି । ପ୍ରସଙ୍ଗ କ୍ରମେ ବୀରବର ଉପେନ୍ଦ୍ରଙ୍କ ରଚନାକୁ ଲକ୍ଷ୍ୟ କରାଯାଉ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ସୌନ୍ଦର୍ଯ୍ୟ ରୂପକ ସମାଲୋଚକ ଓ ବିଦ୍ୟୁତ୍ତର ରୂପ ଏକ ବୋଲି ବିଗ୍ରହ କରି ହେଉ-ନାହିଁ । କାରଣ ଗଗନ ମଣ୍ଡଳରେ ବିଦ୍ୟୁତ୍ କ୍ଷଣସ୍ଥାୟୀ, ମାତ୍ର ବାଳାର ସୌନ୍ଦର୍ଯ୍ୟ ସ୍ଥାୟୀ । ପୁଣି ରମ୍ଭା ଓ ଉରୁ ଭୂମି ରମ୍ଭା ଦୁହେଁ ଏକ ହେଲେ ମଧ୍ୟ ରମ୍ଭାର ସମଗ୍ର ଅଙ୍ଗ କେବଳ ବାଳାର ଉରୁ ସହିତ ତୁଳିତ ହୋଇପାରେ । ତଥାପି ବାଳାକୁ ଚନ୍ଦ୍ରହାସୀ ଓ ଚନ୍ଦ୍ରମୁଖୀ ବୋଲି କହିବା ଯଥାର୍ଥ ।

"ରୂପକ ଯମକ ବ୍ୟାପକ ବଳେ । କବି କବିତ୍ୱରେ ରକ୍ଷା ପାଇଲେ ।
ଯେବେ କବି କଳ୍ପ କଳ୍ପନା ଥିବ । ଉପମାକୁ ଉପଯୋଗ ହୋଇବ ।" ୧୭ ।

( ଅଷ୍ଟମ ଛାନ୍ଦ )

ଉପମାନର ସଗ୍ରହ ଓ ତାର ବ୍ୟାପକ ଉପଯୋଗ ହିଁ କବିତ୍ୱ । ଏଣୁ ପ୍ରଜ୍ଞା ଓ ପାଣ୍ଡିତ୍ୟ ପାଇଁ କବିଙ୍କର ବହୁଶାସ୍ତ୍ର ଦର୍ଶିତାକୁ ଗ୍ରହଣକରି ନିଆଯାଇଛି । ସେ ବିଭିନ୍ନ ବିଦ୍ୟାରେ ବିଶାରଦ । ସେ ଦର୍ଶନ ଓ ବିଜ୍ଞାନରେ ମଧ୍ୟ ପ୍ରବୀଣ । କେବଳ



Digitized by PPRACHIN, SOA

ସେତିକି ନୁହେଁ, ସେ ନିଜର ପୂର୍ବବର୍ତ୍ତୀ କବି କୃତିମାନଙ୍କରେ ପ୍ରବେଶ କରିଥାନ୍ତି । ଉପେନ୍ଦ୍ର କହନ୍ତି :—

“ଏତି ପରିକୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତ । ବୃଷ୍ଟି ଦୃଷ୍ଟାନ୍ତରେ ଏଥି ଅଛି ବିଶେଷିତ ।
ଯେନ ନୈଷଧ ପରିସ୍ଥେ । ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରିଏ ।” ୩୨ ।

(ଏକାଦଶ ଛାନ୍ଦ)

କେବଳ ସେତିକି ନୁହେଁ, କବି ନିଜ କାବ୍ୟର ନାମ କରଣରେ ମଧ୍ୟ ପୂର୍ବବର୍ତ୍ତୀ କବିଙ୍କର ମାର୍ଗ ଅନୁସରଣ କରିଛନ୍ତି । ସେ ନିଜର କାବ୍ୟକୁ ନାୟିକା ନାମାନୁଯାୟୀ ନାମିତ କରିଛନ୍ତି ।

“କାବ୍ୟରେ ନାୟିକା ସିନା ପ୍ରଧାନ ।
ତାହାକୁ ଯେନ ସବୁ ରସ ମାନ ।
ଏ ଯେନ ଆଗ ତାର ବର୍ଣ୍ଣନା ।
ହେଲା ଏ କବି ପରମ୍ପରା ସିନା ।।”

( ପଦ୍ମାବତୀ ପରିଣୟ-ଲୋକନାଥ )

ଏହି ଗୁଣରୁ କବିଙ୍କୁ ଜଣେ ସାଧାରଣ ମନୀଷୀ ସ୍ତରରୁ ଦାର୍ଶନିକ,ବୈଜ୍ଞାନିକ ସ୍ତରକୁ ଉନ୍ନୀତ କରାଯାଇଥାଏ ।

ଭରତ, ଭାମହ, ବାମନ, ଆନନ୍ଦ ବର୍ଦ୍ଧନ ଓ କୁନ୍ତକଙ୍କୁ ଭାରତୀୟ ଆଲୋଚନାରେ ସାହିତ୍ୟ ତତ୍ତ୍ୱ-ଉଦ୍ଭାବକ-ଆଚାର୍ଯ୍ୟ ଭାବରେ ଗ୍ରହଣ କରାଯାଇଛନ୍ତି । ଏମାନେ ସାହିତ୍ୟାଦର୍ଶ ପ୍ରତିଷ୍ଠା କରିଛନ୍ତି ଓ କାବ୍ୟର ବିବିଧ ମାର୍ଗ ସୂଚାଇଛନ୍ତି । ଏହି ମାର୍ଗ ଗୁଡିକ ହେଲେ :— କାବ୍ୟ ଲକ୍ଷଣ, କାବ୍ୟ-ପ୍ରୟୋଜନ, କାବ୍ୟହେତୁ, କାବ୍ୟଭେଦ, ଶବ୍ଦଶକ୍ତି, ଧ୍ୱନି, ରସ, ଗୁଣୀଭୂତବ୍ୟଙ୍ଗ୍ୟ, ନାଟ୍ୟ ବିଧାନ, ଦୋଷ, ରୀତି, ଅଲଙ୍କାର, ଛନ୍ଦ ଓ ନାୟକ ନାୟିକା ଭେଦ । ଏମାନଙ୍କ ମଧ୍ୟରୁ ଅଲଙ୍କାର, ରୀତି, ଧ୍ୱନି, ବକ୍ରୋକ୍ତି ଓ ରସ ସିଦ୍ଧାନ୍ତ ହିଁ କବି କର୍ମର ଦୁର୍ଲ୍ଲଭ ମାର୍ଗ । ଆପଣାର କାବ୍ୟ ସିଦ୍ଧାନ୍ତ ସମ୍ପର୍କରେ ବୀରବର ଉପେନ୍ଦ୍ର କହନ୍ତି :—

“ସୁମନା ଏ । ପାଞ୍ଚ ଏ ଛାନ୍ଦର ବିଚାର । ନୁହଁଇ ଆନର ପ୍ରକାର ।
କହେ ଉପେନ୍ଦ୍ର ଭଞ୍ଜ ଉତ୍ତମ କବି ପୁଞ୍ଜ ଦୁର୍ଲ୍ଲଭ ମାର୍ଗେ ମୋ ସଞ୍ଚାର ।”୨୮ ।

(ତ୍ରୟୋଦଶ ଛାନ୍ଦ, କୋ. ବ୍ର. ସୁ)

କାବ୍ୟର ବିଭିନ୍ନ କ୍ରମ, କଳ୍ପନା ବିଳାସ ଓ ବିଷୟବସ୍ତୁ ସଂଯୋଜନା ପାଇଁ ଚମତ୍କାର ପ୍ରତିଭା ଲୋଡ଼ା ହୋଇଥାଏ । ଏହି କବି-ପ୍ରତିଭା କାବ୍ୟର ପ୍ରାଣ । ପୂର୍ବ



Digitized by PPRACHIN, SOA

ସୂରମାନେ ଯଥାର୍ଥରେ କହିଛନ୍ତି 'ବକ୍ରୋକ୍ତି କାବ୍ୟମ୍ ଜୀବେତ୍'' । ଅଳଙ୍କାର-ମାନଙ୍କର ପ୍ରତିଷ୍ଠା ପାଇଁ ବକ୍ରୋକ୍ତି ସର୍ବଥା ଆବଶ୍ୟକ :—

''ଧ୍ୱନି କାକୁ-ଭକ୍ତି ରୂପକ ।
ଶ୍ଳେଷ ଲୁପ୍ତବର୍ଣ୍ଣ ଚ୍ୟୁତ ଦତ୍ତାକ୍ଷର ଅନ୍ତର୍ଲାପିକା ଆଦି ତର୍କ ।'' ୩୦ ।
(ଦ୍ୱିତ୍ରିଂଶ ଛାନ୍ଦ, କୋ.ବ୍ର.ସୁ)

ବକ୍ରୋକ୍ତି ସହିତ ଶ୍ଳେଷ ଅଳଙ୍କାର ଏକତ୍ର ସମନ୍ୱିତ ହେଲେ, ପଦ ମାଧୁରୀ ପାଠକ ଓ ଶ୍ରୋତାଙ୍କୁ ବିଶେଷ ଆନନ୍ଦ ପ୍ରଦାନ କରିଥାଏ । ନଗରୀ ବର୍ଣ୍ଣନାରେ ଉପେନ୍ଦ୍ରଙ୍କ ପଦମାଧୁରୀ ଲକ୍ଷ୍ୟ କରନ୍ତୁ :—

''ଉଦ୍ୟାନ ହଟେ କେଉରଳୀ କ ଗଜେ । କଳଶ କୁଚ ଯୋଣି ସ୍ତମ୍ଭ ଭୁଜେ ।
ଶୁଭେ ନାରୀପଦ-ନୂପୁର ବାଦ୍ୟ । ସମ୍ଭବେ ଯହିଁ ଭଲ ଭଲ ପଦ'' । ୧୫ ।
(ଦ୍ୱିତୀୟ ଛାନ୍ଦ, କୋ.ବ୍ର.ସୁ.)

ଏ ପଦରେ ଶ୍ଳେଷାର୍ଥ ସମ୍ବଳିତ ବକ୍ରୋକ୍ତି କବିଙ୍କର ପାଣ୍ଡିତ୍ୟ ଓ ପ୍ରତିଭାର ଉଜ୍ଜ୍ୱଳ ରୂପ ପ୍ରଦାନ କରିଛି ।

ବୀରବର ଉପେନ୍ଦ୍ର ନିଜର ଶବ୍ଦ-ପାଣ୍ଡିତ୍ୟ ସମ୍ପର୍କରେ ଘୋଷଣା କରିଛନ୍ତି :—

''କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସାଗରକୁ ପାର ।''

କାବ୍ୟରେ ଅଳଙ୍କାର ପ୍ରୟୋଗ, ବିଭିନ୍ନ ଭାବ ଓ ଅର୍ଥ ସମ୍ବଳିତ ଶବ୍ଦ ଗୁଚ୍ଛର ପ୍ରୟୋଗକୁ ସ୍ୱାଧୀନତର-ନବଜାଗରଣ କାଳର ସମୀକ୍ଷକଗଣ ମଧ୍ୟ ଗୁରୁତ୍ୱ ପ୍ରଦାନ କରନ୍ତି । ପାଠକ ଓ ଶ୍ରୋତାଗଣ, ସମୀକ୍ଷକ ଓ ସହୃଦୟଗଣ ଏଇ ଅଳଙ୍କାର ଓ ଶବ୍ଦବୈଚିତ୍ର୍ୟର ଗୋଲକ ଧନ୍ଦାରେ ଧନ୍ଦି ହୋଇ, ଅର୍ଥ ହୃଦୟଙ୍ଗମ କରି ଶେଷରେ ମାନସିକ ତୃପ୍ତି ଓ ଆହ୍ଲାଦ ପାଇଥାନ୍ତି । କାବ୍ୟରେ 'ଲୁକ୍କାୟିତ ସୌନ୍ଦର୍ଯ୍ୟ ଓ ଗୋପନୀୟ ସତ୍ୟର ଅନ୍ୱେଷଣ କରି, ବିଦଗ୍ଧଗଣ ସେ ସବୁର ଉଦ୍-ଘାଟନ କରିଥାଆନ୍ତି । ଉପେନ୍ଦ୍ର ତେଣୁ ବାରମ୍ବାର ନିର୍ଦ୍ଦେଶ ଦେଇଛନ୍ତି :—

''ନାନା ଶବ୍ଦରେ ଯେହୁ ବିଚକ୍ଷଣ । ଯେହୁ ଜାଣେ ଅଳଙ୍କାର ଲକ୍ଷଣ ।''

(ତୃତୀୟ ଛାନ୍ଦ)


Digitized by PPRACHIN, SOA

ଯଥା— "ଖଳ ବାଳକରେ ଏ କଥା ପ୍ରସଙ୍ଗ । ତାଙ୍କ ଚିତ୍ତ କାହିଁ ସୁଗୀତେ ସଙ୍ଗ ।
ଯେ କବି ଅର୍ଥୀ ପଣ୍ଡିତ ସୁହୃଦ । ରସିକ ଯେହୁ ଦେଖ ମୋ ଏ ଛାନ୍ଦ ।
ବ୍ୟସ୍ତ ଅଳଙ୍କାର । ମଣ୍ଡନ ବିଧି ନିର୍ଦ୍ଦୋଷ ବିସ୍ତର" ।୦।

(ଦ୍ୱାଦଶ ଛାନ୍ଦ, (କୋ ଃବ୍ରଃ ସୁ.)

ଏମାନେ କବିର କଳା-କର୍ମରୁ ଏକ ପ୍ରକାର ବୌଦ୍ଧିକ-ଆନନ୍ଦ ପାଇଥାନ୍ତି । ଅଳଙ୍କାର ଓ ଶବ୍ଦ ବୈଚିତ୍ର୍ୟର ଦୁରୂହ ସୋପାନକୁ ଅତିକ୍ରମ କରିଗଲେ କାବ୍ୟ-କୃତିର ଯଥାର୍ଥ ମୂଲ୍ୟାଙ୍କନ କରିଯାଇ ପାରିବ । ଏଥିପାଇଁ ପାଠକ ଓ ଶ୍ରୋତାଙ୍କର କାବ୍ୟାନୁରକ୍ତି, କବିଙ୍କ ପ୍ରତି ଆନ୍ତରିକତା, ଆପଣାର ବୁଦ୍ଧି ଅନୁଶୀଳନରେ ଆବେଗ, ସର୍ବୋପରି ସୌନ୍ଦର୍ଯ୍ୟ-ପ୍ରୀତି ଓ ସ୍ୱାଧୀନ ଚିନ୍ତା ଲୋଡ଼ା ହୋଇଥାଏ । ପୁଣି କବି-କୃତିର ବିଭିନ୍ନ ବ୍ୟାଖ୍ୟା-କୌଶଳ ପାଠକଙ୍କର ରସଗ୍ରାହିତାର ମଧ୍ୟ ଏକ ଉପାୟ । ପାଠକ ବା ଶ୍ରୋତା ଏହି କାବ୍ୟ-ପାଠରୁ ଯେଉଁ ବୌଦ୍ଧିକ ଆନନ୍ଦ ଲାଭ କରେ, ତାହା ଶାରୀରିକ ଆବେଗ ବା ଇନ୍ଦ୍ରିୟ-ଉଲ୍ଲାସ-ଲବ୍‌ଧ-ସୁଖ ଠାରୁ ମୁକ୍ତ । ଏହି ମୌଳିକ ବୌଦ୍ଧିକ ଆନନ୍ଦ ସମ୍ପୂର୍ଣ୍ଣରୂପେ ଆତ୍ମାର କାର୍ଯ୍ୟ । ଉଦାସୀନ ବା ନିରୁଦ୍‌ବେଗୀ ବ୍ୟକ୍ତିମାନେ ମଧ୍ୟ ଏହାକୁ ଅସ୍ୱୀକାର କରିପାରିବେ ନାହିଁ ।

ରୁଚି ଅନୁଯାୟୀ ପାଠକ ଓ ଶ୍ରୋତାମାନଙ୍କ ହୃଦୟରେ ବିଶେଷ ବିଶେଷ ପ୍ରକାରର ପ୍ରାକୃତିକ ଓ କଳା-କୃତି ସୌନ୍ଦର୍ଯ୍ୟ ପାଇଁ ଶ୍ରଦ୍ଧା ସୃଷ୍ଟି ହୋଇଥାଏ । ବାହ୍ୟ କାରଣରୁ ମନକୁ ମୁକ୍ତ ରଖି କେବଳ ଦୃଶ୍ୟ ଓ ଶ୍ରାବ୍ୟ ସୌନ୍ଦର୍ଯ୍ୟ ପ୍ରତି ମନୋନିବେଶ କରିବାହିଁ ନାନ୍ଦନିକ ଅନୁଭୂତିର ପ୍ରଥମ ସୋପାନ । ମନୁଷ୍ୟ ମନରେ ନିମ୍ନତମ ବିଭାଗ ଦ୍ୱାରା ବସ୍ତୁର ଯେଉଁ ପ୍ରତିବିମ୍ବ ଅଙ୍କିତ ହୁଏ କିମ୍ବା ପ୍ରତୀକ ସାହାଯ୍ୟରେ ଯେଉଁ ଅନୁଭୂତି ସୃଷ୍ଟି ହୁଏ, ତାହା ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଆଦୌ ସତ୍ୟ ନୁହେଁ । ଏଣୁ ଆର୍କିଟାଇପ୍, ସ୍ୱରୂପ ଓ ବସ୍ତୁର ଅନ୍ତରାଳରେ ରହିଥିବା ସଂହତିକୁ ଉନ୍ନିତ କରାଇବା ହିଁ, ଏହାର ଦ୍ୱିତୀୟ ସୋପାନ ।

ବୌଦ୍ଧିକ, ନୈତିକ ଓ ନାନ୍ଦନିକ ପ୍ରଭୃତି ବିଭିନ୍ନ ଦୃଷ୍ଟିକୋଣରୁ ସୌନ୍ଦର୍ଯ୍ୟ ପ୍ରୀତି, ସ୍ନେହ ପ୍ରବଣତା ଓ ପ୍ରେମଦ୍ୱାରା ଏହାର ଉତ୍ତମ ଅନୁଭବ ସମ୍ଭବ । କୌଣସି ସୌନ୍ଦର୍ଯ୍ୟକୁ ଅନୁଭବ କରିବାକୁ ହେଲେ, ତାର ଅନ୍ତରାଳରେ ଥିବା ନିୟନ୍ତ୍ରକ-ନୀତିଚୟ, ଶୃଙ୍ଖଳା ପରିଚାଳକ ଓ ସ୍ୱରୂପ ପ୍ରଦାନକାରୀ ଶକ୍ତିକୁ ପ୍ରଥମେ ଜାଣିବାକୁ ହୋଇଥାଏ । ଏଣୁ ଇନ୍ଦ୍ରିୟାତୀତ ହୋଇ ବୌଦ୍ଧିକ ସ୍ତରରେ ସେହି ନିୟନ୍ତ୍ରଣକାରୀ ନୀତିଚୟର ଅନ୍ୱେଷଣ କରିବାକୁ ହେବ । କବିବର ଉପେନ୍ଦ୍ର



Digitized by PPRACHIN, SOA

ଅନ୍ୟାନ୍ୟ ଋଶିଷ୍ଟ କବି ଓ ବୈଜ୍ଞାନିକଙ୍କ ପରି ଏହି ଉପାୟରେ ସୌନ୍ଦର୍ଯ୍ୟର ସନ୍ଧାନ କରିଛନ୍ତି ।

କବିତା ପାଣ୍ଡିତ୍ୟର ପରିଣତ ବା ଫଳ ନୁହେଁ, ବରଂ ମନର ଏକ ମହନୀୟ ଅବଦାନ । ଆହ୍ଲାଦ-ଦାୟକ-ମୌଳିକ ଚିନ୍ତାଧାରା ସମ୍ପନ୍ନ କବିମାନେ ଚମତ୍କାର ଭାଷା ଓ ଉତ୍ତମ ଶୈଳୀ ମାଧ୍ୟମରେ ଏହାକୁ ଉପସ୍ଥାପନ କରିଥାଆନ୍ତି । କବିତା ରଚନାର କଳା ସମ୍ବନ୍ଧରେ ସେମାନେ ଅଜ୍ଞାତ ରହିଥିଲେ ବି, ତଥାପି ସେମାନେ ଉତ୍ତମ କବି ପଦବାଚ୍ୟ ହୋଇଥାଆନ୍ତି । ବୀରବର ଉପେନ୍ଦ୍ରଙ୍କର ପାଣ୍ଡିତ୍ୟ ଥିଲା । ମୌଳିକ ଚିନ୍ତାଧାରା, ଚମତ୍କାର ଭାଷା ବିନ୍ୟାସ, ଶୈଳୀର ସ୍ୱାତନ୍ତ୍ରତାର ପାଟବ ଓ କବିତା-ରଚନା-କଳା ସୂତ୍ର ସହିତ ସେ ପରିଚିତ ଥିଲେ । ସେ ନିଜର ପୂର୍ବ ପୁରୁଷଙ୍କ କବିତ୍ୱର ସୁଯୋଗ୍ୟ ଉତ୍ତରାଧିକାରୀ ।

ନାନ୍ଦନିକ ଅନୁଭୂତି କହିଲେ ସ୍ୱାଧୀନ କଳ୍ପନା ସୃଷ୍ଟିକାରୀ ଦୃଶ୍ୟ ବା ପାଠରୁ ଯେ କୌଣସି ଇନ୍ଦ୍ରିୟ ଉତ୍ତେଜିତ-କାରୀ ବୌଦ୍ଧିକ ଆନନ୍ଦକୁ ହିଁ ବୁଝାଏ । ଏହି ବୌଦ୍ଧିକ ଆନନ୍ଦକୁ ତିନିଭାଗରେ ବିଭକ୍ତ କରାଯାଇପାରେ । ଯଥା (i) ବୌଦ୍ଧିକ ଆନନ୍ଦ, (ii) ବୌଦ୍ଧିକ ଆନନ୍ଦର ସହଚର ଭାବରେ ରହୁଥିବା ଇନ୍ଦ୍ରିୟଗଣ ଓ (iii) କାବ୍ୟରେ ବ୍ୟବହୃତ ଶବ୍ଦମାନଙ୍କର ଶକ୍ତି । ପାଠକମାନଙ୍କ ନିକଟରେ ଉପସ୍ଥାପିତ ବିଭିନ୍ନ ପଦାର୍ଥମାନଙ୍କର ବୈଷମ୍ୟ ଯୋଗୁଁ ସେମାନଙ୍କ ମଧ୍ୟରେ ବିଭିନ୍ନ ଇନ୍ଦ୍ରିୟମାନଙ୍କର ଉତ୍ତେଜିତ ଅବସ୍ଥାରୁ ଲାଭ ହେଉଥିବା ଆନନ୍ଦ ହିଁ ବୌଦ୍ଧିକ ଆନନ୍ଦ ଭାବରେ ଗୃହୀତ । ଏହି ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ଯେଉଁ ପର୍ଯ୍ୟନ୍ତ ଶରୀର ସହିତ ଆତ୍ମା ସଂଶ୍ଳିଷ୍ଟ ରହିଛି, ବୌଦ୍ଧିକ ଆନନ୍ଦ ଆତ୍ମାକୁ ନିରୋଳା ଆହ୍ଲାଦ ପ୍ରଦାନ କରୁଥିଲା ବେଳେ, ଶରୀର ମଧ୍ୟ କିଛିଟା ସୁଖ ଲାଭ କରିଥାଏ । ଏହି ଶାରୀରିକ ସୁଖ ଇନ୍ଦ୍ରିୟଗ୍ରାହ୍ୟ ସୌନ୍ଦର୍ଯ୍ୟର ବହିର୍ପ୍ରକାଶ ମାତ୍ର । ବୌଦ୍ଧିକ ଆନନ୍ଦ ମାନବର ମସ୍ତିଷ୍କକୁ ପରିଚାଳିତ କଲାବେଳେ ଏବଂ ମନରେ କିଛିଟା ଅସ୍ପଷ୍ଟ ଧାରଣା ଦେଲାବେଳେ, ତାହା ଶରୀରର ଦାଶବ ପ୍ରବୃତ୍ତିକୁ ଚହଲାଇଦେଇ ଇନ୍ଦ୍ରିୟଗ୍ରାହ୍ୟ ଆନନ୍ଦ ପ୍ରକାଶ କରାଇଥାଏ । କଥିତ ବା ଲିଖିତ ଶବ୍ଦଗୁଡ଼ିକ ଶ୍ରୋତା ବା ପାଠକ ମନରେ ବିଭିନ୍ନ ଧାରଣା ବା ଆବେଗ ସୃଷ୍ଟି କରନ୍ତି । ଏଠାରେ ସୂଚାଇ ଦେବା ଉଚିତ ମନେକରୁଛୁ ଯେ ଶବ୍ଦର ପ୍ରତ୍ୟେକ ଅକ୍ଷରର ଉଚ୍ଚାରଣ ନୁହେଁ, ସମଗ୍ର ଶବ୍ଦର ଉଚ୍ଚାରଣ ମଣିଷର ଜ୍ଞାନ ରାଜ୍ୟରେ ଭାବର ଯେଉଁ ପ୍ରତିବିମ୍ବ ସୃଷ୍ଟି କରେ, ତାହା ହିଁ ଏଠାରେ ଆଲୋଚନା କରାଯାଉଛି । କେତେକ ଶବ୍ଦ ଉଚ୍ଚାରିତ ହେଲେ ଶ୍ରୋତା ମନରେ କ୍ରୋଧ, ଦୁଃଖାନୁଭୂତି କିମ୍ବା ଉତ୍ତେଜନା ସୃଷ୍ଟି ହୁଏ, ଆଉ କେତେକ ଶବ୍ଦ ଏହାର ବିପରୀତ ଆବେଗ ସୃଷ୍ଟି କରିଥାଆନ୍ତି । ପ୍ରକୃତ ଘଟଣା ପରି ଭାଷାଗତ



Digitized by PPRACHIN, SOA

ଉପସ୍ଥାପନ ପାଠକ ବା ଶ୍ରୋତା ମନରେ ତତ୍କ୍ଷଣାତ୍ ଭାବନା ଓ ଆବେଗର ଉଦ୍ଭବ କରାଇପାରେ । ଶବ୍ଦର ଏହି ଶକ୍ତିକୁ ଆନନ୍ଦବର୍ଦ୍ଧନ ସ୍ୱୀକାର କରି,ଏହାକୁ 'ଅସମ୍ଲକ୍ଷ୍ୟ କର୍ମ' ଧ୍ୱନିର ଅବଧାରଣାରେ ପ୍ରକାଶ କରିଛନ୍ତି ।

ଶ୍ରୋତା ମନରେ ସୌନ୍ଦର୍ଯ୍ୟ ବା ଭକ୍ତି ଆଧାରିତ ଉତ୍ତେଜନା ଓ ଆବେଗ ସୃଷ୍ଟି କରୁଥିବା ଶବ୍ଦମାନଙ୍କୁ ତିନିଭାଗରେ ବିଭକ୍ତ କରାଯାଇପାରେ । ଯଥା— (କ) ସମୁଦାୟ ଶବ୍ଦସମୂହ— ସାଧାରଣ ଧାରଣା ସୃଷ୍ଟିକାରୀ ଶବ୍ଦାବଳୀ । (ଖ) ସାଧାରଣ-ଗୂଢ଼ ଶବ୍ଦାବଳୀ— ପରମ୍ପରା ଅନୁଯାୟୀ ଗୋଟିଏ ପୂର୍ଣ୍ଣ, ସରଳ ଭାବନାକୁ ବା ସମୁଦାୟ ମନୋଭାବ ପ୍ରକାଶ କରୁଥିବା ଶବ୍ଦସମୂହ । (ଗ) ଯୌଗିକ-ଗୂଢ଼-ଶବ୍ଦାବଳୀ— କବି ନିର୍ବାଚିତ ଉତ୍ତମ ଓ ଉପାଦେୟ ଶବ୍ଦାବଳୀରେ ଛନ୍ଦୋ-ବଦ୍ଧ ରଚନା ହୋଇଛି କବିତା । ଏହି କବିତା ନିଜ ମାଧ୍ୟମରେ ଆବେଗର ଉପସ୍ଥାପନ କରିଥାଏ । ଅନ୍ୟ ଯେ କୌଣସି କଳା ଅପେକ୍ଷା କବିତା ବିଦଗ୍ଧ ପାଠକ ମନର ଗଭୀର-ତମ ପ୍ରଦେଶରେ ବିଶ୍ୱାସ ସୃଷ୍ଟି କରେ । ମନୁଷ୍ୟ ଏପରି ଅନେକ ଶବ୍ଦର ବ୍ୟବହାର କରେ ଯାହା ଆଦୌ ବାସ୍ତବ ନୁହେଁ । ଉପେନ୍ଦ୍ର ଏପରି ଶବ୍ଦଗୁଡ଼ିକର ପ୍ରୟୋଗ କରି ପାଠକ ଓ ଶ୍ରୋତା ମନରେ ସେହି ସେହି ଭାବ ସୃଷ୍ଟି କରିପାରିଛନ୍ତି । ଏହି ଭାବ ଗୁଡ଼ିକ କେବଳ କଳ୍ପନାରେ ସମ୍ଭବ । ଉପେନ୍ଦ୍ର ପାଠକ ଓ ଶ୍ରୋତାଙ୍କୁ ବାସ୍ତବ ସଂସାରରୁ କଳ୍ପନା ରାଜ୍ୟକୁ ନେଇଯାଇଛନ୍ତି :—

"କଣ୍ଠ ଶଙ୍ଖଜିତ ମନ୍ଦର ତାଡ଼ନ ବରାହବର ଅଭୀତ ।
ଯେ ନର-କେଶରୀ ବଳୀଧ୍ୱଂସୀ ତେଜେ ସହସ୍ରକର ବିଦିତ ।
ରେ ସହି । ମୂର୍ତ୍ତି ରାମ ବଳ ଖ୍ୟାତ ମହୀ ।
ବୁଧ ଗୁଣେ ଚନ୍ଦ୍ରହାସେ ଶୋହି । ବିଷ୍ଣୁ ଦଶ ରୂପ ଏକେ ବହି ।" ୧୮ ।
(ଷୋଡ଼ଶ ଛାନ୍ଦ- କୋ·ବ୍ର·ସୁ)

ନାୟକ ପୁଷ୍ପକେତୁ ଠାରେ ବିଷ୍ଣୁ ରୂପର ଆରୋପ କରାଯାଇଛି । ବିଷ୍ଣୁ ଓ ତାଙ୍କର ଦଶରୂପ ମିଥ୍ ଓ ଏଗୁଡ଼ିକ କଳ୍ପିତ ରୂପ ।

ଯାଦୁକର ପରି କବି ଶବ୍ଦର ମାୟାଜାଲ ସୃଷ୍ଟି କରେ । ଶବ୍ଦ ବିନ୍ୟାସର ସାବଲୀଳ ଚମତ୍କାର ଅଙ୍ଗ ସଜ୍ଜା ଓ ପରିବେଷଣ ପରିପାଟୀ ଏପରି ଏକନିର୍ବାଚିତ ପରିବେଶ ସୃଷ୍ଟି କରେ ଯେ ତାହା ସାଧାରଣ ସହଜ ପଦାର୍ଥଟିକୁ ଅଧିକ ସରସ, ଶକ୍ତିଶାଳୀ,ପ୍ରାଣବନ୍ତ ଓ ସୁଷମା ମଣ୍ଡିତ କରିଦିଏ । ଉପେନ୍ଦ୍ର ସମଗ୍ର ଓଡ଼ିଆ କାବ୍ୟ-ସାହିତ୍ୟରେ ଶବ୍ଦ ଚୟନ, ବିଚଳନ ଓ ପ୍ରୟୋଗରେ ଶ୍ରେଷ୍ଠ ପ୍ରତିଭାଧର କବି । ସେ କହନ୍ତି :—



Digitized by PPRACHIN, SOA

“ସ କବି ରଚନେ ନଷ୍ଟ ନିକାଲେ ଛନ୍ଦେ ।
ବସୁଦେବ ତୋଷଦାତା ଉପେନ୍ଦ୍ର ବନ୍ଦେ ।୨୯।
ବିଖ୍ୟାତ ରସରେ ଇଚ୍ଛି ନୂପ୍ତ ବର୍ଣ୍ଣର ।
ସୁମନରେ ମୋଦେ ତନ ଛନ୍ଦ ବତ୍ସର ।” ୩୦ ।

[ପଞ୍ଚବିଂଶ ଛନ୍ଦ, କୋ.ବ୍ର.ସୁ]

ଏହି ଛନ୍ଦଟିରେ ସେ ଅନନ୍ୟ ସାଧାରଣ କୃତିତ୍ୱ ପ୍ରଦର୍ଶାଇଛନ୍ତି । ଶବ୍ଦ ସଂଚୟନ, ସଂଯୋଜନା ଓ ସଂଚାଳନରେ ସେ ଅପ୍ରତିଦ୍ୱନ୍ଦୀ । ଏହି ଛନ୍ଦର ରାଗ ଚିନ୍ତା ଦେଶାକ୍ଷ ଏବଂ ବର୍ଷାଋତୁ ବର୍ଣ୍ଣନା ପାଇ ଉଦ୍ଦିଷ୍ଟ । ଉଦାହରଣ ସ୍ୱରୂପ :—

“କେକୀର ସଂଗୀତରେ କାମୁକ ଉଲ୍ଲାସ । ଧରମଣି ଆଚ୍ଛାଦନେ ଘନ ବିଳାସ ।୩।
ନୀପବନ ସୁଖଦାନ କର ରଭସେ । ଦ୍ୟୋକରଣ୍ଠ ମସୃଣ ଯେ ଝିଲ୍ଲିକା ବସେ ।୪।”

ଅର୍ଥହେବ— ମୟୂର ସଂଗୀତରେ କାମୀ ପୁରୁଷମାନେ ଆନନ୍ଦିତ ହେଲେ । ମେଘ ପର୍ବତମାନଙ୍କୁ ଆଚ୍ଛାଦନ କଲେ । କଦମ୍ବ ପ୍ରସ୍ଫୁଟିତ ହୋଇ ଆନନ୍ଦ ବର୍ଦ୍ଧନ କଲେ । ଝୃତକର ଧ୍ୱନି ମଧୁରତର ହେଲା । ଖଦ୍ୟୋତ ବୃକ୍ଷମାନଙ୍କରେ ବସି ରହିଲେ । ଉପର୍ଯ୍ୟୁକ୍ତ ପଦଦ୍ୱୟର ପ୍ରତ୍ୟେକ ପାଦର ପ୍ରଥମ ଅକ୍ଷରକୁ ବାଦଦେଲେ ହେବ :—

“କୀର ସଂଗୀତରେ କାମୁକ ଉଲ୍ଲାସ । ରମଣୀ ଆଚ୍ଛାଦନେ ଘନ ବିଳାସ ।୩।
ପବନ ସୁଖ ଦାନ କର ରଭସେ । କରଣ୍ଠ ମସୃଣ ଯେ ଝିଲ୍ଲିକା ବସେ” ।୪।

କାର୍ଣ୍ଣିକାମୋଦୀ ରାଗରେ ଏହା ଗେୟ । ଏହା ଶୀତଋତୁର ବର୍ଣ୍ଣନା । ଏହାର ଅର୍ଥ ହେବ :—

ଶୁଆର ସଂଗୀତ ଶୁଣି କାମୀ ପୁରୁଷମାନେ ଉଲ୍ଲସିତ ହୋଇ ରମଣୀମାନଙ୍କ ସହିତ ଶୀତ ବସ୍ତ୍ର ଆଚ୍ଛାଦିତ ହୋଇ, ନିବିଡ ଭାବରେ ବିଳାସ କଲେ । ଶୀତଳ ବାୟୁ ନିମିତ୍ତକରେ ସୁଖ ଖଣ୍ଡନ କଲା । କାକମାନେ ଟିକ୍ କଣ ଦେଖାଗଲେ । ପୁଣି ଏହି ପଦଦ୍ୱୟରୁ ପ୍ରତ୍ୟେକ ପାଦରୁ ପ୍ରଥମ ଅକ୍ଷର ଦ୍ୱୟକୁ ତ୍ୟାଗ କରି ଗାନ କଲେ, ରାଗ ହେବ ମାଳବଗଉଡ—

“ରସ ଗୀତରେ କାମୁକ ଉଲ୍ଲାସ । ମଣି ଆଚ୍ଛାଦନେ ଘନ ବିଳାସ ।୩।
ବନ ସୁଖ ଦାନକର ରଭସେ । ରଣ୍ଠ ମସୃଣ ଯେ ଝିଲ୍ଲିକା ବସେ” ।୪।

ଏହି ପଦଦ୍ୱୟ ଗ୍ରୀଷ୍ମ ବର୍ଣ୍ଣନା ଅର୍ଥରେ ପ୍ରଯୁକ୍ତ । କାମୁକମାନେ ରସ ଗୀତରେ ଉଲ୍ଲସିତ ହେଲେ । ସେମାନେ ଅଧିକ ଶୀତଳ ମଣିହାର ପରିଧାନ କରି



Digitized by PPRACHIN, SOA

ବିଳାସ କଲେ । ବନ ବିହାର କ୍ଷଣକେ ସୁଖଦାନ କାରକ ହେଲେ । ଝିଙ୍କାରର ସ୍ୱର ମୂର୍ଚ୍ଛନା ଚତୁର୍ଦ୍ଦିଗରେ ସମାନ ଭାବରେ ଶୁଣାଗଲା ।

କାବ୍ୟରେ ବ୍ୟବହୃତ ଶବ୍ଦର ତ୍ରିବିଧ ଶକ୍ତି ରହିଥାଏ । ଯଥା— ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା । ଅଭିଧାନ ମାହାତ୍ମ୍ୟରେ ଶବ୍ଦର ଯେଉଁ ଅର୍ଥ ପ୍ରତୀତ ହୁଏ, ତେବେ ତାହା ଅଭିଧା ଶକ୍ତିରୁ ଉତ୍‌ପ୍ରେରିତ ଅର୍ଥ ବୋଲି ଗ୍ରହଣ କରାଯାଏ । ପଦର ମୁଖ୍ୟ ଅର୍ଥ ବାଧାପ୍ରାପ୍ତ ହୋଇ ଆରୋପିତ ଶକ୍ତି ଦ୍ୱାରା ରୂଢ଼ି ପ୍ରୟୋଜନରୁ ଅନ୍ୟ ଯେଉଁ ସମୀଚୀନ ଅର୍ଥ ପ୍ରକାଶିତ ହୁଏ, ତାହା ଲକ୍ଷଣା ଶକ୍ତିର କ୍ରିୟା ସେହିପରି ଯେଉଁଠାରେ ମୁଖ୍ୟ ବା ଲକ୍ଷ୍ୟାର୍ଥ ବାଧାପ୍ରାପ୍ତ ହୋଇ ଅନ୍ୟ ଶକ୍ତି ଦ୍ୱାରା ପଦର ସୂକ୍ଷ୍ମାର୍ଥ ପ୍ରକାଶିତ ହୁଏ, ତାହା ବ୍ୟଙ୍ଗ୍ୟାର୍ଥ । କାବ୍ୟରେ ଅଧିକାଂଶ ସ୍ଥଳରେ କବି ଆପଣାର ବହୁପାଠିତାର ପରିଚୟ ଦେଇ, ପ୍ରତିଭାର ଚମତ୍କାରିତ୍ୱ ଆଲେଖ୍ୟ ଅଙ୍କନ କରିବା ପାଇଁ ଅଭିଧାର୍ଥ ନୁହେଁ; ଲକ୍ଷ୍ୟାର୍ଥ ଓ ବ୍ୟଙ୍ଗ୍ୟାର୍ଥର ପ୍ରୟୋଗ କରିଥାନ୍ତି । ଓଡ଼ିଆ କାବ୍ୟ ପରଂପରାରେ ଉପେନ୍ଦ୍ରଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'କାବ୍ୟ ଏ ଦିଗରେ କବି-ଶିକ୍ଷା-କର୍ମ ପାଇଁ ଉଦ୍ଦିଷ୍ଟ ବୋଲି କହିବା ଯଥାର୍ଥ ।

ନାନ୍ଦନିକ ସୌନ୍ଦର୍ଯ୍ୟ ପ୍ରସଙ୍ଗରେ, ପ୍ରତିବିମ୍ବକୁ ଦୁଇଟି ଦୃଷ୍ଟିରୁ ସ୍ୱୀକାର କରାଯାଏ । ଯଥା— ମନୁସ୍ୱ ଓ ତନ୍ମୟ ମାଧୁର୍ଯ୍ୟ । ତନ୍ମୟ-ମାଧୁରୀ ବୃଦ୍ଧିରେ ପ୍ରତିବିମ୍ବିତ ସଙ୍ଗୀତ ମୂର୍ଚ୍ଛନାରୁ ସୃଷ୍ଟ । ମନୁଷ୍ୟ ସ୍ୱପ୍ନ ଓ କଳ୍ପନାଲୋକରେ ଲାଭ କରୁଥିବା ସୌନ୍ଦର୍ଯ୍ୟର ସମଧର୍ମା ହେଉଛି ଏଇ ତନ୍ମୟ-ମାଧୁରୀ । ବୃଦ୍ଧିରେ ପ୍ରତିବିମ୍ବିତ ମୂର୍ଚ୍ଛନାର ମୋହନ ମାଧୁରୀ ଅଚେତନ ମନର ସ୍ମରଣ ଶକ୍ତି ଓ କଳ୍ପନା ଶକ୍ତି ଉପରେ ନିର୍ଭର କରେ । ଚେତନ ମନର ସଂକୀର୍ଣ୍ଣତାରୁ ଏହି ପ୍ରତିବିମ୍ବ ସମ୍ପୂର୍ଣ୍ଣ ପୃଥକ ଅଟେ । ଆତ୍ମ-ଜ୍ଞାନ ମନୁଷ୍ୟର ବ୍ୟକ୍ତି ସତ୍ତାକୁ ଉଜ୍ଜୀବିତ କରେ । ଅନ୍ତର-କର୍ଣ୍ଣ ମଧ୍ୟରେ ଏହା ବ୍ୟକ୍ତି ସତ୍ତାକୁ ସୀମିତ କରିଦିଏ । ଏଣୁ ବ୍ୟକ୍ତିସତ୍ତା ଯେତେବେଳେ ସମସ୍ତ ସଂକୀର୍ଣ୍ଣତାରୁ ମୁକ୍ତ ହୋଇଯାଏ, ଶ୍ରୋତା ହୋଇଯାଏ ନୈର୍ବ୍ୟକ୍ତିକ । ଏହା ଅନ୍ତରଣ-କର୍ଣ୍ଣକୁ ଅତିକ୍ରମ କରିଯାଇ ସଜ୍ଞାନ ସ୍ତରକୁ ଉନ୍ନୀତ ହୋଇଯାଏ । ଯେତେବେଳେ ପ୍ରତିବିମ୍ବ ଦିବ୍ୟାନନ୍ଦରେ ପରିଣତ ହୋଇଯାଏ, ବ୍ୟକ୍ତି ସତ୍ତା ଅଲୌକିକ ଇନ୍ଦ୍ରିୟାତୀତ ସତ୍ତାରେ ନିମଜ୍ଜିତ ହୋଇଯାଏ । ଏଣୁ ରେଚନ-ସ୍ତରରେ (Katharsis-stage) ସଙ୍ଗୀତ ଅନୁଭୂତି ଓ ସଙ୍ଗୀତ ମୂର୍ଚ୍ଛନା ନୈର୍ବ୍ୟକ୍ତିକ-ସତ୍ତାରେ-ପ୍ରତିବିମ୍ବିତ-ସ୍ୱରଲୟ ସମଧର୍ମୀ ହୋଇଯାନ୍ତି ।

ସୁଖ ଓ ଦୁଃଖ ଅନୁଭୂତିରେ ପ୍ରତିବିମ୍ବିତ ସ୍ୱର ମୂର୍ଚ୍ଛନାରୁ ସଙ୍ଗୀତକୁ ବିସ୍ତୃତ କରିବାକୁ ହୋଇଥାଏ । ବ୍ୟକ୍ତିଗତ ଅନୁଭୂତି ସଙ୍ଗୀତ-ଉପସ୍ଥାପିତ-ଅନୁଭୂତିର



Digitized by PPRACHIN, SOA

ଭିତ୍ତିଭୂମି ଉପରେ ପର୍ଯ୍ୟବସିତ। ସ୍ମରଣ ଶକ୍ତି ଓ କଳ୍ପନା ଏଥିରେ ବଡ଼ ବେଶି ଉପାଦେୟ ଭୂମିକା ଗ୍ରହଣ କରନ୍ତି । ହୃଦୟରେ ପ୍ରତିଧ୍ୱନିତ ଏହି ସ୍ୱର ମୂର୍ଚ୍ଛନା କ୍ଷଣସ୍ଥାୟୀ ଓ ଉଦ୍ଦେଶ୍ୟ-ପୂର୍ଣ୍ଣ ହୋଇଥିବାରୁ ଅସତ୍ୟ ଅଟେ । ସୌନ୍ଦର୍ଯ୍ୟ ପରିବେଷଣ-କାରୀ ଉପାଦାନମାନଙ୍କ ମଧ୍ୟରେ, କାବ୍ୟର ନିକଟତମ ଉପାଦାନ ହେଉଛି ସଂଗୀତ । କାବ୍ୟ ଛନ୍ଦୋବଦ୍ଧ ରଚନା ବୋଲି ସଂଗୀତ ପ୍ରଥମରୁ ସ୍ୱୀକାର କରି ନେଇଛି । ଶ୍ରବଣେନ୍ଦ୍ରିୟକୁ, ଉଭୟ ସଂଗୀତ ଓ କାବ୍ୟ ଧ୍ୱନି ଓ ସ୍ୱର ମୂର୍ଚ୍ଛନା ମାଧ୍ୟମରେ ଆନନ୍ଦ ପ୍ରଦାନ କରିଥାଆନ୍ତି । ସଂଗୀତକୁ ଗାନ ଓ ଉପଭୋଗ କରିବା ପାଇଁ ଯେପରି ମୁଖ ଓ କର୍ଣ୍ଣ ଆବଶ୍ୟକ, କାବ୍ୟରେ ସୌନ୍ଦର୍ଯ୍ୟ ପ୍ରକାଶ କରିବାପାଇଁ ସେହିପରି ନୟନ ଓ ମୁଖ ଲୋଡ଼ା ହୋଇଥାନ୍ତି । ଅର୍ଥାତ ସଙ୍ଗୀତ,ସାହିତ୍ୟ ଓ ସୌନ୍ଦର୍ଯ୍ୟ ପ୍ରକାଶ ଓ ଉପଭୋଗ ଓ ପ୍ରକାଶ କରିବା ପାଇଁ ନୟନ, କର୍ଣ୍ଣ ଓ ମୁଖ ହେଉଛନ୍ତି ନାନ୍ଦନିକ ମାଧ୍ୟମ । ବଡ଼ ଚମତ୍କାର ଭାବରେ ଉପେନ୍ଦ୍ର କହିଛନ୍ତି :—

"ମୁଖ କର୍ଣ୍ଣ ନୟନ ଜାଣିମେ ଏହା ସ୍ୱାଦୁ ।
ପାକେ ପିତା ନୋହେ ତାର ତେଜ ପରସାଦୁ ଯେ ।" ୫୩ ।

[ଏକବିଂଶ ଛାନ୍ଦ, କୋ.ବ୍ର.ସୁ]

କାବ୍ୟକୁ ବିଭିନ୍ନ ରାଗରାଗିଣୀରେ ରଚନା କରାଯାଇଥାଏ । ପଦବିନ୍ୟାସ ଓ ଘାତପାତ ଅନୁଯାୟୀ ଏଥିରେ ତାଳ ସଂଯୋଜନା କରାଯାଇଥାଏ । ନିଃଶ୍ୱାସ ତ୍ୟାଗ ଓ ପ୍ରଶ୍ୱାସ ଗ୍ରହଣ, ଶ୍ୱାସଘାତ ଓ ବଳାଘାତ ଉପରେ ନିର୍ଭର କରେ । ସଂଗୀତରେ ଏହା ଘାତପାତ ଓ ତାଳର ଭିତ୍ତିଭୂମି ଉପରେ ଅବସ୍ଥାନ କରନ୍ତି । ସଂଗୀତ କବିତାର ଅର୍ଥ, ଧ୍ୱନିଗତ ମହତ୍ତ୍ୱ କିମ୍ବା ବର୍ଣ୍ଣମାନଙ୍କର ମାଧୁର୍ଯ୍ୟ ସହିତ ସମ୍ବନ୍ଧାନ୍ୱିତ ନୁହେଁ । ଭରତ କହନ୍ତି ଯେ ସୌନ୍ଦର୍ଯ୍ୟ ବିହୀନ କବିତାର ଛନ୍ଦୋବଦ୍ଧ ପଦାବଳୀରେ ବରଂ ସ୍ୱର ସଂଯୋଜନା କରାଯାଇପାରେ । ଏଣୁ ସଂଗୀତ କବିତାରେ କଳ୍ପନାର ସୌନ୍ଦର୍ଯ୍ୟ ସହିତ ସମ୍ବନ୍ଧାନ୍ୱିତ । ଏଠାରେ ସ୍ମର୍ତ୍ତବ୍ୟ ଯେ ସଂଗୀତ କେବଳ ଶ୍ରୁତି-ମଧୁର ହେବା ପାଇଁ ଉଦ୍ଦିଷ୍ଟ ହେବା ବିଧେୟ ନୁହେଁ । ଏହାର ମୌଳିକ ଲକ୍ଷ୍ୟ ଶ୍ରୋତା ହୃଦୟରେ ଆବେଗ ଓ ନାନ୍ଦନିକ ବିଭବର ଉଦ୍ରେକ କରାଇବା ।

ମନୁଷ୍ୟର ବାକ୍‌ଯନ୍ତ୍ର ଦ୍ୱାରା ଉଚ୍ଚାରିତ ଧ୍ୱନି ସମୂହ କବିତାର ବ୍ୟବହୃତ ପଦ ବା ଭାବନାର ପ୍ରତୀକ । ଏହି ପ୍ରତୀକ ସମୂହ ତନ୍ମଧ୍ୟସ୍ଥ ବାହ୍ୟାଧାରିତ ଗୁଣ-ବିଶେଷ । ସଂଗୀତର ମୂର୍ଚ୍ଛନା କବି କଳ୍ପନା ସମୂହର ପ୍ରତୀକ ନୁହେଁ । ସବୁ ଆତ୍ମିକ ଜୀବନର ଅଭିବ୍ୟକ୍ତି ପାଇଁ ଚେତନ ମନର ଆଦର୍ଶ ଉପରେ ନିର୍ଭର କରନ୍ତି । ଏ



Digitized by PPRACHIN, SOA

ମୂର୍ଚ୍ଛନା ଅନ୍ତର-ରାଜ୍ୟ ପାଇଁ ଉର୍ଦ୍ଦିଷ୍ଟ । ଭାବ ପ୍ରବଣ ମନର, ବ୍ୟକ୍ତିନିଷ୍ଠ ଚେତନାର ପ୍ରତିନିଧିଙ୍କ ପ୍ରକାଶନର ଏ ଗୁଡ଼ିକ ମାଧ୍ୟମ । ଏଣୁ ମାନବହୃଦୟର ଗଭୀରତମ ସୂକ୍ଷ୍ମ-ବୃତ୍ତିରେ ଏହା ପ୍ରତିଧ୍ୱନିତ ହୁଏ । ସଂଗୀତରେ ଏହି ମଧୁର ମୂର୍ଚ୍ଛନା, ଶ୍ରୋତାର ମନରେ ଅନ୍ୟ କୌଣସି ଭାବ ଆଘାତ ଦେବା ପୂର୍ବରୁ, ଆକସ୍ମିକ ଭାବରେ ଆବେଗ ସୃଷ୍ଟି କରିଦିଏ । ସଂଗୀତ ଅତି ଶୀଘ୍ର ହୃଦୟରେ ଆବେଗ ସୃଷ୍ଟି କରି ପାରୁଥିବାରୁ, କବିତା ଅପେକ୍ଷା ଏହା ଗାୟକ ଓ ଶ୍ରୋତା ପ୍ରାଣକୁ ଅଧିକ ସ୍ପର୍ଶ କରେ । ସଂଗୀତ ପାଣ୍ଡିତ୍ୟ ଓ ଜ୍ଞାନର ଅପେକ୍ଷା ରଖେନାହିଁ । ସଂଗୀତର ଅର୍ଥ ବୁଝିବା ପୂର୍ବରୁ, ଏହାର ସ୍ୱର ମୂର୍ଚ୍ଛନା ଶ୍ରୋତାକୁ ଏପରି ଭାବମୁଗ୍ଧ କରିଦିଏ—ଅର୍ଥ ବୁଝିବା ଆଉ ଆବଶ୍ୟକ ହୁଏନାହିଁ । ଅବୋଧ ଶିଶୁ ଠାରୁ ବୃଦ୍ଧ ପର୍ଯ୍ୟନ୍ତ, ଏପରିକି ପଶୁ ପକ୍ଷୀ ମଧ୍ୟ ସଂଗୀତର ସ୍ୱର ମୂର୍ଚ୍ଛନାରେ ଆକର୍ଷିତ ହୋଇ ଗାୟକ ନିକଟକୁ ଚାଲି ଆସିବାର ଦୃଷ୍ଟାନ୍ତ ବିରଳ ନୁହେଁ ।

ଗ୍ରହଣ କରି ନିଆହୋଇଛି ଯେ ମନୁଷ୍ୟ ମାତ୍ରକେ ସଙ୍ଗୀତ ପ୍ରିୟ । ବେଦ, ସ୍ମୃତି ଓ ସାହିତ୍ୟ ପ୍ରଭୃତି ନାନା ଶାସ୍ତ୍ର ଜାଣି ସୁଦ୍ଧା ସଙ୍ଗୀତ ନ ଜାଣିଥିବା ମନୁଷ୍ୟ ଦ୍ୱିପାଦ ବିଶିଷ୍ଟ ପଶୁ ।

"ଶ୍ରୁତି ସ୍ମୃତ୍ୟାଦି ସାହିତ୍ୟ— ନାନା ଶାସ୍ତ୍ର ବିଦୋଽପି ଚ ।
ସଂଗୀତଂ ଯେନ ଜାନନ୍ତି ତେ ଦ୍ୱିପାଦୋ ମୃଗାଃ ସ୍ମୃତାଃ ।୧୭।
(ସଙ୍ଗୀତ ମୁକ୍ତାବଳୀ)

ସଙ୍ଗୀତ ଶାସ୍ତ୍ରରେ ବୀରବର ଉପେନ୍ଦ୍ରଙ୍କର ବିଶେଷ ପ୍ରବେଶ ଥିଲା । ସେ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଆଦି, ଯତି, ନିସାରି, ଝମ୍ପା, ରୂପକ, ତ୍ରିପୁଟା, ଏକତାଳି, ସରିମା, ଅଡ଼ ଓ ଗୌରୀ ତାଳର ବର୍ଣ୍ଣନା କରିଛନ୍ତି । ସେହିପରି ସେ ସ୍ୱରରେ ପ୍ଲୁତ, ଦ୍ରୁତ ଓ ବିଶ୍ରାମର ଆବଶ୍ୟକତାର ସୂଚନା ଦେଇଛନ୍ତି । ଶୁଦ୍ଧ, ସାଳଗ, ଗ୍ରାମ୍ୟ, ଲଗ ଓ ସୁଡ଼ ଛନ୍ଦର ଉଲ୍ଲେଖ ଏହି କାବ୍ୟରେ ଦେଖାଯାଏ । ପୁନଶ୍ଚ ମେଦିନୀ, ନନ୍ଦିନୀ, ପାବନୀ, ପଦ୍ମିନୀ ଓ ତାରାବଳୀ ଲକ୍ଷଣକୁ ସେ ସ୍ୱୀୟ କାବ୍ୟରେ ଉଦ୍ଧାର କରିଛନ୍ତି । ବୀରବର ଉପେନ୍ଦ୍ର ଋଷଭ, ନିଷାଦ, ଗାନ୍ଧାର, ପଞ୍ଚମ, ମଧ୍ୟମ, ଷଡ଼ଜ, ଧୈବତ ସହିତ ଚନ୍ଦ୍ରକଳା, ଚନ୍ଦ୍ରପଦା, ଧ୍ରୁବପଦା, ପାଞ୍ଚାଳୀ ଆଦି ସ୍ୱର ଓ ଛନ୍ଦର ବର୍ଣ୍ଣନା କରିଛନ୍ତି । 'ସଙ୍ଗୀତ ନାରାୟଣ'ରେ ଗଜପତି ନାରାୟଣ ଦେବ କହନ୍ତି :—

"ଷଡ଼ଜର୍ଷଭୌ ଚ ଗାନ୍ଧାରୋ ମଧ୍ୟମଃ ପଞ୍ଚମସ୍ତଥା ।
ଧୈବତଶ୍ଚ ନିଷାଦଶ୍ଚ ସ୍ୱରାଃ ସପ୍ତ ପ୍ରକୀର୍ତ୍ତିତାଃ । ୪୧ ।
( ପ୍ରଥମ ପରିଚ୍ଛେଦଃ )



Digitized by PPRACHIN, SOA

ରାଗମାନଙ୍କ ମଧ୍ୟରୁ ବସନ୍ତ, ସୋମ, କେଦାର, ଭୈରବ, କଳହଂସଓ ରାଗିଣୀ ମଧ୍ୟରେ ମାଧୁରୀ, ଧାବଶ୍ରୀ ଓ ଗୁର୍ଜ୍ଜରୀର ନାମ ଉପସ୍ଥାପନ କରାଯାଇଛି । [ ୨୩ରୁ ୨୭ ପଦ, ଏକତ୍ରିଂଶ ଛାନ୍ଦ, କୋ.ବ୍ର.ସୁ ] ଏତଦ୍ ବ୍ୟତୀତ ବୀରବର ଉପେନ୍ଦ୍ର ଏହି କାବ୍ୟର ଛାନ୍ଦକୁ ଏକ ବା ଏକାଧିକ ରାଗ ରାଗିଣୀରେ ଗାନ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । କବି ତୃତୀୟ ଛାନ୍ଦରେ ନାୟିକାର ବାଲ୍ୟ, ପୌଗଣ୍ଡ ଓ ଯୌବନ ବର୍ଣ୍ଣନା କରିଛନ୍ତି, ଅର୍ଥାତ ପ୍ରତ୍ୟେକ ପଦ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ତନୋଟି ଅବସ୍ଥା ଅର୍ଥରେ ବ୍ୟବହୃତ । ଏଣୁ ଏହାକୁ ତିନି ଛାନ୍ଦ ଭାବରେ ଗ୍ରହଣ କରିବାରେ ଶଦ୍ୱାନ ବୃନ୍ଦ ଦ୍ୱିଧା ପ୍ରକାଶ କରନ୍ତି ନାହିଁ । ବିଂଶ ଛାନ୍ଦକୁ ରାଗ କଳହଂସ କେଦାର ଓ ଭୂପାଳରେ ଗାଇବାକୁ ସେ ନିର୍ଦ୍ଦେଶ ଦେଇ କହିନ୍ତି :—

"କଳହଂସ କେଦାରେ ଭୂପାଳେ ଆଳାପିତ
ପ୍ରଥମରେ'ଯେ'ଯୁକ୍ତ ଅଧିକ ଏତେ ମାତ୍ର ଯେ ।" ୭୦ ।

( ଊନବିଂଶ ଛାନ୍ଦ )

ପଞ୍ଚବିଂଶ ଛାନ୍ଦକୁ ଅକ୍ଷର ଲୁପ୍ତ କରି ଚିନ୍ତା ଦେଶାକ୍ଷ, କାଫିକାମୋଦୀ ଓ ମାଳ ବରାଡ଼ିରେ ଗାନ କରିବା ବିଷୟ ପୂର୍ବରୁ ସୂଚିତ ହୋଇଅଛି । ତେଣୁ ଏହି କାବ୍ୟର ଛାନ୍ଦ ସଂଖ୍ୟା ୩୫ ବୋଲି ସୂଚିତ ହୋଇଥିଲେହେଁ, ପ୍ରକୃତରେ ଏହା ୪୦ ଛାନ୍ଦ ବୋଲି ସମୀକ୍ଷକ ମାନେ ମନ୍ତବ୍ୟ ଦିଅନ୍ତି ।

ସଙ୍ଗୀତକୁ ଯେପରି କଣ୍ଠର ଗାନ କୁହାଯାଏ, ନୃତ୍ୟକୁ ସେହିପରି ଦେହର ଗାନ କୁହାଯାଏ । ଏହା ଦର୍ଶକର ହୃଦୟରେ ଆବେଗର ସଂଚାର କରାଏ । ନୃତ୍ୟ ଯଦି ଚମତ୍କାରପ୍ରଦ ଓ ହୃଦୟଗ୍ରାହୀ ହୁଏ, ଦର୍ଶକ ନୃତ୍ୟ ଉପଭୋଗ କାଳରେ ଆପଣାକୁ ଭୁଲିଯାଏ, ଆତ୍ମସତ୍ତା ହରାଇ ଦେଇ ନୈର୍ବ୍ୟକ୍ତିକ ହୋଇଯାଏ । ଏହି ନୃତ୍ୟର ସୂଚନା ଦେଇ ବୀରବର ଉପେନ୍ଦ୍ର ଲେଖିଛନ୍ତି :—

"ଆଗେ ପ୍ରସରିବା ଅପସରିବା କି ପୁଷ୍ପବଲ୍ଲୀ ତଳେ ବାଟେ ଯେ ।
ଅଳକା ଅଳିଆଳୀ କି ପାନ ଲୋଭେ କମ୍ପେ ସ୍ୱେଦ-ମଧୁଜାତ ଯେ ।
କରାଳ । ସେ ହସ୍ତକୁ ଉତ୍ତୋଳିତ ଯେ ।
ସଂହରିବାରେ ଧଇର୍ଯ୍ୟପଙ୍କଜକୁ ଉପାଡ଼ି ନେବାର ମତେ ଯେ ।" ୨୯ ।

(ଏକତ୍ରିଂଶ ଛାନ୍ଦ)

ଉପେନ୍ଦ୍ର ପୂର୍ବସୂରିମାନଙ୍କ ମତକୁ ସମର୍ଥନ କରି କହିଛନ୍ତି ଯେ :—

॥ ସତଷଠି ॥

Digitized by PPRACHIN, SOA

"ଗନ୍ଧର୍ବ କନ୍ନର ନାଗ ନରଙ୍କର ସଙ୍ଗୀତ ପରମ ଧନ ଯେ । ସଙ୍ଗୀତର ସୌନ୍ଦର୍ଯ୍ୟ ବିଶ୍ୱବ୍ରହ୍ମାଣ୍ଡରେ ପ୍ରୀତିପଦ ।

ବାସ୍ତୁକଳା, କବିତା ବା ସଙ୍ଗୀତ ପରି ସ୍ୱୟଂ ସଂପୂର୍ଣ୍ଣ ସ୍ୱାଧୀନ କଳା ନୁହେଁ । ଏହା କଳ୍ପନା, ମୂରୁର ଓ କରଣିର ସଂଯୋଗରୁ ସୃଷ୍ଟି ହୁଏ । କବିତା ଓ ସଙ୍ଗୀତ ପରି ଏହା ମଣିଷ ଭାବନାର ଏକ ନିର୍ଦ୍ଦିଷ୍ଟ ପ୍ରସ୍ଥରୂପ ମଧ୍ୟରେ ପ୍ରକାଶ କରେ । ଏହା ଦର୍ଶକର ମନକୁ ଆକର୍ଷଣ କରିବାରେ ପ୍ରୟାସୀ ହୁଏ । ଭାରତରେ ବାସ୍ତୁକଳାରୁ ସୃଷ୍ଟ ରାମ, କୃଷ୍ଣ ଓ ଜଗନ୍ନାଥ ମୂର୍ତ୍ତିମାନଙ୍କର ଲୋକମାନଙ୍କ ଉପରେ କି ପ୍ରକାର ପ୍ରଭାବ ରହିଅଛି, ତାହା ଅଧିକାଂଶ ଜାଣନ୍ତି । ପୂର୍ବରୁ ସୂଚିତ ହୋଇଛି ଯେ ସୌନ୍ଦର୍ଯ୍ୟ ଅନୁଭବ୍ୟ କବିତା ଓ ସଙ୍ଗୀତ ପରି ବାସ୍ତୁକଳା ଚିତ୍ତ ଆକର୍ଷଣ କରିପାରେ ନାହିଁ । ଏଣୁ ବାସ୍ତୁବ୍ରହ୍ମବାଦ, ରସବ୍ରହ୍ମ ଓ ନାଦବ୍ରହ୍ମର ସମକକ୍ଷ ନୁହେଁ । ବାସ୍ତୁବ୍ରହ୍ମବାଦ ଇନ୍ଦ୍ରିୟ ଉପଭୋଗ୍ୟ ଏବଂ ବାସ୍ତୁକଳାର ସୃଷ୍ଟି ପାଇଁ ଆବଶ୍ୟକୀୟ ଉପାଦାନ ଗୁଡିକ ଉପରେ ନିର୍ଭରର ଏକାଗ୍ର ନିବେଶ ଆବଶ୍ୟକ ହୋଇଥାଏ ।

ବାସ୍ତୁକଳାକୁ ଦୁଇଟି ଦିଗରୁ ବିଚାର କରାଯାଇପାରେ । ଯଥା— ବୈଷୟିକ (Objective) ଓ ଅଧ୍ୟାତ୍ମୀୟ (Subjective) । ପ୍ରଥମ ଦୃଷ୍ଟି-କୋଣରୁ, ଏହା ଦର୍ଶନେନ୍ଦ୍ରିୟକୁ ଆକର୍ଷଣ କରେ । ଏତେବେଳେ ଏହା ପାର୍ଥିବ ବା ସ୍ୱର୍ଗୀୟ ବ୍ୟକ୍ତିତ୍ୱ ସହ ଅସଂପୃକ୍ତ ରହେ । ଦର୍ଶନେନ୍ଦ୍ରିୟ ସାହାଯ୍ୟରେ ଗୃହୀତ ହେବା ପରେ, ଏହା କ୍ରମଶଃ ମାନବର ଚେତନ ମନ ଉପରେ ପ୍ରଭାବ ପକାଏ— ପରିଣତିରେ ଏହା ମାନବ ମନରେ ଆବେଗର ଉଚ୍ଛ୍ୱାସ ସୃଷ୍ଟି କରିଦିଏ । ମାଟି, ପଥର, ସିମେଣ୍ଟରେ ମଣିଷ ହାତ ତିଆରି ମୂର୍ତ୍ତି, ପ୍ରାସାଦ, ଦୁର୍ଗ ମୁହୂର୍ତ୍ତିକ ପାଇଁ ଦର୍ଶକ ମନରେ ଏକ ଅପୂର୍ବ କମନୀୟ ବିସ୍ମୟଭାବ ଉଦ୍ରେକ କରାଏ । ଏହି ଆଶ୍ଚର୍ଯ୍ୟ ଆବେଗ ଦର୍ଶକ ମନରେ ସୌନ୍ଦର୍ଯ୍ୟ ସୃଷ୍ଟି କରେ । ଏହି ବିଚକିତ ଭାବକୁ ସାହିତ୍ୟ ତତ୍ତ୍ୱରେ କୁହାଯାଏ ଅଦ୍ଭୁତ ରସ । ପରିଣତିରେ ଦର୍ଶକ ବିସ୍ମୟ ବିସ୍ଫାରିତ ନେତ୍ରରେ ଏହି ପୁଲକିତ ସୌନ୍ଦର୍ଯ୍ୟରେ ଅବଗାହନ କରି, ଏତେ ବେଶି ଭାବ ବିହ୍ୱଳ ହୋଇ-ଯାଏ ଯେ ସେ ନିଜର ସ୍ଥିତିକୁ ଭୁଲିଯାଇ ନୈର୍ବ୍ୟକ୍ତିକ ହୋଇଯାଏ । ମହର୍ଷି ଭରତ ଏହା ସହିତ ଦେବକୁଳ (ଦେଉଳ) ଓ ସଭାଗୃହର ନିର୍ମାଣ କୌଶଳ ମଧ୍ୟ ଦର୍ଶକ ମନରେ ଅଦ୍ଭୁତ ରସର ସ୍ଥାୟୀଭାବ ବିସ୍ମୟ ସୃଷ୍ଟି କରେ ବୋଲି କହିଛନ୍ତି । ଭୋଜରାଜ ମଧ୍ୟ ସମାରାଙ୍ଗନ ସୂତ୍ରଧାରରେ ଏହାକୁ ସ୍ୱୀକାର କରିଛନ୍ତି ।

ଅଧ୍ୟାତ୍ମୀୟ (Subjective) ଦୃଷ୍ଟିକୋଣରୁ ବିଚାର କଲେ ଲକ୍ଷ୍ୟ କରାଯାଏ ଯେ ଗୋଟିଏ ରାଜପ୍ରାସାଦକୁ ଦେଖିଲେ, ପ୍ରାସାଦର ଅଧିକାରୀ ରାଜା,



Digitized by PPRACHIN, SOA

ରାଣୀ, ଯୁବରାଜ ବା ରାଜଜେମାଙ୍କ ଦର୍ଶକ ସ୍ମରଣ କରେ । ଏମାନେ କାବ୍ୟର ଆଲମ୍ବନ ବିଭାବ । ବସ୍ତୁତଃ ବିଳାସ ପ୍ରାଚୁର୍ଯ୍ୟ ପୂର୍ଣ୍ଣ ପ୍ରାସାଦ ଦର୍ଶକ ହୃଦୟରେ ପ୍ରଥମେ ପରୋକ୍ଷ ଭାବରେ ଓ ପରେ ପ୍ରତ୍ୟକ୍ଷ ଭାବରେ ଶୃଙ୍ଗାର ରସର ସ୍ଥାୟୀଭାବ ରତି ଉଦ୍‌ବୋଧିତ କରାଏ । ଏଣୁ ଭୋଜ କହନ୍ତି :—

"ଗୃହମେକଂ ଚିଲସାର୍ଥମାକ୍ଷ୍ମର୍ଯ୍ୟସ୍ୟ ପରଂ ପଦମ୍ ।
ରତେରା ବାସଭବନଂ ବିମ୍ଭସ୍ୟ ସ୍ୱୈକମାସ୍ପଦମ୍ ।"

[ସମାରଙ୍ଗନ ସୂତ୍ରଧାର]

ରାଜବାଟିକା ମଧ୍ୟ ତଡୁଲ୍ୟ ଆବେଗ ଦର୍ଶକ ହୃଦୟରେ ସୃଷ୍ଟି କରେ । ଏହି ଆବେଗର କମ୍ପନ ଦର୍ଶକ ହୃଦୟରେ ସ୍ଥାୟୀଭାବ ଉଦ୍‌ବୋଧନ କରାଇବାର ହେତୁ ହୋଇଯାଏ । ଏହି ସ୍ଥାୟୀଭାବ ଦର୍ଶକ ମନରୁ ଅନ୍ୟାନ୍ୟ ଭାବକୁ ରେଚିତ କରାଇ, ଦର୍ଶକକୁ ଇନ୍ଦ୍ରିୟାତୀତ ରାଜ୍ୟରେ ପହଞ୍ଚାଇ ଦିଏ । ସେତେବେଳେ ଭାବ-ପ୍ରବଣ ସୌନ୍ଦର୍ଯ୍ୟ ପିପାସୁ ଦ୍ରଷ୍ଟା ବାସ୍ତୁବ୍ରହ୍ମକୁ ଅନୁଭବ କରି ଦିବ୍ୟାନନ୍ଦ ଲାଭ କରେ, ଠିକ୍ ଯେପରି କଳ୍ପନାବିଳାସୀ ଶ୍ରୋତା ସଙ୍ଗୀତରୁ ନାଦ-ବ୍ରହ୍ମ; ବିଦଗ୍ଧ ପାଠକ କବିତାରୁ ରସ-ବ୍ରହ୍ମ ଅନୁଭବ କରିଥାଆନ୍ତି ।

ବୀରବର ଉପେନ୍ଦ୍ର ବାସ୍ତୁକଳାର ପ୍ରୟୋଗ ପରୀକ୍ଷା କରିନାହାନ୍ତି, ଏହା ନିଶ୍ଚିତ ଭାବରେ ସତ୍ୟ । ଉପେନ୍ଦ୍ର ବାସ୍ତୁକଳାରୁ ସୃଷ୍ଟିସାମଗ୍ରୀର ବିପୁଳ ବର୍ଣ୍ଣନା 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କରିଛନ୍ତି । ବାସ୍ତୁକଳାକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ । ଯଥା— ନିର୍ମାଣ କୌଶଳ ଓ ସାଜସଜ୍ଜା । ବାସ୍ତୁକଳା ପ୍ରତି ସମଧିକ ଆଗ୍ରହ ଓ ଶ୍ରଦ୍ଧା ପ୍ରକାଶ କରି କବି ସ୍ୱୀୟ କାବ୍ୟର ଦ୍ୱିତୀୟ ଛାନ୍ଦରେ ଚମ୍ପା ନଗର ବର୍ଣ୍ଣନାରେ କହନ୍ତି :–

"କଟକ ନିର୍ମାଣ ଛଟକ ଦେଖି । ବିଶ୍ୱକର୍ମା ମୟ ଭୁଞ୍ଜଣ ଆଖି ।
ଭଲ ଶିଳ୍ପୀ ବୋଲି ହୋଇବା କଥା । ଭଲ୍ଲ ହୋଇ କରେ ହୃଦକୁ ବ୍ୟଥା" ।୧୩।

ଦେବଶିଳ୍ପୀ ବିଶ୍ୱକର୍ମା ଓ ଦାନବ ଶିଳ୍ପୀମୟଙ୍କୁ ହତଚକିତ ଓ ବ୍ୟଥିତ କରାଇଥିଲା ଚମ୍ପା ନଗରର ନିର୍ମାଣ କୌଶଳ । ପୁଣି ପୁଷ୍ପପୁର ସୌନ୍ଦର୍ଯ୍ୟ ସ୍ୱର୍ଣ୍ଣମୟ ଲଙ୍କାକୁ ସୌନ୍ଦର୍ଯ୍ୟରେ ଉପହାସ କରିବାରୁ ଲଙ୍କା ପୋଡିଗଲା ।

"ବିଦଗ୍ଧ ରାକ୍ଷସ ପୁରୀ । ଅସମାନ-ମାନୁ କରି ।
ନଗରମାନଙ୍କ ମୋକ୍ଷ । ତହିଁକି ଲକ୍ଷ୍ୟ ଯେ ।" ୮ ।

(ଚତୁର୍ଥ ଛାନ୍ଦ)

॥ ଆଗକୁ ॥

Digitized by PPRACHIN, SOA

ଷଷ୍ଠ ଛାନ୍ଦରେ ଉପବନ ବର୍ଣ୍ଣନା କବିଙ୍କର ସୌନ୍ଦର୍ଯ୍ୟ ପ୍ରୀତି ଓ ବାସ୍ତୁକଳା ସମ୍ବନ୍ଧୀୟ ଜ୍ଞାନର ସ୍ୱାକ୍ଷର ବହନ କରୁଛି । ମଧୁଶଯ୍ୟା ଗୃହର ସାଜସଜ୍ଜା ବର୍ଣ୍ଣନା କରି ବୀରବର ଉପେନ୍ଦ୍ର ଲେଖିଛନ୍ତି :—

"ଗୋପୀ କୃଷ୍ଣଲୀଳା ଚିତ୍ର ନାହିଁ ଯହିଁ ଦେଖା ।
ମୀତାଗ୍ରିମ ପ୍ରଦୀପ ନିଷ୍ପ୍ରମ ଆଦି ଲେଖା ଯେ । ୨ ।
ନୂତନରେ ଏତେ ଚିତ୍ର କଲୁଁ ମତି ହରି ।
ଅର୍ଦ୍ଧଜାତ ହରି କଣ୍ଠ ବିଦାରଣ କରି ଯେ ।
ପଲଙ୍କେ ଖଚି ମାଣିକେ ଏହି ଖଚି ଥିଲେ ।
ବଲ୍ଲଭ ନଦେଖିବା ନ ଦେଖିବା ଶଙ୍କା ବଳେ ଯେ । ୩ ।
ପଲ୍ଲବ ପଟ୍ଟ ସୁପାଟି ମୁହାଁ ସୂକ୍ଷ୍ମ ତୂଳି ।
ଯୋଗାଇ ପୁଷ୍ପ ନ ବନ୍ଧି ପଡ଼ିବତ ଭାଳି ଯେ ।
ଆଲୋକ-ତମ-ରକ୍ଷଣା ପ୍ରଦୀପ ଦଣ୍ଡଗ୍ର ।
ତାଟଙ୍କ ଭୂଷାଦି ରତ୍ନ ଜ୍ୟୋତିକ ବିଗ୍ରହ ଯେ ।" ୪ ।

(ଚତୁର୍ବିଂଶ ଛାନ୍ଦ)

ପାଠକ ଓ ଶ୍ରୋତା ହୃଦୟରେ ବୀରବର ଉପେନ୍ଦ୍ର ଆଲୋଚ୍ୟ କାବ୍ୟାକୃତି ମଧ୍ୟରେ ଆବେଗର ସଞ୍ଚାର କରାଇ ସ୍ଥାୟୀଭାବର ଉଦ୍‌ବୋଧନ କରାଇଛନ୍ତି । ଏହି କାବ୍ୟରେ ସେ ରସ, ରସ ଉପଯୋଗୀ ସଙ୍ଗୀତ, ଧ୍ୱନିଗର୍ଭିତ ଶବ୍ଦଗୁଚ୍ଛ, ଅଳଙ୍କାର ପ୍ରୟୋଗ କରିପାରିଛନ୍ତି । ଏହାକୁ ପାଠ କଲାବେଳେ ବା ଶୁଣିଲାବେଳେ ପାଠକ ଓ ଶ୍ରୋତାଙ୍କର ଚେତନ ମନ ନିଷ୍କ୍ରିୟ ହୋଇଯାଏ । ସେମାନେ ନୈର୍ବ୍ୟକ୍ତିକ ହୋଇଯାଆନ୍ତି । ସେମାନେ ରସଭୂକ୍ ହୋଇ କାବ୍ୟ-ସୌନ୍ଦର୍ଯ୍ୟ ଆସ୍ୱାଦନ କରନ୍ତି । ପ୍ରଜ୍ଞା ଓ ବୁଦ୍ଧିର ସଞ୍ଚାଳନ କରି ସେମାନେ କାବ୍ୟମାଧୁରୀ ଉପଭୋଗ କରିବା ସାଥେ ସାଥେ ଦିବ୍ୟାନନ୍ଦ ଲାଭ କରନ୍ତି । ଏହି କାଳରେ ପାଠକ ଓ ଶ୍ରୋତା କାବ୍ୟ ବର୍ଣ୍ଣିତ ନାୟକ ନାୟିକା ମଧ୍ୟରେ କବିକୁ ଦେଖନ୍ତି ଅତି ନିକଟରୁ । ନାୟକ ନାୟିକାଙ୍କ ମଧ୍ୟରେ କବିଙ୍କର ସାହିତ୍ୟିକ-ବ୍ୟକ୍ତିତ୍ୱର ସନ୍ଧାନ କରନ୍ତି ରସଗ୍ରାହୀ ପାଠକ ଓ ଶ୍ରୋତାଗଣ । ସେମାନେ ସମପ୍ରାଣ ହୋଇଯାନ୍ତି କବିଙ୍କ ସହିତ । ତାହାହିଁ ଉପେନ୍ଦ୍ରଙ୍କର ରସିକତା ଓ ବିଦଗ୍ଧତାର, ସୌନ୍ଦର୍ଯ୍ୟ ପିପାସାର ପରିଚୟ ଦିଏ ।

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ସୌନ୍ଦର୍ଯ୍ୟ ସମ୍ବନ୍ଧୀୟ ବିଜ୍ଞାନ ଓ ଦର୍ଶନ ସମୀକ୍ଷା କଲାବେଳେ, କଳାରେ ଉପେନ୍ଦ୍ରଙ୍କ ପ୍ରବଣତା, ଛନ୍ଦରେ ଲାଳିତ୍ୟ ପାଠକ ଓ ଶ୍ରୋତାଙ୍କୁ ମୁଗ୍ଧ କରାଇଥାଏ । ଶବ୍ଦ ବୈଚିତ୍ର୍ୟ, ଅଳଙ୍କାରର



Digitized by PPRACHIN, SOA

ଛନ୍ଦମୟ ଓ ଶୋଭନୀୟ ବିନ୍ୟାସ, ରସ ଉଦ୍‌ବୋଧନରେ ଚମତ୍କାର ଦକ୍ଷତା ସହିତ କବିଙ୍କର କଳ୍ପନା ବିଳାସର ମନୋହର ଦୀପ୍ତି ଆଲୋଚକମାନଙ୍କୁ ଚକିତ କରାଇଥାଏ । ମନେହୁଏ, ପୂର୍ବବର୍ତ୍ତୀ ସନ୍ଥ ସାହିତ୍ୟର ଚରମ ଆଧ୍ୟାତ୍ମବାଦ ଓ ଜାଗତିକ ନଶ୍ୱରତା ବିରୁଦ୍ଧରେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଏକ ମୌନ ପ୍ରତିବାଦ । ଅଧ୍ୟାତ୍ମବାଦରୁ ଜୀବନ ପ୍ରତି ମୁହଁ ଫେରାଇବାକୁ ବାରବାର ଉପେନ୍ଦ୍ର ନିଜର ସମ-କାଳୀନ ପାଠକ ଓ ଶ୍ରୋତାଙ୍କୁ ଆହ୍ୱାନ କରିଛନ୍ତି । ଜୀବନ ଅଳୀକ ନୁହେଁ, ଅସୁନ୍ଦର ହୋଇପାରେନା । ଜୀବନର ବାସ୍ତବତାକୁ ଅସ୍ୱୀକାର କରି ମୁକ୍ତି କାମନାରେ ସଂସାରୀ ମଣିଷ କଣ ସବୁବେଳେ ଷଡ଼ଚକ୍ର ସାଧନ କରି ସହସ୍ରାରେ ପହଞ୍ଚି ପାରିବ ? କୃଚ୍ଛ୍ରସାଧନ ଦ୍ୱାରା ସତରେ କଣ କେହି ମୁକ୍ତି ପାଇଛି ? ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ ତନ୍ମାତ୍ର, ଷଡରିପୁ ଓ ମନ ରୂପକ ବାଇଶି ପାହାଚକୁ ଅତିକ୍ରମ ଶରୀର ରୂପକ ଶ୍ରୀମନ୍ଦିରରେ ଆତ୍ମାରୂପି ଜଗନ୍ନାଥଙ୍କର ଦର୍ଶନ ପାଇବାକୁ ଯାଇ, ସମସ୍ତେ ନିଜ ନିଜର ଅଜ୍ଞାତସାରରେ କର୍ମହୀନ ହୋଇନାହାନ୍ତିକି ? ଯେତେଦୂର ମନେହୁଏ, କବି ଉପେନ୍ଦ୍ର ଏଇ କର୍ମହୀନ ଲୋକଙ୍କୁ କର୍ମ ମୁଖର କରାଇବା ପାଇଁ ଜୀବନର ସମ୍ଭୋଗ ପ୍ରତି ଆକର୍ଷିତ କରାଇଛନ୍ତି । ସେ କହନ୍ତି :—

"କହେ ଉପେନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ ।
ଜାତ କଲେ କ୍ଷୀରାର୍ଣ୍ଣବୁ ସୁଧା, ମୋର ଗିରାର୍ଣ୍ଣବୁ ସୁଧାଗୀତ ।
ସେ ସତ । ଯେ ବିବୁଧ ଏ ବୁଧ ରଞ୍ଜିତ ।
ଦ୍ୱୈତ ଖଳରେ ଅଧରଞ୍ଜିତ । ଯେ ତ୍ରାସିବ ହେବ ରାହୁ ମତ ।" ୩୦ ।

(ଷଡବିଂଶ ଛାନ୍ଦ)

ନନ୍ଦନତତ୍ତ୍ୱ ଦୃଷ୍ଟିରୁ ଉପେନ୍ଦ୍ରଙ୍କ କବିତ୍ୱ ଯେପରି ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ, 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ସେହିପରି କାବ୍ୟ-ମଧ୍ୟାହ୍ନର ସୌନ୍ଦର୍ଯ୍ୟ-ମାର୍ତ୍ତଣ୍ଡ । ଉପେନ୍ଦ୍ର ନିଜର ଅନୁଭୂତି ଦୃଷ୍ଟିରେ ସମସ୍ତ ଗ୍ରହଣ କରିଛନ୍ତି । ନିଜର ଅନୁଭୂତି ପାଇଁ ସେ କାହାରି ନିକଟରେ ଋଣୀ ନୁହନ୍ତି । ଉପେନ୍ଦ୍ରଙ୍କର କାବ୍ୟ-ମନୀଷା ସ୍ୱୟଂ-ସମ୍ପୂର୍ଣ୍ଣ । "କବିର୍ମନୀଷୀ ପରିଭୂଃ ସ୍ୱୟମ୍ଭୂଃ" ଉପେନ୍ଦ୍ରଙ୍କର ଏହି ବୈଶିଷ୍ଟ୍ୟ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟକୁ ଅସାଧାରଣ କରିଛି ।



ଓଡ଼ିଆ ବିଭାଗ
କ୍ଷେତ୍ରବାସୀ ଡ଼ି.ଏ.ଭି. କଲେଜ, ନିଲଙ୍କାର ପୁର,
ନିରାକାରପୁର, ଜି: ପୁରୀ ।
ପିନ୍ - ୭୫୨୦୧୯

॥ ଏକିତ୍ରହେ ॥

Digitized by PPRACHIN, SOA

## ॥ ପ୍ରକୃତିକନ୍ୟା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ॥

ଡ଼ାକ୍ତର ଶୈଳେଶ୍ୱର ନନ୍ଦ

ପ୍ରକୃତି ମାନବ ଜୀବନର ଏକ ଅବିଚ୍ଛେଦ୍ୟ ଅଧ୍ୟାୟ । ଈଶ୍ୱର ସୃଷ୍ଟିର ଏହି ଅନୁପମ ଚିର ସୁନ୍ଦର ଶୋଭାରାଶି ମାନବ ପ୍ରାଣରେ ଅଫୁରନ୍ତ ପୁଲକ ସୃଷ୍ଟି କରି ତା'ର ଚେତନ, ଅବଚେତନ ଓ ଅଚେତନ ଅବସ୍ଥାକୁ ମନ୍ତ୍ରମୁଗ୍ଧ କରିଥାଏ । କବି ସୃଷ୍ଟି କରେ ତାର ଅନବଦ୍ୟ ସର୍ଜନା , ପ୍ରକୃତିର ଏହି ଛନ୍ଦ ଚପଳ, ମନ୍ଦ ମଧୁର, ଶାନ୍ତ-କୋମଳ ସଙ୍ଗୀତକୁ ଅଙ୍ଗୀକାର କରି । ବିଶ୍ୱ ସୃଷ୍ଟିରେ ନୂତନ ରଙ୍ଗ ବୋଳି ନବୀନ କଳ୍ପନାର ପୁଟଦେଇ କବି ସାଜେ ସ୍ରଷ୍ଟା, ଲକ୍ଷ ତାର ଆନନ୍ଦର ସୁଧା ବିତରଣ । ନଦନଦୀ, ବନ ପର୍ବତ, ନିର୍ଝରିଣୀ, ସରୋବର, ଦିବାନିଶି, ପ୍ରଭାତ ସନ୍ଧ୍ୟା ଠାରୁ ଆରମ୍ଭ କରି ପଶୁପକ୍ଷୀ, ମନୁଷ୍ୟ ଦେବତା ମାନଙ୍କର ବିଭିନ୍ନ ଋତୁରେ ଜାଗତିକ ଓ ନୈସର୍ଗିକ କ୍ରିୟାକଳାପର ମଧୁର ଚିତ୍ରଣ କରିଥିରେ କବି ଅମୃତର ଆସ୍ୱାଦ ଦିଏ କୋଟି କୋଟି ପାଠକ ମାନଙ୍କୁ । ପାଠକ ବିହ୍ୱଳିତ ହୁଏ । ସେହି ସେ ଦୃଶ୍ୟରାଜି ଯାହାକୁ ବାରମ୍ବାର ସେ ଦେଖିଛି କିନ୍ତୁ ଅନୁଭବ ବା ଉପଭୋଗ କରିବାର ଅବକାଶ ତାର ଆସିନି । ଆଜି କବି ରଚନାରେ ସେ ତାକୁ ପ୍ରାଣବନ୍ତ କରି ମନୋମୟ ପରିବେଷଣରେ ଉପଲବ୍ଧି କରେ । ତାହାହିଁ କବି ସୃଷ୍ଟିର ସାର୍ଥକତା ।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ନିଜର ସମସ୍ତ ଅନୁଭୂତିକୁ ନେଇ ତହିଁରେ ଅନନ୍ତ କଳ୍ପନାର ଅପରୂପ ସୌନ୍ଦର୍ଯ୍ୟ ଭରି ତାଙ୍କର ସମସ୍ତ କାବ୍ୟକୁ ହୃଦୟଗ୍ରାହୀ କରାଇବାକୁ ସମର୍ଥ ହୋଇଛନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ କବିଙ୍କର ମଧୁରତମ ଅଲଙ୍କାର ବିମଣ୍ଡିତ ରସାଳ କାବ୍ୟ । ପ୍ରକୃତିର ଅନନ୍ତ ଶୋଭାରାଶିକୁ କାବ୍ୟ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଅଙ୍ଗଲାବଣ୍ୟରେ ସନ୍ନିବେଶିତ କରି ତାର ଯୌବନୋଦ୍ଦୀପ୍ତ ସ୍ୱଭାବ ଓ ପ୍ରେମମୟ ଆବେଗକୁ ପ୍ରକୃତିସହ ସମତୁଲ କରି ଉପେନ୍ଦ୍ର ଭଞ୍ଜ ଧରିତ୍ରୀପୃଷ୍ଠକୁ ସ୍ୱର୍ଗରେ ପରିଣତ କରି ପାରିଛନ୍ତି । କାବ୍ୟର ନାମକରଣରୁ ହିଁ କବିଙ୍କର ସୌନ୍ଦର୍ଯ୍ୟ ପ୍ରତି ଥିବା ସ୍ୱତନ୍ତ୍ର ଦୁର୍ବଳତା ବା ଆସକ୍ତି ଉପଲବ୍ଧି



Digitized by PPRACHIN, SOA

କରାଯାଇପାରେ । କଳ୍ପନାର ଶ୍ରେଷ୍ଠତମ ସୌନ୍ଦର୍ଯ୍ୟକୁ ନିଜ ନାୟିକାର ଭୂମିକାରେ ଅବତୀର୍ଣ୍ଣ କରାଇ ସେ ସୃଷ୍ଟି କରିଛନ୍ତି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ପ୍ରକୃତିକୁ ମାନବ ମଧ୍ୟକୁ ଓହ୍ଲାଇଆଣି, ମାନବୀୟ ଚିନ୍ତା, ଚେତନା ଓ ଅଭିବ୍ୟକ୍ତିକୁ ପ୍ରକୃତି ପର୍ଯ୍ୟାୟଭୁକ୍ତ କରି କବି ଚିରନ୍ତନ ସାହିତ୍ୟର ଦୃଷ୍ଟାନ୍ତ ବାଢ଼ିଛନ୍ତି ।

## ପ୍ରଭାତ

ନାୟିକାକୁ ପ୍ରଭାତ ରୂପେ କଳ୍ପନା କରି ନାୟକାନୁଚିନ୍ତାରେ ନାୟିକାର ଓଷ୍ଠକୁ ବାଳଅରୁଣ କଳ୍ପନା କରି କବି କହନ୍ତି—

"ଏକାଳେ ପୁଣି କୁମର କରି
ପ୍ରାତଃ ସ୍ମରଣ ବାଳକୁ ଭାବି
ପାଇ ଓଷ୍ଠେ ବାଳ-ଅରୁଣ ଲକ୍ଷ୍ୟକୁ
ନେଦେ ସ୍ଫୁଟେ କଣ୍ଠଛବି ।
ଅମ୍ବର ମନ୍ତ୍ର ଲୁକାଉ । ଆଲୋକେ ସୁଖ ବସ୍ତରି ।"

ଅନ୍ୟତ୍ର କବି କହନ୍ତି-ପ୍ରଭାତ କାଳ ହେବାରୁ କୁକ୍କୁଟ ରାବ ଦେଲା । ଯେହ୍ନେ ରାବ ଶୁଣି ଅଭିସାରିକା ନାୟିକା ଘରୁ ପରି ପଳାଇ ଘରୁ ଲୁଚାଇଲା ପରି କାନ୍ତଠାରୁ ପାଇଥିବା ନଖ ଓ ଦନ୍ତ କ୍ଷତ ଚିହ୍ନମାନ ଲୁଚାଇଲେ—

"କୁକ-କୁଟ କୁଟ ରଟରେ ପଳାଇତ, ତଉର ଅଭିସାରିକା
ଲଭିଲ ଧନ ଚିହ୍ନବର୍ଣ୍ଣ ଲୁଚାଇ-ନଟାଦରେ କରିଦକା, ସେ ଭଲେ
ତାରା ବାସକ ସଜ୍ଜା ଯୁଗଳେ ପ୍ରଭାବତୀ ମ୍ଳାନ. ଏକାବେଳେ
ଭଲି ଯେନା ଯେନ ହୋଇଥିଲେ ।"

## ସନ୍ଧ୍ୟା

ସନ୍ଧ୍ୟା ସମୟରେ ନୃପସୁତା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଗୃହାଳୀ ଉପରେ ଉପଗତ ହୁଅନ୍ତେ କବି ଚିନ୍ତା ମନୋଜ୍ଞ ପଦାବଳୀରେ ପ୍ରକଟିତ । ପୂର୍ବ ଦଗରେ ଚନ୍ଦ୍ରମଣ୍ଡଳ ଉଦୟାଚଳରେ ଉଦ୍‌ଭାସିତ ହୁଅନ୍ତେ ଐରାବତ ହସ୍ତୀ ସାଗର ମଧ୍ୟରୁ ବାହାରି ନଳିନୀବନକୁ ମଳିନ କଲାପରି ଦୃଶ୍ୟମାନ ହେଲା । ଚନ୍ଦ୍ରର ଶୁଭ୍ର ଉଜ୍ଜ୍ୱଳ ଆଭା ଆକାଶର ସୁଧାବିନ୍ଦୁ ବର୍ଷିଲାପରି ପ୍ରତୀତ ହେଲା । ଚନ୍ଦ୍ରଙ୍କୁ ଶ୍ରୀରାମଙ୍କ ସହିତ ତୁଳନା କରି କବି ନିଜ ପାଣ୍ଡିତ୍ୟର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

॥ ଚେତ୍ତର ॥

Digitized by PPRACHIN, SOA

"ଗୃନ୍ଦନୀ ଉପରେ ନୃପତି ନନ୍ଦିନୀ
ସନ୍ଧ୍ୟାରେ ବସିଲା
ଚନ୍ଦ୍ରମା ମଣ୍ଡଳ ଆଖଣ୍ଡଳ ଦିଶେ
ଏମନ୍ତ ଦିଶିଲା ।
ପୂର୍ବ କଥା ପୂର୍ବ କନ୍ଦର୍ପ ଦର୍ପରୁ
ବାହାର ବିହ୍ୱଳେ
ନଳିନୀ ବନ ମଳିନ କରି ପଙ୍କ
ଅଙ୍କିତ ଶରୀରେ
ମହୋଜ୍ଜ୍ୱଳ କରେ ପୁଷ୍ପରେ ବର୍ଷିତ
ଅମୃତ ପ୍ରଶାନ୍ତ
ସେହି ଶ୍ରୀବଳୀ ଢଳ ଢଳ ଯେ ପ୍ରଭା
ଦେଶରେ ଦିଶନ୍ତ
ହସ୍ତସ୍ଥ ସେ ରାମ ରାଜା କଉଶିକ
ଆନନ୍ଦ ଦେବାରେ
ପୁରବେଳେ ବିଦିତ ଲକ୍ଷ୍ମଣେ ସହିତ
ସେ ବୃକ୍ଷ ସଙ୍ଗରେ ।

## ଋତୁ ବର୍ଣ୍ଣନା

କବି ନିଜର ସମସ୍ତ କାବ୍ୟରେ ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ ଶୀତ, ବସନ୍ତ, ସମସ୍ତ ଋତୁ ମାନଙ୍କୁ ଉପଭୋଗ୍ୟ କରି ପାରିଛନ୍ତି । ଋତୁରାଜ ବସନ୍ତ ବର୍ଣ୍ଣନା କବି ଚନ୍ଦ୍ରାର ଏକ ସାର୍ଥକ ପ୍ରକାଶ, କବି ବସନ୍ତ ସମୟକୁ ଅତି ରସମୟ କରି ପାଠକ ପ୍ରାଣକୁ ରସାପ୍ଲୁତ କରିଛନ୍ତି ।

"ଅତି ରସମୟ ବସନ୍ତ ସମୟ ବର୍ଣ୍ଣନ ପ୍ରମେୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଅନ୍ତର ତରଙ୍ଗ ବାହାର
ଆଗତେ । ଆରୋହିଲା ନାଗେଶ୍ୱରକୁ
ଋତୁରାଜ ପଦୁଁ ସେ ରଜ ଦେଖିଲା ବୃନ୍ଦି ପ୍ରଫୁଲ୍ଲ କେଶରକୁ
ରତି ପତି ସୂଚି-ଆବରଣ ମଧ୍ୟେ ସାଧ୍ୱୀଗୁଣ ଦେଖି ପଶିଲା ।
ନବ ପୁଷ୍ପବତୀ ସେବତୀ ସଙ୍ଗତେ ରସି କ୍ରୀଡ଼ାକୁ ପ୍ରକାଶିଲା
ମନୋଜ । ଚଉପୁର ମଧ୍ୟ ଚତ୍ୱରେ,
ଉଦିତ କରାଇ ରତି ଅନୁରାଗ ଅମ୍ବର ସେ ଖେଳେ ସତ୍ୱରେ ।"

॥ ଚଉତ୍ରିଶା ॥

Digitized by PPRACHIN, SOA

## ଗ୍ରୀଷ୍ମଋତୁ

ପୁଷ୍ପପୁର ରାଜକୁମାର ନଳକଣ୍ଠଙ୍କୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରେମପତ୍ର ପ୍ରେରଣ କଲେ। ଗ୍ରୀଷ୍ମକାଳ ହେତୁ ସେ ଉପବନରେ ବିହାର କରିଥିବା ବେଳେ କବି ଭଞ୍ଜ ଅନବଦ୍ୟ ଶୈଳୀରେ ବିବାହ ବନ୍ଧନକୁ ପ୍ରତିଫଳିତ କରି ଲେଖିଛନ୍ତି—

"ଦେଖିଲେ ଆରାମ ଅତି ଅଭିରାମ
ଯେ ଦେଖିବ ଏହୁ ପ୍ରଭାତ
ମନରୁ ଉତ୍ପତ୍ତି ରତି କାମ–ମୂର୍ତ୍ତି
ମତ୍ତେ କି ବଶ ହେଉଛନ୍ତି।
କୋକିଳ
ଗାୟକ ଉଚ୍ଚେ ଗାଏ ଗୀତ
ଝିଙ୍କାରି ଝଙ୍କାର ଝଙ୍କୃତି ପ୍ରାନ୍ତ
ହୃତ ସୁବାଦ୍ୟରେ ବଦିତ
ଶୁକ ଭରଦ୍ୱାଜ ବେଦକୁଳ ଦ୍ୱିଜ
ଶ୍ରୁତି ମନ୍ତ୍ରୁ ବାକ୍ୟ ଉଚ୍ଚାର
ମଲ୍ଲୀ କଡ଼ି ଶଙ୍ଖ ଅସଂଖ୍ୟ ଅନେକ
କନକ ମଧୁରୀ ମାଧୁରୀ
ମଧୁପ
ଚୁମ୍ବିନେ ଧ୍ୱନି କରେ ଜାତ।"

## ଷଡ଼ଋତୁ ବର୍ଣ୍ଣନା

ଏକାଧିକବାର କବି ଷଡ଼ଋତୁକୁ ସମନ୍ୱିତ କରି ମଧୁର ଲଳିତ ପଦାବଳୀରେ ସମଗ୍ର ପ୍ରକୃତିର ଶାଶ୍ୱତ ରୂପ ବର୍ଣ୍ଣିକୁ ନିବେଦିତ କରିଛନ୍ତି।

"ଛନ୍ଦହେଲେ ଲକ୍ଷ୍ୟମାନେ ବସନ୍ତ ଆକୃତି
ଚମ୍ପା ଫୁଟାଇ ରଖିଲି ହରିଚନ୍ଦ ଗତି ଯେ,
ଗ୍ରୀଷମଙ୍କ ବୃକ୍ଷଦୀପ ନଗରେ ଯେ ଘେନେ
ଅଗ୍ନିଶିଖା ବଂଶେ ବିରାଜିତ ସ୍ଥାନେ ସ୍ଥାନେ।
ବରଷାଙ୍କ ଜାଇ ଯୁଈ ବିକଶାଇ ଦେଇ
ଘନଘନ ଘନାଘନ କ୍ରୀଡ଼ା ପ୍ରକାଶଇ ଯେ
ଶରଦ କି ଚନ୍ଦ୍ର ଉଦୟରେ ମନୋହର
ହିମ ଶିଶିର କି ଧୂମ କୁହୁଡ଼ି ଆକାର ଯେ।

॥ ପଞ୍ଚଶତ୍ରୁ ॥

Digitized by PPRACHIN, SOA

## ଆକାଶ ବର୍ଣ୍ଣନା

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଜନ୍ମସ୍ଥାନ ଚମ୍ପା ନଗରୀ ଚତ୍ୱର ଭ୍ରମଣ କରିବାକୁ ଯାଇ କବି ବିସ୍ତାରିତ ଆକାଶର ଚମତ୍କାର୍ଯ୍ୟକ ବର୍ଣ୍ଣନା ଦେଇଛନ୍ତି ।

"ବଢ଼ିଲା ବଢ଼ିଲା ଜନମକରେ,
ହରିହସ୍ତ ହରିହସ୍ତ ଚଉରେ ।
ବଇଜୟନ୍ତୀକୁ ଜିଣିବ ବୋଲି,
ବଇଜୟନ୍ତୀରେ ଛନ୍ଦନ ଖଲି ।
ବିତାନ ଏସନ ପ୍ରସନ୍ନ ଧରେ,
ଯେସନ ଗଗନ ନିଶାକାଳରେ ।
ଚନ୍ଦ୍ରମଣ୍ଡଳ କରେ ପ୍ରକାଶିତ,
ପୁଣି ତାର ତାର-ରାଜି ରଞ୍ଜିତ ।"

## ସାଗର ବର୍ଣ୍ଣନା

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ବିଭିନ୍ନ ସ୍ଥାନରେ ସାଗରର ଉଚ୍ଛ୍ୱଳ ତରଙ୍ଗ-ମାଳାକୁ ବର୍ଣ୍ଣନା କରି କବି ଉପେନ୍ଦ୍ର ଜଗନ୍ନାଥଙ୍କ ସହିତ ସାଗରର ତୁଳନା ବାଢ଼ିଛନ୍ତି ।

"ସେ ଦୁର୍ଗ ପରିଖା ତୀର୍ଥରାଜ ଗର୍ଜନରେ
କହେ, ଅବଗାହେ ପାପବ୍ୟୂହ ଦହନରେ ହେ"

ଓ

"ସୁମନାମାନେ ମାନସେ ବିସ୍ମିତ । ଲାବଣ୍ୟ-ସିନ୍ଧୁ ନିଷ୍ଠେ ଏନାଗରୀ
କରି ମକରୀ ତୁରଙ୍ଗେ ରାଜିତ, ଉତ୍ତମ-କଣ୍ଠକେ କରେ ସଂଯୁକ୍ତ ।"

ନାୟିକାକୁ ଲାବଣ୍ୟ ସିନ୍ଧୁ ଆଖ୍ୟା ଦେଇ ସୌନ୍ଦର୍ଯ୍ୟ ଜ୍ଞାନର ବ୍ୟାପକତା ଓ ଗମ୍ଭୀରତାର ଚରମ ନିଦର୍ଶନ ବାଢ଼ିଛନ୍ତି ।

॥ ଛତ୍ରିଶ ॥

Digitized by PPRACHIN, SOA

# ନଦୀ ବର୍ଣ୍ଣନା

ଉତ୍କଳର ପୂର୍ଣ୍ଣ ଗର୍ଭା ନଦୀମାନଙ୍କର ବର୍ଣ୍ଣନା କବିମାନଙ୍କର ରଚନାରେ ବହୁଭାବେ ପ୍ରକଟିତ । କବି ଉପେନ୍ଦ୍ର ନିଜସ୍ୱ ଚିନ୍ତାରେ ଉତ୍କଳୀୟ ନଦୀମାନଙ୍କର ବର୍ଣ୍ଣନା ଦେବାକୁ ମଧ୍ୟ ଭୁଲି ନାହାନ୍ତି । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ କବି କୁହନ୍ତି

"କାଳନ୍ଦୀ ରୁଚିର କୃଷ୍ଣ ବେଣୀ ପୁଣି ଲକ୍ଷି
ଚନ୍ଦ୍ରଭାଗା କଣୋଣୀ ଶାଘ ଉତ୍ପଳାକ୍ଷୀ ଯେ,
ହୋଇଥିବ ଯୁକ୍ତ ରସ ସରସ୍ୱତୀ ସଦା ।
କରତ ପବିଣ ହୋଇ ରେବାରେ ବାହୁଦା ଯେ ।"

ଲାବଣ୍ୟବତୀର ନାୟକ ଚନ୍ଦ୍ରଭାନୁ ନାୟିକା ନିକଟକୁ ରସିକତା କରି ଲେଖିଥିଲେ ଗୋଟିଏ ନାରୀର ଅଙ୍ଗଲତିକାରେ ଗୋଟିଏ ଫୁଲ ନ ଫୁଟି ଷୋଳ ପ୍ରକାର ଫୁଲ ପ୍ରକଟିତ ହୋଇଅଛି । ଲାବଣ୍ୟବତୀର ନାସିକା ତିଳଫୁଲ, ଦନ୍ତ କୁନ୍ଦ-ଯୂଥି, ମୁଖ ଶ୍ୱେତପଦ୍ମ, ଓଷ୍ଠ ଲାଲପଦ୍ମ, କେଶରାଶି ନୀଳପଦ୍ମ, ଦେହ ଗୋଲାପ ପଦ୍ମ, ହାସ କୁମୁଦ, ଅଧର ବନ୍ଧୁଳି, କାନ ପାଟଳି, ନଖ ନିଆଳି, ଅଙ୍ଗୁଷ୍ଠି ଚମ୍ପା, ଦେହ ଶୈରଢ଼, ଆଖି ଉତ୍ପଳ, ହାତ ପାଦୁଲି ଓ ପାଦତଳ ମନ୍ଦାର ଓ ପାଦ ଆଙ୍ଗୁଳି ଅଶୋକ ଫୁଲ ରୂପେ କବି ଭାବନାରେ ରୂପାୟିତ । ଯେହ୍ନେ ପ୍ରାୟ ସୁଭଦ୍ରା ପରିଣୟରେ ସୁଭଦ୍ରାଙ୍କର ଅଙ୍ଗରେ ସାତଫୁଲ, ସାତଫଳ ଓ ସାତଟି ଭିନ୍ନ ପକ୍ଷୀ ଆଶ୍ରୟ ନେଇ ଥିବାର ସ୍ୱପ୍ନକବି ଅଦ୍ଭୁତ ସ୍ୱପ୍ନିଳ ପରିବେଶ ପାଠକ ପାଖରେ ଆଣି ଥୋଇଛନ୍ତି । କିନ୍ତୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ କବି କଳ୍ପନା ଆଉ କିଛି ପାଦ ଆଗକୁ ଆଗେଇ ଯାଇ କବି ନାୟିକାର ରୂପ ମଧ୍ୟରେ ହରିଲୀଳା, ରାମଲୀଳା ତଥା ମହାଭାରତ ଯୁଦ୍ଧ ଅବଲୋକନ କରିଛନ୍ତି ।

ରାମାୟଣର କଥାବସ୍ତୁ ସନ୍ନିବେଶିତ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଅଙ୍ଗସଜ୍ଜାରେ-

"ଜଳକ ସୃଷ୍ଟି କିଛୁ ନ ହୁଡ଼ିଲ
ହରିଲୀଳା ଏ ରୂପେ ନିବାଡ଼ିଲ ।
ସୁଗ୍ରୀବରେ ଯେ ଚନ୍ଦନ ମିଶ୍ରିତ
ରାମ ଲକ୍ଷ୍ମଣ ମୁଖେ ପ୍ରଶଂସିତ
ପ୍ରକାଶିତ ଚନ୍ଦ୍ରହାସ ଝଲକ
ମନ୍ଦୋଦରୀ ବର ଶକ୍ତି ଢଳକ

॥ ସତ୍ତସ୍ତର ॥

Digitized by PPRACHIN, SOA

ମେଘନାଦ ଶିଖା ଲକ୍ଷ୍ୟ ଝଲକି
ଦକ୍ଷଧର ସେ ସୁମନା ବଳୀକି
ସଦା ଅଙ୍ଗଦ ବାହୁରେ ବହୁରେ
ଉନ୍ନତ କୁଚକୁମ୍ଭ ଚଉହୁରେ
ଏଣୁ କରି ପୁଷ୍ପ ଲଙ୍କା କମ୍ପନ
ଏତ କଳଙ୍କ କଥା ଉଦ୍ଦୀପନ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଗ୍ରୀବାରେ ଚନ୍ଦନ ଥିବାରୁ ସୁନ୍ଦର ଦିଶି ଚନ୍ଦନତୁଲ୍ୟ ପ୍ରଶଂସିତ । ଏଠାରେ ସୁଗ୍ରୀବ ଓ ଚନ୍ଦନ ବାନର ମୁଖରେ ଶ୍ରୀରାମ ଲକ୍ଷ୍ମଣ ପ୍ରଶଂସିତ । ସୁନ୍ଦରୀର ହାସ ଚନ୍ଦ୍ରତୁଲ୍ୟ ଶୁଭ୍ର, ଯାହା ରାବଣର ଚନ୍ଦ୍ରହାସ ନାମକ ଖଡ୍‌ଗ ସହିତ ତୁଳନୀୟ । ସେ ମନ୍ଦୋଦରୀ ବର କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଶକ୍ରତୁଲ୍ୟ ତିଳକ ଲଗାଇ ମେଘନାଦ ବା ମୟୂରର ପୁଚ୍ଛପରି କେଶରେ ସୁମନାବଳୀ ପୁଷ୍ପ ଧାରଣ କରିଅଛନ୍ତି ଓ ବାହୁରେ ଅଙ୍ଗଦ ଅଳଙ୍କାର ଯୁକ୍ତ ହୋଇ ଉନ୍ନତ କୁଚକୁମ୍ଭ ସହ ଚିତ୍ତକୁ ହରଣ କରୁଛନ୍ତି । ମେଘନାଦର ଶିରସ୍ତ୍ର ତଥା ଅଙ୍ଗଦ ଓ କୁମ୍ଭକର୍ଣ୍ଣର ବର୍ଣ୍ଣନା ମଧ୍ୟରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ମନୋଜ୍ଞ ରୂପସଜ୍ଜାକୁ ସ୍ଥାନଦେଇ କବି କହିଛନ୍ତି, ଲଙ୍କାରେ ପୁଷ୍ପକ ବିମାନ କମ୍ପିବା ପରି ସୁନ୍ଦରୀର କେଶରେ ଚର୍ଚ୍ଚିତ ପୁଷ୍ପମାନ କମ୍ପିତ ହେଉଛନ୍ତି । ନିଜର ପାଣ୍ଡିତ୍ୟ ଓ ବୁଦ୍ଧିମତ୍ତାକୁ ସହାୟ କରି ଉପେନ୍ଦ୍ର ନାୟିକାର ଅଙ୍ଗଶୋଭାରେ ରାମାୟଣର ପରିବେଶ ଉପଭୋଗ କରିଛନ୍ତି ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ନେତ୍ରରେ ମହାଭାରତ ଯୁଦ୍ଧ କଳାନ୍ତରରେ କବି ପ୍ରକାଶ କରିଛନ୍ତି । ଏ ନେତ୍ରରେ କୃଷ୍ଣକଳା ଓ ଅର୍ଜୁନ ଶ୍ୱେତବର୍ଣ୍ଣ ପ୍ରକାଶ କରିଅଛି । ଅଞ୍ଜନ ଧନୁର୍ଗୁଣ ଭ୍ରୂଲ-ଧନୁ ହେଲା କଟାକ୍ଷଗୁଳକ । ମହାଭାରତ ଯୁଦ୍ଧରେ କର୍ଣ୍ଣ ବଜ୍ର ଧରିଥିଲେ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କର୍ଣ୍ଣରେ ବଜ୍ର ଯୁକ୍ତ ମଲ୍ଲିକଢ଼ି ଓ ଢାଲପରି ଉତ୍ତମ ତାଟଙ୍କ ଧାରଣ କରି ଶୋଭା ପାଉଥିଲେ । ଦ୍ରୋଣ ସୁତ କୋକିଳ ପରି ବାକ୍ୟ କହିବାରେ ବିଖ୍ୟାତ ହୋଇଥିଲ ।

"ନେତ୍ରେ ସୁଭାରତ ହେବା କହୁଛି
କୃଷ୍ଣ ଅର୍ଜୁନ ରଙ୍ଗ କରାଇଛି ।
ଗୁଣ ଅଞ୍ଜନ କପାଳ କମାଣ
ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ
କର୍ଣ୍ଣ ବଜ୍ର ମଲ୍ଲୀକଢୀ ବହିଲ,
ସୁତାଟଙ୍କ ଆଢ଼ଣୀରେ ଶୋହିଲ ।

|| ଅଠସ୍ତର ||

Digitized by PPRACHIN, SOA

ଦ୍ରୋଣ ସୁତ ଉତ୍ତର ହିଁ ବିଖ୍ୟାତ
କଳଙ୍କ ଉପଲକ୍ଷଣା ସାକ୍ଷାତ ।

କବି ଉପେନ୍ଦ୍ର ମାନବ ଓ ପ୍ରକୃତିକୁ ଏକୀଭୂତ କରି ସେମାନଙ୍କ ମଧ୍ୟରେ ଅଭେଦତ୍ୱ ପ୍ରତିପାଦନ କରିଅଛନ୍ତି । ମାନବ ମଧ୍ୟରେ ପ୍ରକୃତି ଓ ପ୍ରକୃତି ମଧ୍ୟରେ ମାନବ ଉପଲଭ୍ୟ । ଚିର ସୁନ୍ଦର ଚିର ମନୋଜ୍ଞ ପ୍ରକୃତି ମନୁଷ୍ୟ ପାଇଁ କେଉଁଠି ସାଜିଛି ବନ୍ଧୁ-ସହଯାତ୍ରୀ ଓ କେଉଁଠି ସାଜିଛି ଶିକ୍ଷୟିତ୍ରୀ । ଛନ୍ଦେ ଛନ୍ଦେ ପ୍ରକୃତିକୁ ସନ୍ନିବେଶିତ କରିବାର କାରଣ ନିଜର ରଚନା ବଳୀକୁ ଚିର ଅମଳିନ, ଶାଶ୍ୱତ ଓ ଚିରନ୍ତନ କରିବାର ଚେଷ୍ଟା । ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ଓ ଆନନ୍ଦ ବାଦର ଉଦ୍‌ଘୋଷଣା । ସୁଖ ଦୁଃଖ, ହର୍ଷ-ବିଷାଦ ସହିତ ପ୍ରକୃତିର ସହାନୁଭୂତି ଅନୁଭବ କରି କବି ଗାଇଛନ୍ତି ।

କୁମୁଦ ବିକାଶ ତୁଟି ତୁଟି ଯାଇ
ପଦ୍ମ ଫୁଟି ଫୁଟି ଆସେ
ଦ୍ୱିରେଫ ବିରସ ପାଲଟା ପାଲଟି
ମଧୁ ଲୁଟ, ବିଟ କି ସେ ?

ପ୍ରକୃତରେ ପ୍ରକୃତିର କୋଳରେ ଜନ୍ମିତ ପ୍ରକୃତି କନ୍ୟା "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" ସକଳ ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଆନନ୍ଦ ବାଦର ମନୋଜ୍ଞ ସର୍ଜନା । ଏହା କବି କଳ୍ପନାର ଶ୍ରେଷ୍ଠତମ ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ ।



ସଂପାଦକ: କଳିଙ୍ଗ ଭାରତୀ
ମଣି ଭବନ
ମେରିଆ ବଜାର
କଟକ-୧



Digitized by PPRACHIN, SOA

# ॥ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଉପେନ୍ଦ୍ରଙ୍କ ଆଧ୍ୟାତ୍ମିକ ଦୃଷ୍ଟି ଓ ଦର୍ଶନ ॥

——ଡ଼କ୍ଟର ସଚ୍ଚିଦାନନ୍ଦ ମିଶ୍ର



ଆଧ୍ୟାତ୍ମିକ ଦର୍ଶନ ଭାରତୀୟ ସଂସ୍କୃତିର ମୂଳଭିତ୍ତି । ବେଦ, ବେଦାନ୍ତ, ଉପନିଷଦ ଏବଂ ନ୍ୟାୟଶାସ୍ତ୍ରାଦିର ତତ୍ତ୍ୱ ଓ ତଥ୍ୟଗୁଡ଼ିକ ଆମ ପୁରାଣ ତଥା କାବ୍ୟଗୁଡ଼ିକରେ ଦୃଷ୍ଟି-ଦୃଷ୍ଟାନ୍ତ ଭାବରେ ପ୍ରସାରିତ ରୂପ ପାଇ ଭାରତୀୟ ସମାଜ ଓ ସାହିତ୍ୟକୁ ବିଭିନ୍ନ ସମୟରେ ପ୍ରଭାବିତ କରି ଆସିଛି । ସାମୂହିକ ମଙ୍ଗଳକାମନା ଏହାର ମୁଖ୍ୟ ଲକ୍ଷ୍ୟ ହୋଇଛି । ଜାଗତିକ ବିଶ୍ୱର ନିତ୍ୟ ପଦାର୍ଥର ସ୍ଥିତି ଏବଂ ତାହାର ଆତ୍ମିକ ଉପଲବ୍ଧି ସଙ୍ଗେ ଆତ୍ମା, ପରମାତ୍ମା, ଜନ୍ମ-ପୂର୍ବଜନ୍ମ, ଜରା-ମୃତ୍ୟୁ, ପାପ-ପୁଣ୍ୟ, ଅକର୍ମ-ସୁକର୍ମ, ଦାନ-ସଂଯମ-ନିଷ୍ଠାଦିର ବିସ୍ତୃତ ବିଶ୍ଳେଷଣ ଭିତ୍ତିକ ବେଦ-ଉପନିଷଦୀୟ ସିଦ୍ଧାନ୍ତ ମାନବକଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ । ଏତଦ୍‌ବ୍ୟତୀତ ଈଶ୍ୱର ଉପାସନା, ସାଧନା ଏବଂ ତତ୍ତ୍ୱ ସମ୍ବନ୍ଧୀୟ ଜ୍ଞାନ ଲାଭ ଓ ଅନୁଭବ ନିମିତ୍ତ ଏଥିରେ ପ୍ରେରଣା ରହିଛି । ଏହି ଦାର୍ଶନିକ-ଆଧ୍ୟାତ୍ମିକ ଚେତନା ବିଭିନ୍ନ କାଳରେ ଭାରତୀୟ ଜନ ମାନସକୁ ଅନୁପ୍ରାଣିତ କରିଆସିଛି । ଆର୍ଯ୍ୟ ଋଷିମାନଙ୍କର ସାଧ ଓ ସାଧନାର ଭିତ୍ତି ଉପରେ ବିଶାଳ ଭାରତ ବର୍ଷର ଶିକ୍ଷା, ସାହିତ୍ୟ, ଦର୍ଶନ, ବିବିଧ ଜ୍ଞାନ-ବିଜ୍ଞାନ, ସର୍ବୋପରି ସଭ୍ୟତା ଓ ସଂସ୍କୃତିର ମହନୀୟ ବିକାଶ ସମ୍ଭବ ହୋଇପାରିଛି । ସାମାଜିକ, ପାରିବାରିକ ତଥା ବ୍ୟକ୍ତି ମାନସର ସମୃଦ୍ଧି ପଥରେ ପ୍ରାଚୀନ ମନୀଷୀମାନଙ୍କର ମହତ୍‌ବାଣୀ ପରମ ସହାୟକ ହୋଇଥିବା ହେତୁ ତାହା ଯୁଗେ ଯୁଗେ ଭାରତୀୟ ମାନଙ୍କର ଏକନିଷ୍ଠ ପାଳନ ଓ ଚରମ ସାଧନାର ହେତୁ ହୋଇଛି । ତେଣୁ, ବିଭିନ୍ନ ସମୟରେ ସାହିତ୍ୟ ସାଧକମାନଙ୍କ କୃତିରେ ଏହା ଆକର୍ଷଣୀୟ ରୂପ ନେଇ ଆମ ମୁନି-ଋଷିମାନଙ୍କ ସାଧନା ଓ ସିଦ୍ଧିକୁ, ଆଶା ଓ ଅଭିଳାଷକୁ ଅଧିକ ସାଫଲ୍ୟମଣ୍ଡିତ କରିଛି । ଊନବିଂଶ-ଶତାବ୍ଦୀର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଏହି ଧାରା ଅକ୍ଷୁର୍ଣ୍ଣ ଭାବରେ ଭାରତୀୟ ସାହିତ୍ୟରେ ସୁରକ୍ଷିତ ହୋଇ ରହିଛି । ଅଷ୍ଟାଦଶ



Digitized by PPRACHIN, SOA

ଜାହାଙ୍ଗୀର କବିସମ୍ରାଟ ଉପେନ୍ଦ୍ରଙ୍କ ସମୟକୁ ଏହି ଧାରା ଯୁଗରୁଚି ଅନୁସାରେ ପରିବର୍ତ୍ତିତ ହୋଇ ମଧ୍ୟ କାବ୍ୟ କବିତାରେ ପ୍ରଭାବଶାଳୀ ରୂପ ନେଇ ଲୋକ-ମାନସକୁ ଉଜ୍ଜୀବିତ କରିପାରିଥିଲା । ଏଠାରେ ସ୍ମରଣ ରଖିବାକୁ ହେବ ଯେ ଉପେନ୍ଦ୍ରଙ୍କ କାବ୍ୟ-କବିତାର ଆଭିମୁଖ୍ୟ ନିଛକ ନୀତିଶାସ୍ତ୍ର ବା ଧର୍ମଗ୍ରନ୍ଥ ଅବଲମ୍ବନରେ ରଚିତ ହୋଇ ଧାର୍ମିକ ଚେତନା ବା ଆଧ୍ୟାତ୍ମିକ ଜାଗରଣ ଆଣିବା ପାଇଁ ଉଦ୍ଦିଷ୍ଟ ନୁହେଁ; ବରଂ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ରସାଳ ବିଷୟବସ୍ତୁର ଚମତ୍କାର ଉପସ୍ଥାପନା ମାଧ୍ୟମରେ ପାଠକ ପ୍ରାଣରେ ଆନନ୍ଦଭାବ ସଞ୍ଚାର କରିବା ଏବଂ ରସ-ସ୍ଫୂର୍ତ୍ତି ଘଟାଇବା । କବି ଉପେନ୍ଦ୍ର ନିଜ କାବ୍ୟରେ ନୈତିକ-ଆନନ୍ଦ ବୋଧ ସୃଷ୍ଟି କରିବା ସଙ୍ଗେ ପ୍ରାଚୀନ ମନୀଷୀମାନଙ୍କ ପ୍ରତିପାଦିତ ସାଧନ-ନିଷ୍ଠ ଆଧ୍ୟାତ୍ମିକ ଚେତନା ମଧ୍ୟ ଦେଇ ବ୍ୟକ୍ତି ଓ ସମାଜ ଜୀବନକୁ ଶୃଙ୍ଖଳିତ ଏବଂ ମହିମାନ୍ୱିତ କରି ଗଢ଼ିବାର ପ୍ରଣାଳୀକୁ କାବ୍ୟରସ ସହିତ ଓତଃପ୍ରୋତ ଭାବରେ ଜଡ଼ିତ କରି ପାଠକ ସମ୍ମୁଖରେ ଉପସ୍ଥାପନ କରିଛନ୍ତି । ପ୍ରାଚୀନ ଭାରତୀୟ ସାଧକମାନଙ୍କ ଚିରନ୍ତନ ବାଣୀ ଓ ଦାର୍ଶନିକ ଉପଲବ୍ଧିକୁ କବୀନ୍ଦ୍ର ଉପେନ୍ଦ୍ର ଯେପରି ଭାବରେ ଗ୍ରହଣ କରି 'କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଅଙ୍ଗୀଭୂତ କରିଛନ୍ତି ଏବଂ ପ୍ରାସଙ୍ଗିକ ବର୍ଣ୍ଣନାର ପରିସରଭୁକ୍ତ କରି ଉକ୍ତ କାବ୍ୟର ସୌନ୍ଦର୍ଯ୍ୟ ବର୍ଦ୍ଧନରେ ସହାୟକ ହୋଇଛନ୍ତି— ତାହାହିଁ ଏହି ପ୍ରବନ୍ଧର ଆଲୋଚ୍ୟ ବିଷୟ ।

'ଦୃଶ୍' ଧାତୁରେ 'ଲ୍ୟୁଟ୍' ପ୍ରତ୍ୟୟ ଯୋଗ କରାଯାଇ 'ଦର୍ଶନ' ଶବ୍ଦ ନିଷ୍ପନ୍ନ ହୋଇଛି । 'ଦୃଶ୍ୟତେ ଅନେନ ଇତି ଦର୍ଶନମ୍'— ଅର୍ଥାତ ଯାହାଦ୍ୱାରା ଦେଖାଯାଏ, ତାହାହିଁ ଦର୍ଶନ । ଜ୍ଞାନ ଦୃଷ୍ଟି ବା ଦିବ୍ୟ ଦୃଷ୍ଟିରେ ଦେଖିବା ପାଇଁ ଏହା ଅଭିପ୍ରେତ । ଏହା ଆତ୍ମଦର୍ଶନ ଅଟେ । ଇଂରାଜୀରେ ଦର୍ଶନର ସମପର୍ଯ୍ୟାୟ-ବାଚୀ ଶବ୍ଦଟି ହେଲା—'ଫିଲୋସଫି' । ଏହା ଗ୍ରୀକ୍ ଶବ୍ଦ 'ଫିଲସ୍' ଅର୍ଥାତ 'ପ୍ରେମ' ବା 'ଅନୁରାଗ' ଏବଂ 'ସୋଫିଆ' ଅର୍ଥାତ 'ବିଦ୍ୟା'ରୁ ସୃଷ୍ଟି । ତେଣୁ,'ଫିଲୋସଫି'ର ଅର୍ଥ ହେବ ବିଦ୍ୟାନୁରାଗ । କିନ୍ତୁ, ବ୍ୟବହାରିକ ଦୃଷ୍ଟିରୁ 'ଫିଲୋସଫି'ଶବ୍ଦ'ଦର୍ଶନ' ଠାରୁ ଭିନ୍ନ ଅର୍ଥ ବୋଧକ । ତେଣୁ ଦର୍ଶନ ଜ୍ଞାନ ପ୍ରତି ଅନୁରାଗ ହିଁ ଦର୍ଶନ ଶାସ୍ତ୍ରର ମୂଳ କଥା । ଏହି ଜ୍ଞାନର ଅର୍ଥ ତଥ୍ୟ ଜାଣିବାପାଇଁ ନୁହେଁ; ବରଂ ବିଶ୍ୱ ଓ ମାନବ ଜୀବନର ଗହନତମ ପ୍ରଶ୍ନ ସମ୍ବନ୍ଧରେ ଅବହିତ ହେବା, ଅଭିଜ୍ଞତା ଲାଭ କରିବା ଏବଂ ଜୀବନ ଜିଜ୍ଞାସା ତଥା କୌତୂହଳର ଚରିତାର୍ଥ ନିମିତ୍ତ ଉଦ୍ଦିଷ୍ଟ । 'ଆତ୍ମାନଂ ବିଦ୍ଧି' ଅର୍ଥାତ୍ ଆତ୍ମାକୁ ଜାଣିବା, ଆତ୍ମଜ୍ଞାନ ଲାଭ ଭାରତୀୟ ଦର୍ଶନର ମୂଳ ଉଦ୍ଦେଶ୍ୟ । ଭାରତ ବର୍ଷରେ ଏହାର ପାରିଭାଷିକ ଅର୍ଥରେ ତତ୍ତ୍ୱଜ୍ଞାନ, ଆତ୍ମଜ୍ଞାନ ବା ପରମାତ୍ମା-ଜ୍ଞାନ ବାଚକ । ଏହା ଆତ୍ମାର ମନନ, ଚିନ୍ତନ ଓ ଦର୍ଶନ ଅଟେ । ଏହି ତତ୍ତ୍ୱଜ୍ଞାନ



Digitized by PPRACHIN, SOA

ଲାଭ ଉପାୟକୁ ଦର୍ଶନ କୁହାଯାଇଥାଏ । ଭାରତରେ ଦର୍ଶନର ଦୁଇଟି ପରଂପରା ରହିଛି; ଯଥା— ଆସ୍ତିକ ଓ ନାସ୍ତିକ ପରଂପରାର ଦର୍ଶନ । ଚାର୍ବାକ ଦର୍ଶନ, ଜୈନ ଦର୍ଶନ ଏବଂ ବୌଦ୍ଧ ଦର୍ଶନ ନାସ୍ତିକ ଦର୍ଶନ ଅନ୍ତର୍ଗତ । ନ୍ୟାୟ, ସାଂଖ୍ୟ, ଯୋଗ, ବୈଶେଷିକ, ପୂର୍ବ ମୀମାଂସା ଏବଂ ଉତ୍ତର ମୀମାଂସା (ବେଦାନ୍ତ ଦର୍ଶନ) ଆଦି ଆସ୍ତିକ ଦର୍ଶନ ଗ୍ରନ୍ଥ ଭାବରେ ସୁଖ୍ୟାତ । ଆସ୍ତିକ ଶବ୍ଦର ଅର୍ଥ ନେଇ ମତାନୈକ୍ୟ ରହିଛି । ମନୁ ବେଦ ନିନ୍ଦୁକଙ୍କୁ ନାସ୍ତିକ କହୁଥିବା ସ୍ଥଳେ ବ୍ୟାକରଣିକ ପାଣିନି ଅଷ୍ଟାଧ୍ୟାୟୀ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି ଯେ ପରଲୋକରେ ଯେ ବିଶ୍ୱାସ କରେ ସେ ଆସ୍ତିକ ଓ ଯେ ଅବିଶ୍ୱାସ କରେ ସେ ନାସ୍ତିକ । ଆମ ଲୋକ ଚଳଣିରେ ଯେ ଈଶ୍ୱରଙ୍କ ଉପରେ ବିଶ୍ୱାସ କରନ୍ତି ସେ ଆସ୍ତିକ ଏବଂ ଯେ ଅବିଶ୍ୱାସ ପୋଷଣ କରନ୍ତି ସେ ନାସ୍ତିକ ପର୍ଯ୍ୟାୟଭୁକ୍ତ । ଏହି ଧର୍ମୀୟ-ନୈତିକ ପ୍ରେରଣାହିଁ ଭାରତୀୟ ଦର୍ଶନ ଉତ୍ପତ୍ତିର ମୂଳ କାରଣ । ଭାରତୀୟ ଦର୍ଶନ ମୁକ୍ତିକାମୀ । ଏହି ଦୃଷ୍ଟିରୁ ପାଶ୍ଚାତ୍ୟ ଦର୍ଶନ ଭାରତୀୟ ଦର୍ଶନ ଠାରୁ ପୃଥକ୍ । ଭୌତିକତା, ଜ୍ଞାନ ଓ ତର୍କ ଉପରେ ପାଶ୍ଚାତ୍ୟ ଦର୍ଶନ ଗୁରୁତ୍ୱ ଦେଉଥିବା ସ୍ଥଳେ ଭାରତୀୟ ଦର୍ଶନ ଆଧ୍ୟାତ୍ମିକତା ଉପରେ ଅଧିକ ଆସ୍ଥା ସ୍ଥାପନ କରିଥାଏ । ଆମ ଦର୍ଶନ ପାଶ୍ଚାତ୍ୟ ଦର୍ଶନ ପରି ଶୁଷ୍କ ତାତ୍ତ୍ୱିକ ଜ୍ଞାନ ଉପରେ ଗୁରୁତ୍ୱ ଆରୋପ କରିନଥାଏ । ଜ୍ଞାନ ଚତୁର୍ବର୍ଗ ପୁରୁଷାର୍ଥର ଅନ୍ତର୍ଗତ ନୁହେଁ । ଏହା ପୁରୁଷାର୍ଥ ଲାଭର ସହାୟକ ମାତ୍ର । ଏକ ମହତ୍ ଲକ୍ଷ୍ୟ ହାସଲ ନିମିତ୍ତ ଜ୍ଞାନ ଏକ ଉପାୟ ମାତ୍ର । ଦୁଃଖର ନିବୃତ୍ତିକୁ ପୁରୁଷାର୍ଥ କୁହାଯାଏ । ଆଧ୍ୟାତ୍ମିକ,ଅଧିଭୌତିକ ଓ ଅଧିଦୈବିକ ଏହି ତ୍ରିବିଧ ଦୁଃଖର ଆତ୍ୟନ୍ତିକ ନିବୃତ୍ତି ପାଇଁ ଦର୍ଶନ ଜ୍ଞାନର ଏକାନ୍ତ ଆବଶ୍ୟକତା ରହିଛି । ଏହି ଦୁଃଖ ମୁକ୍ତ ଅବସ୍ଥାକୁ ଦାର୍ଶନିକ ମାନେ ମୋକ୍ଷ, କୈବଲ୍ୟ, ଅପବର୍ଗ ଏବଂ ସାଧାରଣ ଭାବରେ ମୁକ୍ତି କହିଥାନ୍ତି । ଭାରତୀୟ ମୁକ୍ତିକାମୀ ଦର୍ଶନ ଆମ ଆଧ୍ୟାତ୍ମିକ ଚେତନା ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଏହି ଚେତନା କବୀନ୍ଦ୍ର ଉପେନ୍ଦ୍ରଙ୍କ କାବ୍ୟ-କବିତାରେ ସର୍ବତ୍ର ପରିଦୃଷ୍ଟ ହୁଏ । ତାଙ୍କ ଈଶ୍ୱର ବିଶ୍ୱାସ, ବେଦ ନିର୍ଭରଶୀଳତା, ପରଲୋକରେ ଆସ୍ଥା, ଜନ୍ମାନ୍ତରବାଦ, ଜ୍ଞାନ-ଭକ୍ତି-କର୍ମ ସାଧନ ଦ୍ୱାରା ମୋକ୍ଷ ପ୍ରାପ୍ତିର ମହତ୍ ଲକ୍ଷ୍ୟ ଆଦି ଭାରତୀୟ ଦର୍ଶନର ବାର୍ତ୍ତା ବହନ କରି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ସରସ-ସୁନ୍ଦର ଭାବରେ ସଂଯୋଜିତ ହୋଇ ପାଠକ ମନ ଚିନ୍ତନରେ ସାର୍ଥ ହୋଇ ପାରିଛି ।

ଉପେନ୍ଦ୍ର ଶ୍ରୁତି, ସ୍ମୃତି, ସାଂଖ୍ୟାଦି ଷଡ଼ ଦର୍ଶନ ଅଧ୍ୟୟନ କରିଥିଲେ । ଏହି ସମସ୍ତ ଶାସ୍ତ୍ରରୁ ପ୍ରେରଣା ଲାଭ କରି ତାଙ୍କ ହୃଦୟରେ ଦାର୍ଶନିକ ଅନୁଚିନ୍ତାର ସ୍ଫୁରଣ ଘଟିଥିଲା । ମନୁଷ୍ୟ ବିଶ୍ୱସ୍ରଷ୍ଟା ପରମେଶ୍ୱରଙ୍କ ଠାରେ ଆତ୍ମ ସମର୍ପଣ କରି

॥ ବସ୍ତାଅସି ॥

Digitized by PPRACHIN, SOA

ଜୀବନରେ ଶାନ୍ତି-ମୁକ୍ତି ଲାଭ କରିପାରେ ବୋଲି ସେ ଦୃଢ଼ ନିଶ୍ଚିତ ଥିଲେ । ପରମ କଲ୍ୟାଣମୟ ବିଶ୍ୱସ୍ରଷ୍ଟାଙ୍କର ଆଶୀର୍ବାଦ ଲାଭକରି ମାନବ ମୁକ୍ତି ଲାଭ କରିପାରେ ଏବଂ ଅବାଧ ସାଧନାରେ ମଧ୍ୟ ସିଦ୍ଧି ଲାଭ କରିଥାଏ । ଏହି ଦିବ୍ୟ ପ୍ରେରଣା ହିଁ ତାଙ୍କୁ ରାମ ତାରକ ମନ୍ତ୍ର ସିଦ୍ଧ କରିବାରେ ସହାୟକ ହୋଇଛି । ସେ ଅନାବିଳ ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସ ବଳରେ ବଳୀୟାନ ହୋଇ ରାମୋପାସନାରେ ନିଜକୁ ନିୟୋଜିତ କରି ସିଦ୍ଧ ହୋଇଛନ୍ତି ଏବଂ ବଳିଷ୍ଠ କାବ୍ୟ କବିତା ରଚନାରେ ଅପୂର୍ବ ଦକ୍ଷତା ହାସଲ କରିଛନ୍ତି । ସେ ନିଜ କର୍ମର ପ୍ରତ୍ୟେକ ପଦକ୍ଷେପରେ ଏହି ସ୍ୱର୍ଗୀୟ ଇଙ୍ଗିତ ଉପଲବ୍ଧି କରିଛନ୍ତି । ପ୍ରେମ ତାଙ୍କ ମନ୍ତ୍ର ସିଦ୍ଧ ଉପେନ୍ଦ୍ର ଶ୍ରୀରାମ ବିଗ୍ରହ ମଧ୍ୟରେ ପରଂବ୍ରହ୍ମଙ୍କର ଅନନ୍ତ ମାଧୁର୍ଯ୍ୟମୟ ଲୀଳା ଅବଲୋକନ କରି ବିହ୍ୱଳ ହୋଇ ପଡ଼ିଛନ୍ତି । ତଥାପି ଧର୍ମକ୍ଷେତ୍ରରେ ସେ ସମନ୍ୱୟବାଦୀ ଥିଲେ । ସେ ପରଂବ୍ରହ୍ମଙ୍କ ସ୍ୱରୂପର ପ୍ରକାଶ ବିଷ୍ଣୁ, ଶିବ, ଗଣେଶ, କାଶୀ ବିଶ୍ୱନାଥ ଏବଂ ଶ୍ରୀଜଗନ୍ନାଥଙ୍କ ଠାରେ ଅବଲୋକନ କରିଛନ୍ତି । ଅଧ୍ୟାପକ ଜୟକୃଷ୍ଣ ମିଶ୍ର ଯଥାର୍ଥରେ ଲେଖିଛନ୍ତି "ତାଙ୍କ ଦିବ୍ୟତା ଓ ଦିବ୍ୟଚେତନା ଯଥାର୍ଥ ଭାବରେ ଅବଧାରଣ କରିଛି ଯେ ସମସ୍ତ ଉପାସନା ମୂଳରେ ସେହି ଏକ ପରଂବ୍ରହ୍ମ, ସେ ଶିବ, ରାମ, କୃଷ୍ଣ, ସୂର୍ଯ୍ୟ ବା ଯେ କୌଣସି ବିଗ୍ରହରେ ଅବତୀର୍ଣ୍ଣ ହୋଇ ପରମ ଲୀଳା ପ୍ରକଟନ ଲାଗି ପରମ ଆତ୍ମପ୍ରକାଶ ପୂର୍ବକ ଅଭୟପ୍ରଦ ହୁଅନ୍ତୁ ପଛକେ ଏକମାତ୍ର ଅନନ୍ତ ସୃଷ୍ଟିର ଆଧାର ଓ ପରମ କର୍ତ୍ତା ସେ ନିଜେ ।" (୧)

'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କବି ଉପେନ୍ଦ୍ର ଜଣେ ପରମ ଭକ୍ତ ଏବଂ ଆଧ୍ୟାତ୍ମବାଦୀ ଭାବରେ ଦେଖାଦିଅନ୍ତି । ଏଥିରେ ତାଙ୍କର ଏକନିଷ୍ଠ ଭକ୍ତିଭାବନା, ଶ୍ରୀଜଗନ୍ନାଥଙ୍କ ଦିବ୍ୟ ଶକ୍ତିରେ ଗଭୀର ବିଶ୍ୱାସ ଓ ଐକାନ୍ତିକ ନିଷ୍ଠା ସଙ୍ଗେ ବହୁ ଶାସ୍ତ୍ର ବର୍ଣ୍ଣିତ ପ୍ରାମାଣିକ ଉପସ୍ଥାପନାର ଏକ ଅପୂର୍ବ ସୁସମନ୍ୱୟ ଘଟିଛି । ଫଳରେ ଉପେନ୍ଦ୍ରଙ୍କ ଶ୍ରୀକ୍ଷେତ୍ର, କ୍ଷେତ୍ରୀ ଏବଂ ଉତ୍ସବାଦୀର ମହତ୍ତ୍ୱ ବର୍ଣ୍ଣନା ଅଧିକ ତାତ୍ତ୍ୱିକ ଓ ରସବନ୍ତ ହୋଇପାରିଛି । ଶ୍ରୀଜଗନ୍ନାଥଙ୍କୁ ସେ 'ଦାରୁବ୍ରହ୍ମ ସ୍ୱରୂପାୟ ଚତୁର୍ଦ୍ଧା ମୂର୍ତ୍ତ[illegible]' ଭାବରେ ଉପାସନା କରିଛନ୍ତି । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶ[illegible] ସମନ୍ୱୟ ହିଁ ଜଗନ୍ନାଥ ଧର୍ମର ମହତ୍ତ୍ୱ ପ୍ରକଟନ କରିଥାଏ । ଶ୍ରୀଜଗ[illegible]ବ୍ରହ୍ମ ମହିମା ପୁରୁଷ, ବଳରାମ ଅନନ୍ତ ବଳବୀର୍ଯ୍ୟର ଆଧାର,

---

(୧) କ[illegible]ଃ ଉପେନ୍ଦ୍ର ଭଞ୍ଜ— ଏକ ସମୀକ୍ଷା. ପୃ-୧୦୬ .
ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା . ୧୯୭୭ .

॥ ତେୟାଅଁସି ॥

Digitized by PPRACHIN, SOA

ସୁଭଦ୍ରା ପରମାତ୍ମଶକ୍ତି ସ୍ୱରୂପିଣୀ ଏବଂ ସୁଦର୍ଶନ ସଙ୍କୀର୍ଣ୍ଣ ସ୍ୱାର୍ଥ-ମୋହ-ଅହଙ୍କାରର ବିନାଶକାରୀ ଏହି ପରମ ପୁରୁଷ ଶ୍ରୀଜଗନ୍ନାଥ ନିଜ ଲୀଳା ପ୍ରକଟନ କରି ପତିତ ଜନଙ୍କୁ ଉଦ୍ଧାର କରିବା ପାଇଁ ଶ୍ରୀକ୍ଷେତ୍ରରେ ଅବତୀର୍ଣ୍ଣ । ସ୍ୱୟଂ ବିଶ୍ୱସ୍ରଷ୍ଟା ନାରାୟଣ ଜଗନ୍ନାଥ ନାମରେ ଏହି କ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିବାହେତୁ ଏଠାରେ ସମସ୍ତ ପାପ ବିନଷ୍ଟ ହୋଇଥାଏ । ଏହି କମ୍ବୁକଟକର ରାଜା ଶ୍ରୀ ଜଗନ୍ନାଥ ଭକ୍ତ ମାନଙ୍କୁ ଅଷ୍ଟ ଐଶ୍ୱର୍ଯ୍ୟ, ଚତୁର୍ବର୍ଗ ଫଳ, ଚତୁର୍ବିଧ ମୁକ୍ତି ପ୍ରଦାନ କରିଥାନ୍ତି । ପାପୀର ପାପ ତାପ ଖଣ୍ଡନ କରିଥାନ୍ତି । ଏ କ୍ଷେତ୍ରର ମହତ୍ତ୍ୱ ବର୍ଣ୍ଣନାତୀତ । ଏଠାରେ ଭୁଷୁଣ୍ଡିକାକ ରୋହିଣୀକୁଣ୍ଡରେ ପଡି ଚତୁର୍ଭୁଜ ମୂର୍ତ୍ତି ଧାରଣ କରିଛି । ଏଠାରେ ଶିବଙ୍କର ବ୍ରହ୍ମ-ହତ୍ୟା ପାତକ ନଷ୍ଟ ହୋଇଛି । ଏ କ୍ଷେତ୍ରରେ ଯମର ଭୟ ନାହିଁ । ଶ୍ରୀ ଜଗନ୍ନାଥ କଳ୍ପତରୁ ରୂପରେ ଭକ୍ତ ମାନସର କାମନା ବାସନା ଚରିତାର୍ଥ କରିବା ସଙ୍ଗେ ସଙ୍ଗେ ପତିତ ଜନର ଉଦ୍ଧାରଣ ଏବଂ ମନୋବାଞ୍ଛା ପୂରଣ କରି ମୁକ୍ତିଦାନ ନିମିତ୍ତ ସ୍ଥାନ, ଗୁଣ୍ଡି ଗୂଢ ବିବିଧ ଲୀଳା ବିରଚନ କରିଥାନ୍ତି । 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପ୍ରଥମ ଛାନ୍ଦରେ ଏହି ସମସ୍ତ ତତ୍ତ୍ୱର ବିସ୍ତୃତ ବିବରଣ ରହିଛି । (୧) ଏଥିରେ କବିଙ୍କ ଆଧ୍ୟାତ୍ମିକ ଅନୁଚିନ୍ତା, ହିନ୍ଦୁ ଦର୍ଶନ ପ୍ରତି ଅତୁଟ ନିଷ୍ଠା ଓ ବିଶ୍ୱାସ ପରିଲକ୍ଷିତ ହୁଏ ।

---

(୧) ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣ ଦେହ ତେଣୁ ଯେହି ନାମ ହେ ॥
ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ ।
ସାକ୍ଷୀ ପକ୍ଷୀ କରେ ପ୍ରଥମା ରୂପେ ଥୋଇ ଯେ ॥
ଯେ ବ୍ରହ୍ମ ହତ୍ୟା-ପାତକ-ନିପାତ ମହୀ ।
କପାଳ ମୋଚନ ତ୍ରିଲୋଚନ ସାକ୍ଷୀ ଯହିଁଯେ ॥
× × ×
ଯେ କମ୍ବୁକଣ୍ଟକ ରାଜା ନାମ ଜଗନ୍ନାଥ ।
ଚାରି ବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ ॥
× × ×
ଯାହା କଟାକ୍ଷ-କୁଠାର ପତନ ମାତରେ ।
ଅନେକ ଦୁଃଖ-ଅନୋକହକୁ ଛେଦିପାରେ ହେ ॥
ସେହି ପାଦ-ପଦ୍ମାସନା ପାଟ ମହାଦେବୀ ।
ଅଷ୍ଟ ଐଶ୍ୱର୍ଯ୍ୟ-ଦାୟିନୀ ଅଷ୍ଟ ଶକ୍ତି ସେବି ହେ ॥
ଭରସା କରି ଅଯନ୍ତ୍ର ଦୂରଦେଶୁଁ ପ୍ରାଣୀ ।
ଆରତ ଭକ୍ତଙ୍କ ଦୀନବନ୍ଧୁ ନାମ ଶୁଣି ହେ ॥



Digitized by PPRACHIN, SOA

ଭାରତ ବର୍ଷରେ ସଦାଚାର ପାଳନକୁ ଆଧ୍ୟାତ୍ମିକ ଜ୍ଞାନର ପ୍ରଥମ ସୋପାନ ଭାବରେ ଗ୍ରହଣ କରାଯାଇଛି । ଦର୍ଶନ ତତ୍ତ୍ୱରର ପ୍ରତିପାଦନ କରେ ଏବଂ ଏହି ତତ୍ତ୍ୱର ଅନୁସାରେ ଆଚରଣର ବ୍ୟବସ୍ଥା କରିବା ଧର୍ମର କାର୍ଯ୍ୟ । ଦର୍ଶନ ସିଦ୍ଧାନ୍ତର ପ୍ରତି-ପାଦକ ଏବଂ ଧର୍ମ ବ୍ୟବହାରର ପ୍ରଦର୍ଶକ । ଧାର୍ମିକ ଆଚାର ଦ୍ୱାରା କାର୍ଯ୍ୟାନ୍ୱିତ ନ ହେଲେ ଦର୍ଶନର ସ୍ଥିତି ନାହିଁ ଏବଂ ଦାର୍ଶନିକ ତତ୍ତ୍ୱର ଦ୍ୱାରା ପରିପୁଷ୍ଟ ନହେଲେ ଧର୍ମର ସତ୍ତା ଅପ୍ରତିଷ୍ଠିତ । ଦୁଃଖ ନିବୃତ୍ତିର କାରଣ ଅନୁସନ୍ଧାନରୁ ଧର୍ମର ସୃଷ୍ଟି ଏବଂ ଦୁଃଖର ଆତ୍ୟନ୍ତିକ ନିବୃତ୍ତିର ଏକମାତ୍ର ଉପାୟ ଦର୍ଶନ । ଭାରତୀୟ ଦର୍ଶନର ଆରମ୍ଭ ହିଁ ସଂସାର ବନ୍ଧନ ମୁମୁକ୍ଷା ବା ଆତ୍ୟନ୍ତିକ ଦୁଃଖ ଜିଜ୍ଞାସାରୁ ହିଁ ହୋଇଛି । ମାନବ ଜୀବନର ଚାରୋଟି ଉଦ୍ଦେଶ୍ୟ ସ୍ୱୀକାର କରାଯାଏ; ଯଥା— ଧର୍ମ, ଅର୍ଥ, କାମ ଓ ମୋକ୍ଷ । ମୋକ୍ଷ ଏହା ମଧ୍ୟରୁ ଶ୍ରେଷ୍ଠ । ସାମାନ୍ୟ ରୂପର ସ୍ୱରୂପରେ ଅବସ୍ଥିତିକୁ ହିଁ ମୋକ୍ଷ କୁହାଯାଇଥାଏ । 'ଆତ୍ମନଃ ସ୍ୱରୂପେଣ ବସ୍ଥିତିଃ ମୋକ୍ଷଃ' । ଏହି ବିଶ୍ୱରେ ମିଳୁଥିବା ସୁଖ ଆପାତତଃ ରମଣୀୟ । ଭୋଗକୁ ବାଦଦେଲେ ଏହାର ମୂଲ୍ୟହୀନତା ପ୍ରମାଣିତ ହେବ । ଜନ୍ମ ଓ ମୃତ୍ୟୁର କ୍ରମ ଜୀବନକୁ ବ୍ୟଥିତ କରିଥାଏ । ଏହି ବ୍ୟଥାରୁ ମୁକ୍ତି ପାଇବାର ସ୍ଥାୟୀ ଉପାୟ ହେଲା ସଂସାର ବନ୍ଧନରୁ ମୁକ୍ତ ବା ମୋକ୍ଷ ଲାଭ । ଏଥିପାଇଁ ଭାରତୀୟ ଦର୍ଶନରେ ମୋକ୍ଷକୁ ଜୀବନର ପରମଲକ୍ଷ୍ୟ ବା ପରମ ପୁରୁଷାର୍ଥ କୁହାଯାଇଥାଏ । ଏହିପରି ଦୃଶ୍ୟମାନ ଜଗତ ଦୁଃଖାତ୍ମକ । 'ପୁନରପି ଜନନଂ ପୁନରପି ମରଣଂ'— ଅର୍ଥାତ୍ ଜନ୍ମ-ମୃତ୍ୟୁର ଚକ୍ର ହିଁ ସବୁଠାରୁ ବଡ଼ ଦୁଃଖ । ଏହାର ଏକମାତ୍ର କାରଣ ଅବିଦ୍ୟା । ସମସ୍ତ ଦାର୍ଶନିକ ମାନେ ଏକ-ମତ ଯେ ଏହି ଜୀବନ ଦୁଃଖମୟ । ଯୋଗଦର୍ଶନ ଅନୁସାରେ ସମସ୍ତ ପଦାର୍ଥ ସୁଖ-ଦୁଃଖ ମୋହାତ୍ମକ ଅଟେ । କାରଣ ଏହା ତ୍ରିଗୁଣାତ୍ମକ । ଏହି ତ୍ରିଗୁଣାତ୍ମକ 'ସଂସାର ବନ୍ଧ'ର କାରଣ ଅଜ୍ଞାନତା ବସ୍ତୁର ଯଥାର୍ଥ ସ୍ୱରୂପକୁ ନ ବୁଝିବାହିଁ ଅଜ୍ଞାନତାର କାରଣ । ଏଥିରୁ ମୁକ୍ତି ହିଁ ମୋକ୍ଷ । ମୋକ୍ଷ ପ୍ରାପ୍ତିର ଦୁଇଟି ମାର୍ଗ ହେଲା— ମାୟାବନ୍ଧନରୁ ମୁକ୍ତି ଏବଂ ପରମାନନ୍ଦ ପ୍ରାପ୍ତି । ଦ୍ୱିତୀୟ ମାର୍ଗଟି ଭାବାତ୍ମକ ସତ୍ତାର ଦ୍ୟୋତକ । ଛାନ୍ଦୋଗ୍ୟ ଉପନିଷଦରେ ଏହି ମୋକ୍ଷର ଭାବାତ୍ମକ ସତ୍ତାର ଉଲ୍ଲେଖ

---

(୨) ଦଶ ଅବତାର ଲୀଳା ଯାହା ବିରଚନ ।
ଜନଙ୍କୁ ଦେଖାନ୍ତି ଯୁଗାନ୍ତର କଥାମାନ ॥
ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯାର ।
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାରନ୍ତେ ॥
(କୋ. ବ୍ର. ଗୁ.—ପ୍ରଥମ ଛାନ୍ଦ)



Digitized by PPRACHIN, SOA

କରି କୁହାଯାଇଛି ଯେ ମୁକ୍ତ ଜୀବ ଈଶ୍ୱରଙ୍କ ପ୍ରାପ୍ତହେବା ପାଇଁ ଦିବ୍ୟନେତ୍ର ଓ ମନ ଦ୍ୱାରା କାମନା ଗୁଡ଼ିକୁ ଦେଖି ରମଣ କରିଥାନ୍ତି । ବୈଶେଷିକ ସୂତ୍ରରେ ଉଲ୍ଲେଖ ଅଛି ଯେ ଆତ୍ମାର ନଅଟି ବିଶେଷ ଆତ୍ମଗୁଣ ହେଲା- ବୁଦ୍ଧି, ସୁଖ, ଦୁଃଖ, ଇଚ୍ଛା, ଦ୍ୱେଷ, ପ୍ରଯତ୍ନ, ଧର୍ମ, ଅଧର୍ମ ଏବଂ ସଂସ୍କାର । ଏହି ଗୁଣ ଗୁଡିକର ଆତ୍ୟନ୍ତିକ ଉଚ୍ଛେଦକୁ ମୋକ୍ଷ କୁହାଯାଇଥାଏ । ବେଦାନ୍ତ ଅନୁସାରେ ଆତ୍ମାର ସ୍ୱରୂପ ଜ୍ଞାନ ହିଁ ମୋକ୍ଷ । ମୀମାଂସା ମତରେ ନିତ୍ୟ ସୁଖର ଅଭିବ୍ୟକ୍ତିକୁ ମୋକ୍ଷ କୁହାଯାଇଥାଏ । ପୁନଶ୍ଚ ଏଥିରେ ଉଲ୍ଲେଖ ଅଛି ଯେ ତ୍ରିବିଧ ସାଂସାରିକ ବନ୍ଧନରୁ ସର୍ବଦା ବିଚ୍ଛିନ୍ନ ରହିବାର ଜ୍ଞାନକୁ ମୋକ୍ଷ କୁହାଯାଇଥାଏ । ନ୍ୟାୟ ଦର୍ଶନରେ ଦୁଃଖର ଆତ୍ୟନ୍ତିକ ନିବୃତ୍ତିକୁ ମୋକ୍ଷ କୁହାଯାଇଛି । ବୈଶେଷିକ ଦର୍ଶନ ଅନୁସାରେ ମୋକ୍ଷ ଲାଭ ହେଲେ ଅଦୃଷ୍ଟର ପ୍ରଭାବ ହ୍ରାସ ହୋଇ କର୍ମଚକ୍ରର ଗତି ସ୍ତବ୍ଧ ଅନ୍ତହୋଇ ଆତ୍ମାର ଶରୀର ସହିତ ସମ୍ବନ୍ଧ ସ୍ଥାପିତ ହୋଇଥାଏ । ଜନ୍ମ-ମୃତ୍ୟୁ ପରମ୍ପରାର ଅବସାନ ହୋଇ ଏଠାରେ ଦୁଃଖରୁ ମୁକ୍ତି ମିଳିଥାଏ । ବାୟୁ ପୁରାଣରେ ଜୀବ ଓ ବ୍ରହ୍ମର ଏକତାକୁ ମୋକ୍ଷ କୁହା-ଯାଇଛି । ଶାଣ୍ଡିଲ୍ୟ ଭକ୍ତି ସୂତ୍ରରେ କୁହାଯାଇଛି ଯେ ନିଷ୍କାମ ଭକ୍ତିଦ୍ୱାରା ଜୀବ ଅନ୍ତଃ କରଣର ଆତ୍ୟନ୍ତିକ ନାଶ ହେଲେ ବ୍ରହ୍ମାନନ୍ଦ ଲାଭ ହୋଇଥାଏ । ଏହି ବ୍ରହ୍ମାନନ୍ଦର ପ୍ରାପ୍ତିକୁ ମୋକ୍ଷ କୁହାଯାଇଥାଏ । ମୋକ୍ଷରେ କହିଲେ ଜୀବ ମାୟା ବନ୍ଧନରୁ ମୁକ୍ତ ହୋଇ ବ୍ରହ୍ମଲୋକରେ ଉପନୀତ ହେବା ପୂର୍ବକ ଦିବ୍ୟ ସୁଖ ଅନୁଭବ କରିଥାଏ । ଏହି ବ୍ରହ୍ମ ସ୍ଥିତିକୁ ମୋକ୍ଷ କୁହାଯାଇଥାଏ । ପ୍ରାଚୀନ ଶାସ୍ତ୍ରରେ ମୁକ୍ତିର କ୍ରମ ତିନି ପ୍ରକାର ବୋଲି ଦର୍ଶାଯାଇଛି; ଯଥା- କ୍ରମମୁକ୍ତି, ଜୀବନ୍ମୁକ୍ତି ଓ ବିଦେହ ମୁକ୍ତି । କ୍ରମ ମୁକ୍ତିରେ ଯୋଗୀ ଦୈବ ଗତିରେ କାର୍ଯ୍ୟ ବ୍ରହ୍ମ ମଧ୍ୟଦେଇ ବ୍ରହ୍ମଲୋକରେ ପହଞ୍ଚି ପରଂ ବ୍ରହ୍ମଙ୍କ ଠାରେ ଲୀନ ହୋଇଥାଏ । ଜୀବ ମୁକ୍ତିରେ ଜ୍ଞାନୀ ପୁରୁଷ ଶାରୀରିକ ଆସକ୍ତିରୁ ଦୂରରେ ରହି ଏବଂ ସାଂସାରିକ ବନ୍ଧନରୁ ଊର୍ଦ୍ଧ୍ୱରେ ରହି ଓ ଦ୍ୱନ୍ଦରେ ଧନାସକ୍ତ ରହି ଆତ୍ମ ଭାବରେ ସ୍ଥିତ ହୋଇଥାଏ । ବ୍ରହ୍ମଜ୍ଞାନ ହୋଇ ଜୀବ ପରଂବ୍ରହ୍ମ ହୋଇ ଯାଇଥାଏ । ଏଠାରେ ସେ ମୁକ୍ତି ଭାବ ଅନୁଭବ କରିଥାଏ । ଏଥି ପାଇଁ ଅନ୍ୟତ୍ର ସେ ଯାଇନଥାଏ । ବିଦେହ ମୁକ୍ତିରେ ଜ୍ଞାନାଗ୍ନି ଦ୍ୱାରା କର୍ମକ୍ଷୟ ହୋଇ ଜୀବର ମୋକ୍ଷ ସିଦ୍ଧି ଘଟିଥାଏ । ପ୍ରାରବ୍ଧକୁ ନଷ୍ଟକରି ଆତ୍ମଜ୍ଞାନୀ ପୁରୁଷ ଶରୀର ତ୍ୟାଗକରି ପରମ ଧନ ପ୍ରାପ୍ତି ହୋଇଥାଏ । ଜ୍ଞାନ ବସ୍ତୁଦ୍ୱାରା ଆତ୍ମତତ୍ତ୍ୱକୁ ଦେଖି ସେ ମୁକ୍ତି ଲାଭ କରିଥାଏ । ତାହାର ପୁନର୍ଜନ୍ମ ହୋଇ ନଥାଏ । ଭାଗବତ ଅନୁସାରେ ବିଦେହମୁକ୍ତି ପାଞ୍ଚ ପ୍ରକାର, ଯଥା- (୧) ସାଲୋକ୍ୟ, (୨) ସାରୂପ୍ୟ, (୩) ସାମୀପ୍ୟ, (୪) ସାଯୁଜ୍ୟ, ଓ (୫) ସାର୍ଷ୍ଟି, ସାଲୋକ୍ୟ ଓ ସାରୂପ୍ୟରେ ଜୀବ ଈଶ୍ୱରଙ୍କ ସହିତ କ୍ରମଶଃ ଲୋକ ଓ ରୂପରେ ଏକତା ସ୍ଥାପନ କରିଥାଏ । ସାମୀପ୍ୟରେ ଜୀବ ଈଶ୍ୱରଙ୍କ ସାମୀପ୍ୟତା ଏବଂ ସାର୍ଷ୍ଟିରେ ଈଶ୍ୱରଙ୍କ ସମାନ ଭୋଗପ୍ରାପ୍ତ ହୋଇଥାଏ । ସାଯୁଜ୍ୟ ମୁକ୍ତିରେ ଜୀବ ଓ



Digitized by PPRACHIN, SOA

ବ୍ରହ୍ମଙ୍କର ମିଳନ ଘଟିଥାଏ । ପରଂବ୍ରହ୍ମ ଜଗନ୍ନାଥ ଯେ ଏହି ଚତୁର୍ବିଧ ମୁକ୍ତି ଦବାରେ ସମର୍ଥ, କବି ତାହା ଦୃଢ଼ତାର ସହିତ ଉଲ୍ଲେଖ କରିଛନ୍ତି । ଭୁଷଣ୍ଡି କାକ ଏହାର ସାକ୍ଷ୍ୟ ବହନ କରେ । ୩ । ସେ କେବଳ ସାଂସାରିକ ଦୁଃଖ, ବେଦନା ଅବିଦ୍ୟା ଓ ଭବ ବନ୍ଧନରୁ ମାନବକୁ ଉଦ୍ଧାର କରିବାକୁ ସମର୍ଥ । ୪ । ଆଲୋଚ୍ୟ କାବ୍ୟରେ କବି ଉପେନ୍ଦ୍ର ବହୁ ଭାବରେ ଏହି ତଥ୍ୟ ଉପସ୍ଥାପନ କରିଛନ୍ତି ।

ଜ୍ଞାନ, କର୍ମ ଓ ଭକ୍ତି ଦ୍ୱାରା ମୁକ୍ତିର ସାଧନା କରାଯାଇଥାଏ । ମଣ୍ଡୁକ ଉପନିଷଦରେ କୁହାଯାଇଛି ଯେ ଜ୍ଞାନ ହେବାପରେ ହୃଦୟଗ୍ରନ୍ଥୀ ଖୋଲିଯାଇଥାଏ । ଏଠାରେ ସବୁ ସଂଶୟ ନଷ୍ଟ ହୋଇଥାଏ ଏବଂ ଜୀବ ବ୍ରହ୍ମମୟ ହୋଇଯାଇଥାଏ । ଗୀତାରେ କୁହାଯାଇଛି ଯେ ଜ୍ଞାନୀ ପୁରୁଷ ସବୁ ପ୍ରାଣୀମାନଙ୍କୁ ନିଜର ଆତ୍ମାପରି ଜ୍ଞାନ କରିଥାନ୍ତି । ତାଙ୍କ ହୃଦୟରେ ସବୁ ପ୍ରାଣୀଙ୍କ ପ୍ରତି ରାଗ, ଦ୍ୱେଷ ଶେଷ ହୋଇ ଯାଇଥାଏ । ଏହି ସ୍ତରରେ ଜ୍ଞାନୀ ପୁରୁଷଙ୍କର ସ୍ଥୂଳ ଓ ସୂକ୍ଷ୍ମ ଶରୀର ମଧ୍ୟରେ କୌଣସି ଭେଦ ନଥାଏ । ଆତ୍ମ ରମଣ କରୁଥିବା ଜ୍ଞାନୀ ପୁରୁଷ ସବୁ ପ୍ରାଣୀଙ୍କ ପ୍ରତି ସମାନ ବ୍ୟବହାର ପ୍ରଦର୍ଶନ କରି ଜୀବନଯାପନ କରିଥାନ୍ତି । ଗୀତାରେ ଜ୍ଞାନର ଅନନ୍ତର କର୍ମକୁ ମୋକ୍ଷର ସାଧନ ବୋଲି ଗ୍ରହଣ କରାଯାଇଛି । ଶ୍ୱେତାଶ୍ୱେତ ଉପନିଷଦରେ କୁହାଯାଇଛି ଯେ ଯେତେବେଳେ କର୍ମଯୋଗୀ ନିଜର ସମ୍ପୂର୍ଣ୍ଣ କର୍ମକୁ ଭଗବାନଙ୍କ ନିକଟରେ ଅର୍ପଣ କରିଦିଏ, ସେତେବେଳେ ସଂକୀର୍ଣ୍ଣ ସ୍ୱାର୍ଥକୈନ୍ଦ୍ରିକ ସାଂସାରିକ କର୍ମର ଅଭାବ ପରିଲକ୍ଷିତ ହୁଏ । ଏହି ନିଷ୍କାମ କର୍ମ ଦ୍ୱାରା ଜୀବ ଜନ୍ମ-ମୃତ୍ୟୁ ରୂପକ ମହାନ୍ ଭୟରୁ ମୁକ୍ତିପାଏ । ଜ୍ଞାନୀ ଜ୍ଞାନ ଯୋଗ ଦ୍ୱାରା ଯେପରି ପରମ-ଧାମକୁ ପ୍ରାପ୍ତ ହୁଏ, କର୍ମଯୋଗୀ ସେହିପରି ଜୀବନ ଓ ବିଶ୍ୱକୁ କର୍ମମୟଭାବରେ

---

(୩) 'ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ଦେଇ'— [କୋ.ବ୍ର.ସୁ- ପ୍ରଥମ ଗ୍ରନ୍ଥ]

(୪) 'ପାପତାପ ପଶୁ ନାଶ ସୁକର୍ମ ଉଦିତ ଯେ ।'

× × ×

ଅବିଦ୍ୟା ... ଷମ ଆଶୀବିଷଘାତି ଜନେ
ଜ୍ଞାନାଙ୍କ ... ପରାଧୀନେ ସେ ସ୍ଥାନ ଗମନ ହେ ।'

(କୋ.ବ୍ର.ସୁ- ପ୍ରଥମ ଗ୍ରନ୍ଥ)

॥ ସତ୍ୟାଅସୀ ॥

Digitized by PPRACHIN, SOA

ଅବଲୋକନ କରି  ଭଗବାନଙ୍କ ଘନିଷ୍ଠ ସାନ୍ନିଧ୍ୟ ଲାଭ କରିଥାଏ । ନିଷ୍କାମ କର୍ମ-ଯୋଗୀ ସମ୍ପୂର୍ଣ୍ଣ କର୍ମ କରୁଥିଲେ ମଧ୍ୟ କର୍ମଫଳରୁ ମୁକ୍ତ ରହିଥାଏ । ଏହାରି ମଧ୍ୟରେ ପରମ ଶାନ୍ତି ଲାଭ କରି ପରମପଦ  ଲାଭ  କରିଥାଏ ।  ସେହିପରି ଶାଣ୍ଡିଲ୍ୟ ଭକ୍ତି ସୂତ୍ରରେ ସ୍ପଷ୍ଟ ରୂପେ କୁହାଯାଇଛି ଯେ ଭକ୍ତିଦ୍ୱାରା ବୁଦ୍ଧିର ଅତ୍ୟନ୍ତ ଲୟର ବର୍ଣ୍ଣନା କରାଯାଇ ଈଶ୍ୱର ସାକ୍ଷାତକାର ରୂପବୋଧ ଦ୍ୱାରା ଭକ୍ତର  ଐକାନ୍ତିକତା  ଯୋଗୁଁ ମୋକ୍ଷ ଲାଭ ହୋଇଥାଏ ।  ଆଧ୍ୟାତ୍ମିକ ରାମାୟଣରେ କୁହାଯାଇଛି ଯେ  ଭକ୍ତିର ଉଦୟ ହେଲା ମାତ୍ରେ ହିଁ ଭଗବାନଙ୍କ ସ୍ୱରୂପର  ଅନୁଭବ ହୋଇଥାଏ ।  ଭକ୍ତର ଅନୁଭବ  ହେବାମାତ୍ରେ  ଜୀବର ଜନ୍ମରୁ ମୁକ୍ତିଲାଭ ହୁଏ ।  ଭାଗବତରେ ଉଲ୍ଲେଖ ଅଛି କି ନିରବଧି ନାମ ଓ ଗୁଣ କୀର୍ତ୍ତନ କଲେ ଭଗବାନ ଭକ୍ତର ହୃଦୟରେ ଆସୀନ ହୋଇଥାନ୍ତି । ଫଳରେ ଭକ୍ତର  ହୃଦୟରୁ ସାଂସାରିକ କାମନା  ବାସନା ବି ନଷ୍ଟ ହୋଇଯାଇଥାଏ । ତାଠାରେ  ଜ୍ଞାନ,-ବୈରାଗ୍ୟ  ଉଦୟ  ହୋଇ ପରମ କଲ୍ୟାଣ ସାଧିତ ହୋଇଥାଏ । କବି ଉପେନ୍ଦ୍ର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଏହି ଜ୍ଞାନ, କର୍ମ ଓ ଭକ୍ତିଭାବର ବିକାଶ ସାଧନରେ ତତ୍ପର ହୋଇଛନ୍ତି । ସେ ବହୁବିଧ ଭାବରେ ଜଗନ୍ନାଥଙ୍କର ମହତ୍ତ୍ୱ ପ୍ରଖ୍ୟାପନା,ତତ୍ତ୍ୱ ସମ୍ବନ୍ଧୀୟ  ଜ୍ଞାନ ଲାଭ ଏବଂ ଭକ୍ତି ଭାବନାରେ ବିହ୍ୱଳତାର ଭାବ  ସୃଷ୍ଟି କରିବା ପାଇଁ  ଯତ୍ନବାନ ହୋଇଛନ୍ତି ।  ଜଗନ୍ନାଥଙ୍କର ରୂପ ବର୍ଣ୍ଣନାରେ, ଗୁଣକୀର୍ତ୍ତନରେ, ଦେବତ୍ୱର ଅଲୌକିକ ମହିମା  ପ୍ରଦର୍ଶନରେ, ଭକ୍ତ ଜନର ମନୋବାଞ୍ଛା  ସିଦ୍ଧିରେ ତଥା  ପତିତ ଜନର  ତ୍ରାଣକର୍ତ୍ତା ଭାବରେ ବର୍ଣ୍ଣନାର  ବାହୁଲ୍ୟ ଏବଂ ସ୍ଥଳ  ବିଶେଷରେ  ବ୍ୟଞ୍ଜନାର  ମଧ୍ୟ ଦେଇ  କବି ଏହି ତ୍ରିଧାରାର  ସଫଳ  ତଥା ରସୋତ୍ତୀର୍ଣ୍ଣ  ଉପସ୍ଥାପନା  କରିବାରେ  ସମର୍ଥ ହୋଇଛନ୍ତି । ୫ ।  କବିଙ୍କର ଶାସ୍ତ୍ରୀୟ ପାଣ୍ଡିତ୍ୟ  ଏବଂ ଭାରତୀୟ ଧର୍ମ ଓ ଦର୍ଶନ

---

(୫) ଭାଗ୍ୟରୁ ଏ ଉପମାକାରକ ମୁଁ ହେଲି ।
ପୁଲକିତ-ଶରୀରେ ହରିରେ ସ୍ତୁତି କଲି ।
ମହିମା ଅନନ୍ତ ପ୍ରଭୁ ମହିମା ଅନନ୍ତ ।
ମନୋହାରୀ ସହୋଦର ହୋଇ ଯାର ଖ୍ୟାତ ।
ଅରିଦର-କର ବିଭୋ ଅରିଦର କର ।
ଯୁଗେ ଯୁଗେ ଧରି ନାନାବିଧ ଅବତାର ।
ବିଭୀଷଣ-ଅଘ ବିଭୀଷଣ-ଅଘ-ହର ।
ସ୍ଥାନ କରିଦେଲ ଲଙ୍କା ନିଜ କଳେବର ।
ଭବ-ବରଣି-ପୂଜିତ ହେ ଭବ- ବରଣି ।
ଶୁଚି-କବଳିକ ଚିଦାନନ୍ଦ ସଦା ଶୁଚି ।
[କୋ.ବ୍ର.ସୁ- ପ୍ରଥମ ଛାନ୍ଦ]



Digitized by PPRACHIN, SOA

ଶାସ୍ତ୍ରରେ ଗଭୀର ପ୍ରବେଶ ସଙ୍ଗେ କବିଙ୍କ ଗୁରୁଙ୍କର ଅପୂର୍ବ ପ୍ରକାଶ ଜନିତ ସମନ୍ୱୟରେ ଏହି ତତ୍ତ୍ୱ ଅଧିକ ରସୋଜ୍ଜ୍ୱଳ ତଥା ପ୍ରଭାବଶାଳୀ ହୋଇପାରିଛି ।

ଭାରତୀୟ ଦର୍ଶନରେ ପୁନର୍ଜନ୍ମ ବିଶ୍ୱାସ ଏକ ପ୍ରଧାନ ବିଷୟ । ଇହ ଜୀବନର ଦୁଃଖ ହେଉଛି ପୂର୍ବ ଜନ୍ମ ଦୁଷ୍କୃତର କାରଣ । କୃତକର୍ମର ଫଳ ମଣିଷ ଭୋଗ କରିବାକୁ ବାଧ୍ୟ । ହିନ୍ଦୁ ମାନେଇ ବିଶ୍ୱାସ କରନ୍ତି ଯେ ମାନବ ଜନ୍ମ ହେବାର ଅବ୍ୟବହିତ ପୂର୍ବରୁ ବିଧାତା ତା'ର କପାଳରେ ଭଲମନ୍ଦ ଫଳ ନିରୂପଣ କରିସାରିଥାଏ । ବିଧାତାଙ୍କ ଦ୍ୱାରା ମାନବର ଏହି ଲଲାଟ ଲିଖନ ତାହାର କର୍ମକୁ ଅନୁସରଣ କରି ହୋଇଥାଏ । ମନୁଷ୍ୟର କାର୍ଯ୍ୟ ଅନୁସାରେ ତାର ଭାଗ୍ୟ ନିରୂପିତ ହୋଇଥାଏ । ପୂର୍ବ ଜନ୍ମର ସୁକୃତ ବା ଦୁଷ୍କୃତ ଅନୁସାରେ ଇହ ଜନ୍ମରେ ମନୁଷ୍ୟ କର୍ମଫଳ ଭୋଗ କରେ । ଏହି ବିଶ୍ୱାସ ମାନବକୁ ସତ୍‌କର୍ମରେ ନିଯୁକ୍ତ କରାଏ । ପରବର୍ତ୍ତୀ ଜୀବନକୁ ସୁଖମୟ ଓ ମଙ୍ଗଳମୟ କରିବାକୁ ହେଲେ ଇହ ଜନ୍ମରେ ସୁକର୍ମ ସଂପାଦନାର ଆବଶ୍ୟକତା ରହିଛି । ନିଜ ଜୀବନକୁ ଧର୍ମ, ନ୍ୟାୟ, ଶାସ୍ତ୍ରାଦି ମାର୍ଗରେ ଚରିତ୍ରକୃତ କରିବାର ଆବଶ୍ୟକତା ରହିଛି । ଭଂଜନାୟକ-ନାୟିକାଙ୍କ ସୁକର୍ମ ଏବଂ ଏକନିଷ୍ଠ ପ୍ରେମ ସେମାନଙ୍କୁ ପରଜନ୍ମରେ ମିଳିତ ହେବାର ସୌଭାଗ୍ୟ ଆଣିଦେଇଛି । ସେମାନେ ନିଜର ଅନାବିଳ ପ୍ରେମ, ପରସ୍ପରର ଭଲ ପାଇବାର ଏକାଗ୍ରତା ଓ ସାଧନାର ଭିତରେ ଜନ୍ମ ଜନ୍ମାନ୍ତର ପାଇଁ ପରସ୍ପରକୁ ପାଇବାର ଆଶାପୋଷଣ କରିଛନ୍ତି । ପୂର୍ବ ଜନ୍ମର ଏହି ନିଷ୍ଠା ଓ ସାଧନରେ ସଫଳ କାମ ହୋଇ ଇହଜନ୍ମରେ ପରସ୍ପର ପତି-ପତ୍ନୀ ହେବାର ସୌଭାଗ୍ୟ ଲାଭ କରିଛନ୍ତି ।

ଅଦୃଷ୍ଟ/ଭାଗ୍ୟ ସବୁଠାରେ ବଳୀୟାନ । ଏହା ପ୍ରାରବ୍ଧ କର୍ମର ଅଧୀନ । ମଣିଷର ଭାଗ୍ୟ ଉପରେ କୌଣସି କର୍ତ୍ତୃତ୍ୱ ନାହିଁ । 'ଭାଗ୍ୟଂ ଫଳତି ସର୍ବତ୍ର ନ ବିଦ୍ୟା ନ ଚ ପୌରୁଷଂ' । କେବଳ ପ୍ରାଚୀନ ଭାରତୀୟ ସାହିତ୍ୟରେ କାହିଁକି ପାଶ୍ଚାତ୍ୟ ସାହିତ୍ୟରେ ମଧ୍ୟ ଭାଗ୍ୟର ବଳିଷ୍ଠରୂପ ଓ ଅପ୍ରତିହତ ପ୍ରଭାବ ସ୍ୱୀକୃତ । ଭାଗ୍ୟ ବିରୁଦ୍ଧରେ କୌଣସି ଅସ୍ତ୍ରଉତ୍ତୋଳନ କରାଯାଇପାରେନା । ଭାଗ୍ୟର ପଶାକାଠିରେ କେତେବେଳେ ରାଜା କୃଷକରେ ଓ କୃଷକ ରାଜାରେ ପରିଣତ ହୋଇଥାଏ । ୬ ।

---

6. It is Fate that flings dice,
And as she flings
of kings makes peasants,
And of peasants kings". Dryden.

॥ ଅଣାକବେ ॥

Digitized by PPRACHIN, SOA

ମହତ୍ ବ୍ୟକ୍ତି ମଧ୍ୟ ଭାଗ୍ୟ କବଳରୁ ବର୍ତ୍ତି ଯାଇପାରେନା । ପ୍ରାରବ୍ଧ କର୍ମ ଯୋଗୁଁ ଉତ୍ତମ ଲୋକ ଅଳ୍ପାୟୁ ହେଉଥିବା ସ୍ଥଳେ ମନ୍ଦ ପ୍ରକୃତର ଲୋକ ଦୀର୍ଘାୟୁ ହୋଇଥାଏ । ଭାଗ୍ୟ ହାତରେ ମଣିଷ ଏକ କ୍ରୀଡନକ । ଶୁଭ ଗ୍ରହମାନେ ମଧ୍ୟ ଅଦୃଷ୍ଟର ବଶବର୍ତ୍ତୀ ହୋଇଥାନ୍ତି । ରାମଙ୍କର ଅଭିଷେକ ଲଗ୍ନ ସ୍ଥିର ହୋଇଥିଲେ ହେଁ ସେ ବନବାସୀ ହେଲେ, ଶିବଙ୍କର ପ୍ରଭୁତ୍ୱ କ୍ଷମତା ଥିଲେ ମଧ୍ୟ, ହିମାଳୟ ପରି ଦେବତାତ୍ମା ଶ୍ୱଶୁର, କୁବେର ପରି ଧନବାନ ମିତ୍ର ଏବଂ ଗଣେଶଙ୍କ ପରି ଗଣ ଦେବତାଙ୍କ ପ୍ରଭୃ ସୁପୁତ୍ର ଥିଲେ ମଧ୍ୟ ସେ ଭିକ୍ଷାର୍ଥୀ ଓ ଶ୍ମଶାନବାସୀ । ୭ । ତେଣୁ ମଣିଷକୁ କୃତକର୍ମହିଁ ଭୋଗ କରିବାକୁ ପଡ଼ିବ । କଳ୍ପକୋଟି ଯୁଗ ଅତୀତ ହେଲେ ହେଁ କର୍ମର ଫଳ ବିନଷ୍ଟ ହୋଇନଥାଏ— "କୃତକର୍ମ କ୍ଷୟୋନାସ୍ତି କଳ୍ପକୋଟି ଶତୈରପି" ମାନବ ମାତୃଗର୍ଭରେ ଆଉଁ ଆଉଁ ବିଧାତା ତାହାର ଆୟୁ, କର୍ମ, ଧନ, ବିଦ୍ୟା ଓ ମୃତ୍ୟୁ ଏହି ପାଞ୍ଚୋଟି ନିର୍ଣ୍ଣୟ କରି ରଖିଥାଏ । ତେଣୁ କୁହାଯାଇଛି ଯେ—

'ଆୟୁଃ କର୍ମଚ ବିତ୍ତଂଚ ବି ନିଧନମେବଚ
ପଞ୍ଚୈତାନ୍ୟପି ସୃଜ୍ୟନ୍ତେ ଗର୍ଭସ୍ଥସ୍ୟୈବ ଦେହିନଃ ।

କବୀନ୍ଦ୍ର ଉପେନ୍ଦ୍ର ନିଜ କାବ୍ୟରେ ଭାଗ୍ୟର ପରାକ୍ରମ ଏବଂ ଦୈବୀଶକ୍ତିର ଅନତକ୍ରମତା ସ୍ୱୀକାର କରିଛନ୍ତି । ତାଙ୍କ ଦୃଷ୍ଟିରେ ସବୁର କର୍ମହିଁ ମୂଳ । ପୂର୍ବାର୍ଜିତ କର୍ମହିଁ ମଣିଷର ଇହଜନ୍ମର ଜୀବନ ଗତିକୁ ନିୟନ୍ତ୍ରିତ କରେ । ତାଙ୍କ ଦୃଷ୍ଟିରେ ସୁକର୍ମ ବଳରୁ ମଣିଷ ସମୁଦ୍ରକୁ ଚଳୁ କରିଦେଇଛି । ନର ଇନ୍ଦ୍ର ପଦାଧିକାରୀ ମଧ୍ୟ ହୋଇଛି ଏବଂ ନର ପୃଥିବୀକୁ ମଧ୍ୟ ଟେକି ଧରିଛି ।୮। କେହି କେହି

---

୭) କର୍ମଣୋହି ପ୍ରଧାନତ୍ୱଂ କିଂ କୁର୍ବନ୍ତି ଶୁଭାଃ ଗ୍ରହାଃ
ବଶିଷ୍ଠ ଦତ୍ତଲଗ୍ନଂ ଚ ରାମଃ କିଂ ଭ୍ରମତେ ବନମ୍ ।"
"ସ୍ୱୟଂ ମହେଶ ଶ୍ୱଶୁରୋ ନଗେଶଃ ।
ତଥାପି ଭିକ୍ଷାଟନ ମେବା ଶମ୍ଭୋ ।
ସଖା ଧନେ ଶସ୍ତନୟୋ ଗଣେଶଃ
ବଳୀୟସୀ କେବଳ ମୀଶ୍ୱରେଚ୍ଛା ।"

୮) 'ବୋଇଲା ଆଳୀ କର୍ମାର୍ଥେ ଭଳୁ; ନୋହିଲା ହୁଏ କରମ ବଳୁ
କରିଅଛନ୍ତି ସମୁଦ୍ର ଚଳୁ କେବଳ ନରେସେ ।
ନରେ ସମସ୍ତେ ଇନ୍ଦ୍ର ହୋଇଛି, ନରେ ଧରଣୀ ଟେକି ଧରିଛି'
(କୋ·ବ୍ର·ସୁ· ଛା- ୨୭)

॥ ନବେ ॥

Digitized by PPRACHIN, SOA

କର୍ମ ବଳରେ ନିଜ କର୍ମରେ ସଫଳତା ଲାଭ କରି ଦୁର୍ଲ୍ଲଭ ପଦାର୍ଥ ପ୍ରାପ୍ତ ହେଉଥିବା ସ୍ଥଳେ କେହି କେହି ଅକ୍ଳାନ୍ତ ଉଦ୍ୟମ ସତ୍ତ୍ୱେ କର୍ମ ବିପାକରୁ ସୁଫଳ ଲାଭ କରି-ପାରନ୍ତି ନାହିଁ । ରାକ୍ଷସମାନେ ସମୁଦ୍ର ମନ୍ଥନ କରି ସୁଦ୍ଧା ଅମୃତ ପାନରେ ସକ୍ଷମ ହୋଇନଥିବା ସ୍ଥଳେ ବାନର ସୁଗ୍ରୀବ ବନରେ ଥାଇ ଓ ସ୍ୱୟଂପ୍ରଭା ପାତାଳରେ ଥାଇ ବଳବତୀ ସାଧନା ବା ଉଦ୍‌ଯୋଗରେ କୃତୀ ହୋଇନଥିଲେ ହେଁ ରାମଚନ୍ଦ୍ରଙ୍କ ଠାରୁ ଉତ୍ତମ ବର ଲାଭ କରିପାରିଥିଲେ । ୯ ।

ପରିଶେଷରେ ଏତିକି କୁହାଯାଇପାରେ ଯେ କବିସମ୍ରାଟ ଉପେନ୍ଦ୍ର ତାଙ୍କ କାବ୍ୟାବଳୀରେ ପ୍ରାଚୀନ ଭାରତୀୟ ଆଧ୍ୟାତ୍ମିକ ଦର୍ଶନର ପୃଷ୍ଠପୋଷକତା କରିଛନ୍ତି । "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟରେ ତାଙ୍କର ଏହି ଦାର୍ଶନିକ ଅନୁଚିନ୍ତା ଜଗନ୍ନାଥଙ୍କୁ କେନ୍ଦ୍ର କରି ମଙ୍ଗଳା ଚରଣରେ ଯେପରି ପରିସ୍ଫୁଟ, କାବ୍ୟକ କଥା ବସ୍ତୁର ଅଗ୍ରଗତି ପର୍ଯ୍ୟାୟରେ ତାହା ସେହିପରି ସ୍ୱତଃସ୍ଫୂର୍ତ୍ତିଭାବରେ ଅଭିବ୍ୟକ୍ତ । ରସ ଓ ଧ୍ୱନିର ଭାବାବେଶରେ ତାଙ୍କ ଆଧ୍ୟାତ୍ମିକ ଚେତନା କାବ୍ୟକୁ ଯେପରି ଝଙ୍କୃତ କରିଛି, ପାଠକ ପ୍ରାଣକୁ ସେହିପରି ଉଦ୍‌ବେଳିତ କରିଛି । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଉପେନ୍ଦ୍ରଙ୍କ ବଳିଷ୍ଠ କବି ପ୍ରତିଭା ଯେପରି ଚରମ ଅଭିବ୍ୟକ୍ତି ଘଟିଛି, ତାଙ୍କ ଆଧ୍ୟାତ୍ମିକ ଚେତନା ସେହିପରି ତାତ୍ତ୍ୱିକ ଓ ଭାବନିଷ୍ଠ ହୋଇପାରିଛି । ମହାକବି ଉପେନ୍ଦ୍ରଙ୍କ ତତ୍ତ୍ୱଦର୍ଶୀ ଦୃଷ୍ଟିକୋଣ ଓ ସାଧନ ନିଷ୍ଠ ଜୀବନର ସମୁଚିତ ପ୍ରକାଶ ଏଥିରେ ସମ୍ଭବ ହୋଇପାରିଛି । ବିବିଧ ପୁରାଣ ପ୍ରସଙ୍ଗାନୁଶୀଳନ, ଆଧ୍ୟାତ୍ମିକ ଗ୍ରନ୍ଥ

---

୯) "ସିନ୍ଧୁଠାରୁ ମୂଳକର୍ମ ଦୁର୍ଲ୍ଲଭ ଲଭଇ
ଉଦ୍ୟମେ କର୍ମ ବିପାକେ କାର୍ଯ୍ୟକୁ ନପାଇ ଯେ ।
ବନେ ପାତାଳେ ସୁଗ୍ରୀବ ସ୍ୱୟଂପ୍ରଭା ଥିଲେ
ତାଙ୍କ କି ଉଦ୍ୟମେ ରାମଚନ୍ଦ୍ର ବରଦେଲେ ଯେ ।
ସିନ୍ଧୁ ମନ୍ଥନେ ଶ୍ରମ କରିଣ ଅସୁରେ ।
କ୍ଷମ ନୋହିଲେ ସେ ଆଉ ଅମୃତ ପାନରେ ଯେ ।

× × ×

ଭୋଗ ଈଶ୍ୱରେ ଶୃଗାଳ ରାକ୍ଷାସରେ ଲଙ୍କା
ଏକଥା ସୁମରି ମନେଥିଲି ବଡ ଶଙ୍କା ଯେ ।"

(କୋ:ବ୍ର.ସୁ: ୨୧ ଛାନ୍ଦ)

॥ ଏକାନବେ ॥

Digitized by PPRACHIN, SOA

ଗୁଡ଼ିକର ଗଭୀର ଅଧ୍ୟୟନ ଏବଂ ଦିବ୍ୟଚେତନାର ଉପଲବ୍ଧି ପାଇଁ ଅସୀମ ଅନୁରାଗ କବିଙ୍କ ତତ୍ତ୍ୱସମ୍ବନ୍ଧୀୟ ଜ୍ଞାନର ପରିସୀମାକୁ ବର୍ଦ୍ଧନ କରିଛି । ସଂକ୍ଷେପରେ କହିଲେ, 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଉପେନ୍ଦ୍ରଙ୍କୁ ଜଣେ ପରମ ଭକ୍ତ, ସାଧକ ଏବଂ ଗଭୀର ଆଧ୍ୟାତ୍ମବାଦୀ ଭାବରେ ଦେଖିବାକୁ ମିଳେ ।



ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ସମ୍ବଲପୁର ବିଶ୍ୱବିଦ୍ୟାଳୟ
ଜ୍ୟୋତିବିହାର, ବୁର୍ଲା, ସମ୍ବଲପୁର ।

|| ବସ୍ମାନବେ ||

Digitized by PPRACHIN, SOA

# ॥ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନାୟିକାର ସୌନ୍ଦର୍ଯ୍ୟ ନିରୂପଣ ॥

——ଡକ୍ଟର ବନମାଳୀ ବାରିକ

କାବ୍ୟରେ ନାୟିକା ସିନା ପ୍ରଧାନ
ତାହାକୁ ଘେନି ସବୁର ସମାନ
ଏ ଘେନି ଆଗ ତାର ବର୍ଣ୍ଣନା
ହେଲା ଏ କବି ପରଂପରା ସିନା ।

ଲୋକନାଥ ବିଦ୍ୟାଧର
(ପଦ୍ମାବତୀ ପରିଣୟ/ମହାଗ୍ରନ୍ଥ)

ଓଡ଼ିଆ ରୀତି କାବ୍ୟ ପରଂପରା ମୁଖ୍ୟତଃ ନାୟିକା ପ୍ରଧାନ । ରାଜକବି ଧନଞ୍ଜୟ ଭଞ୍ଜଙ୍କଠାରୁ ଆରମ୍ଭ କରି କବିସୂର୍ଯ୍ୟ ବଳଦେବଙ୍କ ପର୍ଯ୍ୟନ୍ତ ଏହି ଧାରା ଶବ୍ଦ-କାରୁକାର୍ଯ୍ୟର ବିପୁଳତାରେ ସମୃଦ୍ଧ । ନାୟକ ନାୟିକାଙ୍କ ଏକନିଷ୍ଠ ପ୍ରଣୟ ବ୍ୟାପାର କାବ୍ୟଗୁଡ଼ିକର ଆତ୍ମିକ ସନ୍ଦେଶ ହୋଇଥିଲେ ହେଁ ପ୍ରତ୍ୟେକ କବିର କାବ୍ୟକଳା ଏକ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାରେ ବିଭୂଷିତ । ଉପେନ୍ଦ୍ର ଭଞ୍ଜ ଏହି କାଳର ସର୍ବଶ୍ରେଷ୍ଠ ପ୍ରତିନିଧି । ଯୁଗରୁଚିର ଅନୁରୋଧରେ ସେ କାବ୍ୟ ରଚନା କରିଥିଲେ ହେଁ ତାଙ୍କ ଲେଖନୀର ଯାଦୁକରୀ ସ୍ପର୍ଶ ସର୍ବତ୍ର ବିକଶିତ ।

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କବିଙ୍କର ଅନ୍ୟତମ ବିଶିଷ୍ଟ ରଚନା । ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସଙ୍କ ମତରେ- "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଉପେନ୍ଦ୍ରଙ୍କ ରଚନାବଳୀ ମଧ୍ୟରେ ତଥା ଓଡ଼ିଆ ସାହିତ୍ୟରେ ସର୍ବଶ୍ରେଷ୍ଠ କାବ୍ୟ । ଭାବ,ଭାଷା, ଅଳଙ୍କାର ପ୍ରୟୋଗ, ବର୍ଣ୍ଣନା ଚାତୁରୀ ଓ ପାଣ୍ଡିତ୍ୟ ଏ ସମସ୍ତ ଦିଗରୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଅତୁଳନୀୟ ଅଟେ । କେବଳ ଓଡ଼ିଆ କାହିଁକି, ଭାରତର ଯେ କୌଣସି ଭାଷାରେ



Digitized by PPRACHIN, SOA

ଏହା ସମକକ୍ଷ କାବ୍ୟ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ" (ଓଡ଼ିଆ ସାହିତ୍ୟର ଇତିହାସ: ୨ୟ ଭାଗ) ଉପେନ୍ଦ୍ରଙ୍କ ନିଜ ଭାଷାରେ:

କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ଜଗତନାଥ ସାକ୍ଷାତ
ଜାତ କଲେ କ୍ଷୀରାର୍ଣ୍ଣବୁ ସୁଧା ମୋର ଗୀରାର୍ଣ୍ଣବୁ ରସ ଗୀତ
ସେ ସତ, ସେ ବିବୁଧ ଏ ବୁଧ ରଞ୍ଜିତ
ବୈଚିତ୍ର୍ୟ ଖଳରେ ଅଧରଞ୍ଜିତ । ସେ ଗ୍ରାସିବ ହେବ ରାହୁ ମତ ।

ବାସ୍ତବିକ କ୍ଷୀରାର୍ଣ୍ଣବରୁ ସୁଧା ଜାତ ହେଲା ପରି ଉପେନ୍ଦ୍ରଙ୍କ ଗୀରାର୍ଣ୍ଣବରୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ସୃଷ୍ଟି । ବହୁ ସ୍ଥଳରେ ସେ ଏହାର ବିଭିନ୍ନ ବୈଶିଷ୍ଟ୍ୟର (ଯଥା: ନାୟିକା ବର୍ଣ୍ଣନା, ଶବ୍ଦ ଅର୍ଥର ବିଚକ୍ଷଣତା, ଆଳଂକାରିକ କୃତିତ୍ୱ, ପାଣ୍ଡିତ୍ୟର ପରାକାଷ୍ଠା, ନୈଷଧର ସମଧର୍ମିତା ଇତ୍ୟାଦି) ସୂଚନା ଦେଇ ପାଠକ ମାନଙ୍କର ସତ୍ୱର ଦୃଷ୍ଟି ଏଥିପ୍ରତି ଆକର୍ଷଣ କରିଛନ୍ତି । ମାତ୍ର ନାୟିକାର ସୌନ୍ଦର୍ଯ୍ୟ ନିରୂପଣ ପ୍ରସଙ୍ଗରେ ଉପେନ୍ଦ୍ରଙ୍କ ଆଗ୍ରହ ଓ ଉଦ୍ୟମ ଅପରସୀମ ଥିବା ମନେହୁଏ ।

ସୌନ୍ଦର୍ଯ୍ୟର ସ୍ୱରୂପ:—

ସୌନ୍ଦର୍ଯ୍ୟର ନିର୍ଦ୍ଦିଷ୍ଟ ସଜ୍ଞା ଓ ସ୍ୱରୂପ ସଂପର୍କରେ ବିତର୍କର ଅନ୍ତ ନାହିଁ । ଭିନ୍ନ ଭିନ୍ନ ସମୟରେ କବି, ଲେଖକ, ଦାର୍ଶନିକଗଣ ଏହାର ଭିନ୍ନ ଭିନ୍ନ ବ୍ୟାଖ୍ୟା କରିଯାଇଛନ୍ତି । ଯେପରି ଜଣେ ରୋମାଣ୍ଟିକ୍ କବି ପକ୍ଷରେ ଯାହା ସୁନ୍ଦର, ଜଣେ ସମାଜବାଦୀ କବି ପକ୍ଷରେ ତାହା ସୁନ୍ଦର ହୋଇନପାରେ । ସୁତରାଂ ସୌନ୍ଦର୍ଯ୍ୟର ବିଚାର କଲାବେଳେ ଦେଶ କାଳର ଊର୍ଦ୍ଧ୍ୱରେ ଏକ ସାର୍ବଜନୀନ ଧାରଣାକୁ ସ୍ୱୀକାର କରିବା ବାଞ୍ଛନୀୟ । କବି ମାଘ କହିଛନ୍ତି :—"କ୍ଷଣେ କ୍ଷଣେ ଯନ୍ନବତାମୁପୈତି-ତଦେବ ରୂପ ରମଣୀୟତାୟାଃ ।" ଅର୍ଥାତ୍ ପ୍ରତି ମୁହୂର୍ତ୍ତରେ ଯାହା ନବ ନବ ରୂପରେ ପ୍ରତିଭାତ ହୁଏ, ତାହାହିଁ ରମଣୀୟ । ଇଂରାଜୀ କବି କୀଟ୍ସ୍‌ଙ୍କ ମତରେ— "A thing of beauty is joy for ever," ବୋଧ ହୁଏ ଏଇ ଦୁଇଟି ଉକ୍ତି ଆମର ସୌନ୍ଦର୍ଯ୍ୟ ଧାରଣାକୁ ଯଥାର୍ଥ ଭିତ୍ତି ଯୋଗାଇ ପାରିବ ।

ପ୍ରତ୍ୟେକ ସୁନ୍ଦର ବସ୍ତୁ ମଣିଷର ପ୍ରାଣକୁ ପୁଲକିତ କରେ । ଏହାର ରୂପ ତ୍ରିବିଧ, ପ୍ରାକୃତିକ, ମାନବୀୟ ଓ କୃତ୍ରିମ । ଋତୁ ପର୍ଯ୍ୟାୟ କ୍ରମେ ପ୍ରକୃତିର ନବ ନବ ରୂପ ସୁଷମା ମଣିଷର ଦେହ, ମନ ଓ ପ୍ରବୃତ୍ତିକୁ କିପରି ଉଦ୍‌ବୋଧିତ କରେ ।



Digitized by PPRACHIN, SOA

ତାହାର ଚିହ୍ନ ପୃଥିବୀର ପ୍ରତ୍ୟେକ ସାହିତ୍ୟରେ ସୁଲଭ । ନରନାରୀର ରୂପ, ଲାବଣ୍ୟ, ଅଙ୍ଗ ବିକାଶାଦି ମାନବୀୟ ସୌନ୍ଦର୍ଯ୍ୟର ପର୍ଯ୍ୟାୟଭୁକ୍ତ । ପୁରାଣ, କାବ୍ୟ ଓ ଅଳଙ୍କାର ଶାସ୍ତ୍ରରେ ସର୍ବତ୍ର ନାରୀ ସୌନ୍ଦର୍ଯ୍ୟର ମହିମା ଗାନ କରାଯାଇଛି । ଯଦିଓ ପୁରୁଷ ଓ ନାରୀ ପରସ୍ପର ରୂପର ଆକର୍ଷଣରେ ପରସ୍ପରର ନିକଟବର୍ତ୍ତୀ ହୋଇଥାନ୍ତି ଓ ପରେ ପରେ ଦୁହେଁ ରୂପ ଓ ଗୁଣର ରାଜ୍ୟରେ ବିଚରଣ କରନ୍ତି । ଚଣ୍ଡୀ ଦାସଙ୍କ ଭାଷାରେ :—

ରୂପ ଲାଗି ଆଖି କାନ୍ଦେ ଗୁଣେ ମନ ଭୋର
ପ୍ରତି ଅଂଗ ଲାଗି କାନ୍ଦେ ପ୍ରତି ଅଂଗ ମୋର ।

ଦେହ ଶୋଭାକୁ ବହୁଗୁଣିତ କରିବା ପାଇଁ କିଛି କୃତ୍ରିମ ଆଭୂଷଣ (ପ୍ରସାଧନ, ପରିଧାନ, ଅଳଂକାର)ର ଆବଶ୍ୟକତା ପଡ଼େ । ନାରୀ ଓ ପୁରୁଷ ଉଭୟେ ଏବଂ ବିଧ ଭୂଷଣରେ ମଣ୍ଡିତ ହୋଇଥାନ୍ତି । ସୁତରାଂ ସୌନ୍ଦର୍ଯ୍ୟ ନିରୂପଣ ପ୍ରସଂଗରେ ଏଭଳି ଭୂଷଣର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କବି ଉପେନ୍ଦ୍ର ମଧ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବେଶ ରଚନା ବିଷୟ ବର୍ଣ୍ଣନା କଲାବେଳେ, ଏଇ କଥା ସ୍ପଷ୍ଟ ରୂପେ ଘୋଷଣା କରିଛନ୍ତି :—

ତଥାପି ଭୂଷଣ ନୁହେଁ ଦୂଷଣ
ତୁହି ଚନ୍ଦ୍ରମା ସେ ରଜନୀ ଜାଣ । ୧୨/୭

ନାୟିକା ସୌନ୍ଦର୍ଯ୍ୟ : କାବ୍ୟିକ ଦୃଷ୍ଟି :—

ସବୁ ଦେଶରେ ଓ ସବୁ କାଳରେ ନାରୀ ସୌନ୍ଦର୍ଯ୍ୟର ଉପାସନା ପାଇଁ କବି ମାନଙ୍କର ଆଗ୍ରହାତିଶଯ୍ୟ ପରିଲକ୍ଷିତ ହୋଇଥାଏ । ବିଶେଷତଃ ଦେହାଶ୍ରିତ ରୂପର ବର୍ଣ୍ଣନା ଏମାନଙ୍କର ପ୍ରଧାନ ଉପାଦାନ । ନାୟିକାର ଗଠନ ସୌନ୍ଦର୍ଯ୍ୟ ଯଥା :— କେଶ, କପୋଳ, ନେତ୍ର, ନାସିକା, ଅଧର, ସ୍ତନ, ନାଭି, ବାହୁ, ନିତମ୍ବ ଆଦିର ପ୍ରଶଂସାରେ ଉପମା ରାଜି ଅଜାଡ଼ି ହୋଇ ପଡ଼ିଛି । ଏତଦ୍‌ଭିନ୍ନ ତା ର କମନୀୟ ଅଙ୍ଗଭଙ୍ଗୀ ଯଥା :— ଅଳସ ଗମନ, ବଙ୍କିମ କଟାକ୍ଷ, ସ୍ମିତ ହାସ୍ୟ, ଲଳିତ ଦୃଷ୍ଟି ଆଦିକୁ କାବ୍ୟ ରୂପ ଦେବାପାଇଁ ଯେ କେତେ ଶ୍ରମ ଓ କେତେ ସାଧନା ଲୋଡ଼ା ତାହା ପ୍ରତ୍ୟେକ କବିର କେବଳ ଅନୁଭବର ବିଷୟ । ଅନ୍ୟମାନଙ୍କ ପକ୍ଷରେ ତାହା କଳନା କରିବା ଏକାନ୍ତ ଅସମ୍ଭବ । କି ଧର୍ମୀୟ ସାହିତ୍ୟ, କି ବିଦଗ୍ଧ ସାହିତ୍ୟ, କି ଗଣ ସାହିତ୍ୟ-ସକଳ କ୍ଷେତ୍ରରେ ନାୟିକା ସୌନ୍ଦର୍ଯ୍ୟ ବର୍ଣ୍ଣନାର କାବ୍ୟିକ ବିଳାସ ଦୃଷ୍ଟିଗୋଚର ହୁଏ ।



Digitized by PPRACHIN, SOA

ପବିତ୍ର ବାଇବେଲର 'ସୋଲମନର ସଙ୍ଗୀତ' (song of solomon) ଏହାର ଏକ ବଶିଷ୍ଟ ଉଦାହରଣ । ଧର୍ମଯାଜକଗଣ ଏହାର ଆଧ୍ୟାତ୍ମିକ ଭାଷ୍ୟ ତିଆର କରିଥିଲେ ହେଁ ଏହା ଯେ ମାନବୀୟ ରୂପ ଉପାସନାର ପ୍ରକୃଷ୍ଟ ନିଦର୍ଶନ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଗୋଟିଏ କବିତାର କିୟଦଂଶ ଏଠାରେ ଉଦ୍ଧାର କରାଯାଉଛି :—

"How beautyful are the feet with ehoes, prince's daughter, the joints of the thighs are like jewels the work of the hands of a cunning work-man. X X X

The two breasts are like two young roes that are twins." × X

The Holy Bible (song of solomon :7/1-6)

ନାୟିକାର ରୂପରାଗ ଅଙ୍କନ କରିବାରେ କାଳିଦାସଙ୍କ କୃତିତ୍ୱ ବାସ୍ତବିକ ଅତୁଳନୀୟ । ଦେହକାନ୍ତି, ଦଶନ, ଅଧର, କଣ୍ଠ, ନାଭି, ନୟନର ବର୍ଣ୍ଣନା ସହ ଗତିର ମନ୍ଥରତା, ପୟୋଧରର ନମ୍ରତା ଆଦି ଅବୟବ ବିଳାସ ମଧ୍ୟ ତାଙ୍କ କାବ୍ୟ ଦୃଷ୍ଟିରେ ଅନୁରଞ୍ଜିତ । ଗୋଟିଏ ଉଦାହରଣ :—

ତନ୍ୱୀ ଶ୍ୟାମା ଶିଖରି ଦଶନା ପକ୍ୱ ବିମ୍ବାଧରୋଷ୍ଠୀ
ମଧ୍ୟେ କ୍ଷାମା ଚକିତ-ହରିଣୀ-ପ୍ରେକ୍ଷଣା ନିମ୍ନ ନାଭିଃ
ଶ୍ରୋଣୀ ଭାରାଦଲସ ଗମନା ସ୍ତୋକନମ୍ରା ସ୍ତନାଭ୍ୟାଂ
ଯା ତତ୍ର ସ୍ୟାଦ୍ୟୁବତି ବିଷୟେ ସୃଷ୍ଟିରାଦ୍ୟେବ ଧାତୁଃ ।

ମେଘଦୂତ : ଉତ୍ତର/୧୯

ସାରଳା ଦାସଙ୍କ ମହାଭାରତରେ ନାୟିକା ସୌନ୍ଦର୍ଯ୍ୟର ଅନ୍ତରଙ୍ଗ ଚିତ୍ର ଯେଉଁଳି ଫୁଟିଛି, ତାହା ଅତ୍ୟନ୍ତ ହୃଦୟଗ୍ରାହୀ । ନିରାଡ଼ମ୍ବର ଶୈଳୀ ହିଁ ତାଙ୍କ ରଚନାର ବିଶେଷତ୍ୱ । ଯେଉଁଥିପାଇଁ ଗଣମାନସରେ ଏହାର ପ୍ରତିଷ୍ଠା ସୁଦୂର ପ୍ରସାରୀ । ଉଦାହରଣ ସ୍ୱରୂପ : — ·

ଆକୁଞ୍ଚିତ କେଶ, ଗହଳ ଚିକୁର
କୁସୁମ ବନ୍ଧନେ ବିହରନ୍ତି ମଧୁକର .

॥ ଛୟାନବେ ॥

Digitized by PPRACHIN, SOA

ରସାଣ ପଜ ପ୍ରାପ୍ତେ ଧରିଛି ଲଲାଟ ପାଟି
ବନ୍ଧୁକ ଅଧର, ଡ଼ାଳିମ୍ବ ବୀଜ ଦଶନ, ବିମ୍ବୋଷ୍ଠୀ
ସ୍ୱେକ ଖଣ୍ଡ କପୋଳ, ଖଞ୍ଜିତ ଭ୍ରୂଲତା
ରୋମାବଳୀ ଅମୂଲ୍ୟ ଧରିଛି ବନିତା । ଇତ୍ୟାଦି

( ଆଦି/୨ୟ ପୃ. ୭୨୩ ପ୍ରକାଶକ. ଓଡ଼ିଶା ସାଂସ୍କୃତିକ ବ୍ୟାପାର ବିଭାଗ )

## ନାୟିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା : ଭଞ୍ଜୀୟ କାବ୍ୟ :—

କବି ଉପେନ୍ଦ୍ରଙ୍କ କାବ୍ୟ ସୃଷ୍ଟିରେ ନାୟିକାର ରୂପ ରଚନା ଯେଭଳି ବିଦଗ୍ଧ ରୁଚି ସମ୍ମତ, ସେହିଭଳି ରସିକତାପୂର୍ଣ୍ଣ । ତାଙ୍କର ସମସ୍ତ ପ୍ରଧାନ କାବ୍ୟରେ ଯୌବନ ବର୍ଣ୍ଣନା ପାଇଁ ଅବାରିତ ଆଗ୍ରହ ପରିଲକ୍ଷିତ ହୁଏ । ପୁଣି କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବିଭିନ୍ନ ଛାନ୍ଦରେ ବିଭିନ୍ନ ପ୍ରସଂଗ କ୍ରମେ ନାୟିକା ଶୋଭା ବର୍ଣ୍ଣନା ଯେପରି କରାଯାଇଛି, ତାହାକୁ ସ୍ୱତନ୍ତ୍ର ଭାବେ ବିଚାର କରିବା ଏହି ଆଲୋଚନାର ଉଦ୍ଦେଶ୍ୟ ।

ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟରେ କିପରି ନାୟିକା ଶୋଭାର ମହିମା ବର୍ଣ୍ଣିତ ତାହାର ଏକ ସଂକ୍ଷିପ୍ତ ସୂଚନା ଏଠାରେ ପ୍ରଦତ୍ତ । ସେଥିରୁ ଭଞ୍ଜୀୟ କାବ୍ୟ ଧାରାରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଗୁରୁତ୍ୱ ସହଜରେ ଅନୁମାନ କରାଯାଇପାରେ ।

| କାବ୍ୟ : | ଛାନ୍ଦ ସଂଖ୍ୟା : | କେଉଁ କେଉଁ ଛାନ୍ଦ |
|---|---|---|
| ରସିକ ହାରାବଳୀ | ୧ | (୨ୟ) |
| ପ୍ରେମ ସୁଧାନିଧି | ୨ | (୩ୟ, ୪ର୍ଥ) |
| ସୁଭଦ୍ରା ପରିଣୟ | ୩ | (୩ୟ, ୪ର୍ଥ, ୭ମ) |
| ରସ ଲେଖା | ୪ | (୨ୟ,୪ର୍ଥ,୫ମ,୧୩ଶ) |
| ବୈଦେହୀଶ ବିଳାସ | ୫ | (୩ୟ, ୮ମ, ୧୦ମ, ୧୧ଶ, ୩୩ଶ) |
| ଲାବଣ୍ୟବତୀ | ୮ | (୩ୟ, ୪ର୍ଥ, ୧୦ମ, ୧୧ଶ, ୧୭ଶ,୧୯ଶ, ୨୭ଶ, ୩୨ଶ) |
| କୋଟିବ୍ରହ୍ମାଣ୍ଡ ସୁନ୍ଦରୀ | ୧୪ | (୨ୟ, ୩ୟ, ୫ମ, ୬ଷ୍ଠ, ୭ମ, ୮ମ, ୯ମ ୧୦ମ, ୧୧ଶ, ୧୨ଶ,୧୩ଶ, ୧୪ଶ,୧୭ଶ,୨୦ଶ) |

ଏତଦ୍‌ଭିନ୍ନ ଭଞ୍ଜୀୟ କାବ୍ୟର ବିଭିନ୍ନ ସ୍ଥଳରେ ନାୟିକା ସୌନ୍ଦର୍ଯ୍ୟର ସାମସ୍ତିକ/ସଂକ୍ଷିପ୍ତ ଚିତ୍ର ମଧ୍ୟ ପରିଲକ୍ଷିତ । ସେ ଗୁଡ଼ିକର ପୂର୍ଣ୍ଣାଙ୍ଗ ବିବରଣୀ ଉପସ୍ଥାପିତ କରିବା ପ୍ରବନ୍ଧର ସୀମିତ ପରିସର ଭିତରେ ସମ୍ଭବ ନୁହେଁ । କିନ୍ତୁ ଏକଥା



Digitized by PPRACHIN, SOA

ସତ ଯେ ସୁଯୋଗ ପାଇଲା ମାତ୍ରେ କବି ଯେଉଁଭଳି ତାହାର ସଦୁପଯୋଗ କରିଛନ୍ତି, ତାହା ତାଙ୍କର ନାରୀ ରୂପ ପ୍ରତି ଚରମ ଆସକ୍ତିର ପରିଚାୟକ ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ନାମକରଣ

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ନାମକରଣ ଅନ୍ତରାଳରେ ଉପେନ୍ଦ୍ରଙ୍କ ନାରୀର ସୌନ୍ଦର୍ଯ୍ୟ ପ୍ରୀତି ଲୁକ୍କାୟିତ । ତାଙ୍କର ନାୟିକା ହେବ କୋଟିଏ ବ୍ରହ୍ମାଣ୍ଡରେ ଅତୁଳନୀୟା; ଅସାମାନ୍ୟ ସୌନ୍ଦର୍ଯ୍ୟରେ ଉଦ୍ଭାସିତା । ସେଥିପାଇଁ ତାଙ୍କ ପ୍ରୟତ୍ନର ଅନ୍ତ ନାହିଁ । ବିଭିନ୍ନ କାବ୍ୟ ରଚନାରେ (ରଚନାନୁସାରୀ ନାମକରଣରେ) ସେ ଅନୁଭବ କରିଥିବା ଅଭାବର ପରିପୂରଣ ନିମନ୍ତେ ସଚେତକ ଏହାର ପରିକଳ୍ପନା । ପଶ୍ଚାତ୍ତରେ ଓଡ଼ିଆ ସାହିତ୍ୟରେ ତ୍ରିପୁର ସୁନ୍ଦରୀ (ଧନଞ୍ଜୟ), ସର୍ବାଙ୍ଗ ସୁନ୍ଦରୀ (ଲୋକନାଥ) ଅଛି । କିନ୍ତୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାହିଁ ? କବି ହୁଏତ ଭାବ-ଜଗତରେ/ନାରୀର ଆତ୍ମବିଶ୍ୱାସ ବଳରେ ଅନୁମାନ କରିପାରିଥିବେ ଯେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଭଳି କାବ୍ୟର ରଚନା କେବଳ ନିଜ ଲେଖନୀ ଦ୍ୱାରା ହିଁ ସମ୍ଭବ । ଭଞ୍ଜଙ୍କ ପରବର୍ତ୍ତୀ କାଳରେ ତ୍ରୈଲୋକ୍ୟ ମୋହିନୀ (ଘନଭଞ୍ଜ) ଭଳି କାବ୍ୟ ସୃଷ୍ଟି ହୋଇଅଛି । ହେଲେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ସ୍ପର୍ଦ୍ଧା ଚିରକାଳ ପାଇଁ ଅନୁସରଣୀୟ ହୋଇ ରହିଯାଇଛି ।

ନାୟିକାର ଅଙ୍ଗରାଗ : ଉପମା ସଂଭାର

ମଧ୍ୟଯୁଗୀୟ କାବ୍ୟ ତଥା ଭଂଜୀୟ କାବ୍ୟ ପରମ୍ପରାରେ ନାୟିକା ଅଙ୍ଗ ପ୍ରତି ଅଙ୍ଗର ଉତ୍କର୍ଷ ଦର୍ଶାଇବା ପାଇଁ ସାଧାରଣତଃ ପାରମ୍ପାରିକ ଉପମା ସମୂହର ଉଲ୍ଲେଖ ଦେଖାଯାଏ । ଯେପରି—

କେଶ— ଶୈବାଳ, ରାହୁ, ଭ୍ରମର, ତମାଳ, ଜଳଧର,ମନ୍ମଥ-ରଥର ପତାକା,
(ବେଣୀ-ମଣିହିନା ଫଣୀ, କୃଷ୍ଣ ସର୍ପ)

ଅଳକ— ଅଳି

କପୋଳ— ଅର୍ଦ୍ଧଚନ୍ଦ୍ର

ନୟନ— ମୀନ, ଖଞ୍ଜନ, ପଦ୍ମ, ଶଫରୀ, ମୃଗ

ଭ୍ରୂ— ଧନୁ, ଭ୍ରମର, କାମଦେବର ପରଶୁ

ମୁଖ— ପଦ୍ମ, ଚନ୍ଦ୍ର, ମୁକୁର

ଅଧର— ବିମ୍ବ, ପ୍ରବାଳ, ପଲ୍ଲବ, ବନ୍ଧୂକ, ଅରୁଣ

ନାସା— ତିଳଫୁଲ, ଶୁକ, ତୂଣୀର



Digitized by PPRACHIN, SOA

ଦାନ୍ତ— ଦାଡ଼ିମ୍ବ ବୀଜ କୁନ୍ଦ ପୁଷ୍ପ, ମୁକ୍ତା, ହୀରକ
କର୍ଣ୍ଣ— ଅକାର, ପାଟ, ପାଟଳ ଫୁଲ,
ବାହୁ— ମୃଣାଳ
ଅଙ୍ଗୁଳି— ଚମ୍ପକ କଳି,
ସ୍ତନ— ପଦ୍ମକୋରକ, ନାରକେଳ, ବେଲ, ତାଳ, ପର୍ବତ, ଚକ୍ରବାକ,
ସଂପୁଟ, ଶମ୍ଭୁ, ସୁଧାକୋଷ, ମନ୍ଦର
ଉଦର— ସରସୀ, କମଳଦଳ
କଟୀ— ସିଂହ
ଊରୁ— ରମ୍ଭା, ହସ୍ତୀ ଶୁଣ୍ଢ, ଅତନୁ ତୋରଣ,
ପାଦ— ସ୍ଥଳକମଳ, କିଶଳୟ, ରକ୍ତପଦ୍ମ (ଇତ୍ୟାଦି)

ଅନେକ ସ୍ଥଳରେ ନାୟିକା ଅଂଗର ଉତ୍କର୍ଷ ବିଧାନ ନିମନ୍ତେ ପାରମ୍ପରିକ ଉପମା ସମୂହର ଅସାଧାରଣ ପ୍ରତିପାଦନ କରାଯାଇଛି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଯୌବନ ବର୍ଣ୍ଣନା ପ୍ରସଂଗରେ ଏଭଳି ବର୍ଣ୍ଣନା ରହିଛି, ଯଥା :—

ପଦ୍ମ ମୃଣାଳ କଣ୍ଟକକୁ ଧରି । ହୁଏ ପଙ୍କଜ ଫଳେ ସେ ଉଦ୍ଭବ
ବିମ୍ବ ହୋଇଲା ଭସ୍ମ ବିଲେପନ । ବୃକ୍ଷରାଜି ଜଳ ବହେ କମ୍ପନ ।

ଏତଦ୍‌ଭିନ୍ନ ଉପେନ୍ଦ୍ରଭଞ୍ଜ ଉପମା ପ୍ରୟୋଗରେ ପ୍ରଚୁର କଳ୍ପନା ବିଳାସର ଆଶ୍ରୟ ନେଇଛନ୍ତି । ଏଥିରେ ତାଙ୍କର ରସିକତା, ବାକ୍‌ବୈଦଗ୍ଧ ଯେପରି ପ୍ରକାଶ ପାଇଛି । ସେହିପରି ପୁରାଣ, ଯୋଗ, ଦର୍ଶନ ଆଦି ବିଭିନ୍ନ ଶାସ୍ତ୍ରୀୟ ପ୍ରସଂଗର ଉଲ୍ଲେଖ ଅଛି । ନୈଷଧକାର ଶ୍ରୀହର୍ଷ ଦମୟନ୍ତୀଙ୍କ ଊରୁ ଶୋଭା ବକ୍ଷସ୍ଥ ବର୍ଣ୍ଣନା କଲାବେଳେ ତହିଁରେ ମହାଭାରତର ଗୌରବ ଆରୋପ କରିଛନ୍ତି । (ନୈଷଧ ୭/୧୫) କିନ୍ତୁ ଉପେନ୍ଦ୍ରଭଞ୍ଜ ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଠାରେ ହରିଲୀଳା ବା ରାମାୟଣ (୩/୧୫) ଓ ତାର ନେତ୍ରରେ ମହାଭାରତ ଯୁଦ୍ଧ (୩/୧୮) ରଙ୍ଗସଭା (୭/୮), ଅର୍ଜୁନଙ୍କ ଚରିତ୍ର (୭/୯) ଆଦି ବିଚିତ୍ର ଉପାଖ୍ୟାନର ଅବତାରଣା କରି ସ୍ୱୀୟ ସଂସ୍କୃତ ପ୍ରୀତି ସ୍ୱୀକୃତିର ପରିଚୟ ଦେଇଛନ୍ତି । ବିଭିନ୍ନ ସ୍ଥଳରେ ସେ ନାୟିକାକୁ ବିଭିନ୍ନ ରୂପରେ ଦେଖିଛନ୍ତି । ଯଥା :— କାମ ହେମ ମନ୍ତ୍ର ପିତୁଳା (୪/୮) ମୂର୍ତ୍ତିମନ୍ତ ମନ୍ମଥ (୭/୨୧), ପ୍ରେମ ପୀୟୂଷ ପିତୁଳା (୭/୨୫) ଲାବଣ୍ୟ ସିନ୍ଧୁ (୧୨/୧୮), ହେମକରଣୀ (୧୨/୨୦), ଜାତରୂପ୍ୟ ସର (୧୩/୧୭), ଦେବସଭା (୧୭/୧୯), ଅଷ୍ଟନିଧି (୧୭/୨୦), ଅଷ୍ଟ ଐଶ୍ୱର୍ଯ୍ୟ (୧୭/୨୧) ଇତ୍ୟାଦି । ସେହିପରି ନାୟିକାର ସ୍ତନ ଶୋଭା ନିରୂପଣରେ କବିଙ୍କର ବର୍ଣ୍ଣନା ବିଳାସିତା ବହୁ ବର୍ଣ୍ଣିଳ

॥ ଅଡ଼ନେଶର ॥

Digitized by PPRACHIN, SOA

ମାର୍ଗରେ ଗତି କରିଛୁ । କେତେକ କ୍ଷେତ୍ରରେ ଏହା ଅତ୍ୟନ୍ତ ସରସ ଓ ହୃଦୟଗ୍ରାହୀ । ଯଥା :— ମନସିଜ ଦୁଇ କୁଟି (୬/୨୦), ବେନି ସୁଧା କୁମ୍ଭ (୧୪/୧) ଶୁକ ପଞ୍ଜୁରି (୧୪/୨୧), ସାପ ପେଡ଼ି (୧୪/୩୦), ହେମ-ଭୂ ସମ୍ଭୃତ ଶମ୍ଭୁ ଯୁଗଳ (୭/୧୧) ଇତ୍ୟାଦି । କେତେକ କ୍ଷେତ୍ରରେ ଏହା କଷ୍ଟକଳ୍ପିତ ଓ ରସ ସଂପର୍କ ଶୂନ୍ୟ । ଯଥା :— ଷଡ଼ଗ୍ରହ (୮/୧୧), ତମାଳ ଲତାରେ ନଡ଼ିଆ ଓ ଗୁଆ ଫଳ (୭/୧୭) ଯୌବନ ସିନ୍ଧୁ ମନ୍ଥନ ମେରୁ (୭/୨୨), ଉଦର ସର ଫଳଗ୍ନ ପ୍ରାସାଦ (୭/୧୮) ଇତ୍ୟାଦି ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ସୌନ୍ଦର୍ଯ୍ୟକୁ କାବ୍ୟକ ଗୌରବ ଯୁକ୍ତ କରିବା ପାଇଁ କବି ଉପେନ୍ଦ୍ର ସ୍ଥାନେ ସ୍ଥାନେ ସ୍ୱପ୍ନ-ପ୍ରବଣ ପରିବେଶର ପରିକଳ୍ପନା କରିଛନ୍ତି । ରଜୋବତୀ ଝିଅୁଷ୍ମା ନାୟିକାର ପଦପାତରେ ସ୍ଥଳ କମଳ ପ୍ରସ୍ଫୁଟିତ ହେବା ଓ କମଳ ଗନ୍ଧରେ ଭ୍ରମରକୁଳ ଆକୁଳ ହେବା ଦୃଶ୍ୟ ଅତ୍ୟନ୍ତ ଚମତ୍କାରିକ, (୩/୪୪) ସେହିପରି ସୁନ୍ଦରୀର ନୟନ ଚଞ୍ଚଳତାରେ ନୀଳୋତ୍ପଳ ବୃଷ୍ଟି ହେବା ଅନ୍ୟ ଏକ ଉଦାହରଣ । (୧୪/୧୭)

ବେଳେ ବେଳେ ଉପେନ୍ଦ୍ରଭଞ୍ଜ ନାୟିକାକୁ ରୂପମୁଗ୍ଧ ଦୃଷ୍ଟିରେ ଦେଖିବାକୁ ଚେଷ୍ଟା କରିଛନ୍ତି । ଉପମାଗୁଡ଼ିକ ସେ କ୍ଷେତ୍ରରେ କେବଳ ନ୍ୟୂନ ବା ଅପ୍ରସ୍ତୁତ ନୁହନ୍ତି; ସମ୍ପୂର୍ଣ୍ଣ ରୂପେ ଅଭାବିତ । ସେ ସୌନ୍ଦର୍ଯ୍ୟକୁ କବି/ନାୟକର ନୟନ ଯୁଗଳରେ ଆକଳନ କରାଯାଇପାରେ; ଭାଷାରେ ନୁହେଁ । ଯଥା :—

ଦୁର୍ଲ୍ଲଭ ଏହାକୁ କହି । ହରଷ ସ୍ୱରୂପ ଏହି
ଦେଖିଲି ଲେଖିଲି ଲୋଚନେ ବଚନେ ଉପମା ଦେବାକୁ ନାହିଁ । (୧୪/୩)

ଅଲଂକାର ଆଭୂଷଣ : ପରିପୂରକ ସୌନ୍ଦର୍ଯ୍ୟ

ଭଞ୍ଜୀୟ ନାୟିକାର ଅଲଂକରଣ ପରିପାଟୀ ଯେପରି ରାଜକୀୟ ସେହିପରି ମନୋହର । ସେଥିରୁ ବହୁବିଧ ଅଳଙ୍କାର, ପ୍ରସାଧନ ଓ ବସନ ଭୂଷଣର ବିସ୍ତୃତ ପରିଚୟ ମିଳେ । ଦେହ ଶୋଭା ସହିତ ଅଳଙ୍କାର ଶୋଭା ମିଳିତ ହୋଇ ନାୟିକା ସୁନ୍ଦର ପଣର ଗୌରବ ବୃଦ୍ଧି କରେ । କବି କଳ୍ପନାରେ ତାହାର ମନୋରମ ପରିପ୍ରକାଶ ଘଟେ । କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ୧୪ଶ ଛାନ୍ଦରେ ବର୍ଣ୍ଣିତ ନାୟିକାର ବେଶ ଶୋଭା ପ୍ରସଙ୍ଗ ଏହାର ପ୍ରକୃଷ୍ଟ ଉଦାହରଣ । ଉଲ୍ଲିଖିତ ଅଳଙ୍କାର ଗୁଡ଼ିକ ହେଲା— ଚନ୍ଦ୍ରଝୁମ୍ପା, ଘାଗ୍ରି ସିହାଣିଆ, ସୀମନ୍ତ, ଝବା, ମୋଡ଼ି କାନ୍ତି, ଫୁଲଝିଲିକା, ନାସାମୋଡ଼ି ପଦ୍ମରାଗ ଖଣ୍ଡ । ଝୁଣ୍ଟିଆ, ନୂପୁର, ବଳୟ, ମାଳା, ମଲ୍ଲୀକଢ଼ି,



Digitized by PPRACHIN, SOA

ଝିଲିମିଲି, ମାଳୀ, ପଦକ, କର୍ଣ୍ଣିଣୀ, ହଂସକ ଇତ୍ୟାଦି । ନୟନରେ କଜ୍ଜ୍ୱଳ, ଭୃକ୍ତ ଓ ପାଦରେ ହରିତାଳ ଚିତା, ଗଣ୍ଡରେ ମକରୀ, ପାଦରେ ଅଳତା, ଲଲାଟରେ ତିଳକ, ବେଣୀ ମୂଳରେ କେତକୀଦଳ ଆଦି ପ୍ରସାଧନ ତଥା କାଞ୍ଚଲି, ଜରିଯୁକ୍ତ ବସ୍ତ୍ର ଇତ୍ୟାଦି ପରିଧାନ ପରିପାଟୀର ଅନ୍ତର୍ଗତ । ଏସବୁ ଭୂଷଣର ଏକକ ବା ମିଳିତ ରୂପ କିଭଳି ମଧୁର ଦୃଶ୍ୟ ସୃଷ୍ଟି କରେ, ତାହା କବି ଅତି ଯତ୍ନରେ ବର୍ଣ୍ଣନା କରିଛନ୍ତି । ଗୋଟିଏ ଉଦାହରଣ ହେଲା—

କଳା କାଞ୍ଚଲି ଗରିସି । ଅଛି ସ୍ତନ ଶୋଭା ଦିଶି
ବିଷଜ୍ୱାଳା ଶାନ୍ତ ସ୍ନାନ କି କରନ୍ତି ଶମ୍ଭୁ କାଳିନ୍ଦୀରେ ପଶି । (୧୪/୨୮)

ଭଂଜୀୟ ନାୟିକା : ତୁଳନାତ୍ମକ ଅଧ୍ୟୟନ

ପ୍ରତ୍ୟେକ ଭଂଜୀୟ ନାୟିକାର ଆତ୍ମିକ ପରିଚୟ ସ୍ୱତନ୍ତ୍ର ହେଲେହେଁ ଆଙ୍ଗିକ ଗଠନରେ କେତେକ ଦ୍ୟୁତି ପରିଲକ୍ଷିତ ହୁଏ । କବି କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ କହିଛନ୍ତି :—

୧ ) ନଥିଲା ନାହିଁ ନୋହିବ ଏ ବାଣୀ
କୁମାରୀ ଠାରେ ସମ୍ଭବିବ ପୁଣି । (୨/୪୮)

୨) ସମ୍ଭୂତ ଏକ ଅଭୂତ ହୋଇ ଭୂତ ଭବିଷ୍ୟେ ବର୍ତ୍ତମାନେ ନାହିଁ । (୮/୨)

ଅନ୍ୟତ୍ର ଠିକ୍ ସେଇଭଳି—

୧) ବର୍ତ୍ତମାନ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି ।
(ବୈଦେହୀଶ ବିଳାସ : ୮/୧)

୨) ସମ୍ଭୂତ ଅଭୂତ ସୁନ୍ଦରୀତ ଭୂତ ଭବିଷ୍ୟେ ବର୍ତ୍ତମାନେ ନାହିଁ ।
(ସୁଭଦ୍ରା ପରିଣୟ ୪/୧୪)

୩) ତାର ଶୋଭା କହିଲେ ସରିବ ନାହିଁ ।
ପୂର୍ବେ ନଥିଲା ନୋହିବ ଏ ନାହିଁ ।
(ଲାବଣ୍ୟବତୀ :୭/୭୨)

ଅନ୍ୟ ଗୋଟିଏ ପ୍ରସଙ୍ଗ ହେଉଛି, ବିଶ୍ୱର ସର୍ବଶ୍ରେଷ୍ଠ ସୁନ୍ଦରୀଗଣ ଭଞ୍ଜୀୟ ନାୟିକାର ଚରଣ ଘଷା ପଥର ସହିତ ସମାନ କିମ୍ବା ତାହାଠାରୁ ମଧ୍ୟ ନ୍ୟୂନ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଅନନ୍ୟ ସୌନ୍ଦର୍ଯ୍ୟ ସଂପର୍କରେ କବି କହିଛନ୍ତି ଯେ ବିଧାତା

॥ ଶହେ ଏକ ॥

Digitized by PPRACHIN, SOA

ଧାତା ଯତ୍ନରେ ଅହଲ୍ୟାକୁ ନିର୍ମାଣ କରିସାରିବା ପରେ ଯେତେବେଳେ ଏହି ରାଜକନ୍ୟାର ରୂପ କଳ୍ପନା କଲେ, ସେତେବେଳେ ତାଙ୍କର ମନେହେଲା ଯେ ଅହଲ୍ୟା ତାର ଚରଣ ଘଷା ପଥର ହେବା ପାଇଁ ଯୋଗ୍ୟ । ତେଣୁ ସେ ତାକୁ ପଥର କରିଦେଲେ ।

ବିଧି ନିର୍ମାଣି ଯତ୍ନେ ଅହଲ୍ୟାକୁ......
ରମା ଚରଣ ଘଷା ଖିଲ ଭାବି ।

(କୋଟିବ୍ରହ୍ମାଣ୍ଡ ସୁନ୍ଦରୀ : ୬/୨)

ବୈଦେହୀଶ ବିଳାସରେ ମଧ୍ୟ ପାଷାଣୀ ଅହଲ୍ୟାକୁ ସୀତାଙ୍କ ଚରଣ ଘଷା ପଥରର ଯୋଗ୍ୟ ବୋଲି କୁହାଯାଇଛି ।

ବିଜ୍ଞ ବିହିଥିଲି ଶିଳା ଏହାକୁ କରାଇ
ବିତର୍କି ଏ ସୀତାର ଚରଣ ଘଷା ଏହି ।

(ବୈଦେହୀଶ ବିଳାସ : ୭/୫୭)

ଏତଦ୍‌ଭିନ୍ନ କେତେକ ସ୍ଥଳରେ ସେଇଭଳି ଅନ୍ୟାନ୍ୟ ପ୍ରସଂଗମାନ ରହିଛି । ଯଥା :—

ଏ ଘୋଷା ଯୋଗ୍ୟ ନୋହେ ତା ପଦଘଷା
ଉପଳ ଉପମା ହେବାକୁ ।

(ଲାବଣ୍ୟବତୀ : ୯/୨୩)

କିମ୍ବା

ଯାର ସେ ସଂସାରେ ସୁନ୍ଦରୀ
ଯର ଚରଣ ଘଷା ଶିଳାକୁ କିନ୍ନରୀ ।

(ସୁଭଦ୍ରା ପରିଣୟ. ୩,୨)

ନାୟିକାର ଶୋଭା ବର୍ଣ୍ଣନା ବେଳେ ଉପେନ୍ଦ୍ର ଗଣ୍ଠି ଶିରା ବିବର୍ଜିତ ତନୁର କଳ୍ପନା କରିଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଅଛି :—

ଗଣ୍ଠି ଶିରା ବିବର୍ଜିତ । ତନୁରେ ମାପ ଆସ୍ଥିତ...... (୧୪/୪)

ଅନ୍ୟାନ୍ୟ କାବ୍ୟରେ ମଧ୍ୟ ଏହି ଭାବନାର ପୁନରାବୃତ୍ତି ଘଟିଛି । ଏପରିକି ରାଜକନ୍ୟା ଓ ମାଳିନୀକୁ କବି ଏକ ଦୃଷ୍ଟିରେ ଦେଖିଛନ୍ତି । ଯଥା :—



Digitized by PPRACHIN, SOA

କବଳିତ ଗଣ୍ଡି ଶିରୀ । ପାଟଳୀ ରସାଳ ପରି················

ଲାବଣ୍ୟବତୀ (ମାଳିନୀ ଛନ୍ଦ) ୧୭/୧୯

ସେହିପରି— ନାହିଁ ଅଙ୍ଗେ ଗଣ୍ଡି ଶିରୀ ଦର୍ଶନ

(ରସିକ ହାରାବଳୀ : ୪/୯)

କିମ୍ବା

କଳେବର ଛାର ମାପର ଆସ୍ତୁତ ଗଣ୍ଡି ଶିରୀ ଅଷ୍ଟୁଟିକା

(କଳା କଉତୁକ : ୧୦/୭)

ଏପରି ଖୋଜିଲେ ଭଞ୍ଜୀୟ କାବ୍ୟ ଗୁଡ଼ିକରେ ଅନେକ ସାଦୃଶ୍ୟ ଲକ୍ଷ୍ୟ କରିଯାଇପାରେ । ଏସବୁ ସତ୍ତ୍ୱେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଗୌରବ ମ୍ଳାନ ହେବାର ନୁହେଁ । ନାୟିକାର ଶୋଭା ବର୍ଣ୍ଣନା କରିବାପାଇଁ ୨ୟ ଛାନ୍ଦର ବ୍ରହ୍ମାଙ୍କ ଭବିଷ୍ୟତ-ବାଣୀ ଠାରୁ ୨୦ଶ ଛାନ୍ଦର ଶୁକ ଶାରୀ ଆଳାପ ପର୍ଯ୍ୟନ୍ତ ବିଭିନ୍ନ ସ୍ଥଳରେ ଯେଉଁ ଆଳଂକାରିକ/ରସମୟ/ଶବ୍ଦାର୍ଥ କୌଶଳଯୁକ୍ତ କାବ୍ୟିକ ପ୍ରଚେଷ୍ଟା କରାଯାଇଛି, ତାହା ଅନ୍ୟତ୍ର ଦୁର୍ଲ୍ଲଭ । କେତେବେଳେ କବି ମୁଖରେ (୬ଷ୍ଠ ଓ ୭ମ), କେତେବେଳେ ମନ୍ତ୍ରୀ ମୁଖରେ (୮ମ), କେତେବେଳେ ପୋଟା ମୁଖରେ (୯ମ), କେତେବେଳେ ଶୁକଶାରୀ ମୁଖରେ (୨୦ଶ) ସେହି ପ୍ରସଙ୍ଗ ଉପସ୍ଥାପିତ କରାଯାଇଛି । ତାଛଡ଼ା ବାଲ୍ୟ ପୌଗଣ୍ଡ ଯୌବନ ବର୍ଣ୍ଣନା (୩ୟ) ବନବିହାର (୧୦ମ), ଦେଶ ରଚନା (୧୨ଶ) ସାକ୍ଷାତ ଦର୍ଶନ (୧୩ଶ), ଯୌବନ ଶୋଭା ବର୍ଣ୍ଣନା (୧୪ଶ), ନାୟକର ନାୟିକାନୁଚିନ୍ତା (୧୭ଶ) ଅବତାରଣା କ୍ରମେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବିବିଧ ଲୀଳା ବିଳାସ ଦର୍ଶାଯାଇଛି ।

ଶେଷକଥା :—

ମନେହୁଏ ରସିକ ହାରାବଳୀ, ପ୍ରେମ ସୁଧାନିଧି, ଲାବଣ୍ୟବତୀ ଆଦି କାବ୍ୟ ରଚନା କରି ତାଙ୍କର ମନପୂତ ନହେବାରୁ ସେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ରଚନାରେ ମନୋନିବେଶ କରିଥିଲେ । ନୈଷଧର ପ୍ରତିଷ୍ଠା ସହ ପ୍ରତିଦ୍ୱନ୍ଦ୍ୱିତା କରିବା ଥିଲା ତାଙ୍କର ଏକାନ୍ତ ଲକ୍ଷ୍ୟ । ସୁତରାଂ ଅନ୍ତରର ଅପୂର୍ଣ୍ଣ ବାସନା ତାଙ୍କୁ ଅଶାନ୍ତ ଓ ଉଦ୍‌ବେଳିତ କରିଥିଲା । ତାହାର ପରିପ୍ରକାଶ ହେଉଛି ଏଇ କାବ୍ୟ ।

ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏକ ଅନୁପମ ସୃଷ୍ଟି । କାବ୍ୟଯୁଗର ସମସ୍ତ ପାରଂପରିକତା ଆଉ ସେ ଆବିର୍ଭୂତା ହୋଇଥିଲେ ହେଁ ଭଞ୍ଜୀୟ କାବ୍ୟ-କଳାର କୁହୁକ ସ୍ପର୍ଶରେ ତାର ମହିମା ସର୍ବଜନ କୀର୍ତ୍ତିତ । ଏକ ସଙ୍ଗରେ ଏହା ରୋମାଣ୍ଟିକ ଓ କ୍ଲାସିକ । ଦାରୁଣ୍ୟର ତନ୍ମୟତା ଓ ପ୍ରାଜ୍ଞର ପ୍ରବୀଣତାରେ ଏହା ପୁଷ୍କଳ ।

ଓଡ଼ିଆ ବିଭାଗ ,
ରାଜଧାନୀ ମହାବିଦ୍ୟାଳୟ, ଭୁବନେଶ୍ୱର ।

॥ ଶରେହ୍ମ ଢନ୍ନ ॥

Digitized by PPRACHIN, SOA

# ।। କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ବକ୍ରୋକ୍ତି ଚେତନା ।।

ଡ଼ : କିଶୋରଚନ୍ଦ୍ର ମିଶ୍ର

ଉପେନ୍ଦ୍ର ଭଞ୍ଜ ଓଡ଼ିଆ ମଧ୍ୟଯୁଗୀୟ ସାହିତ୍ୟର ଏକ ବହୁ ଚର୍ଚ୍ଚିତ ପ୍ରତିଭା । ଏକାଧାରରେ ସେ କବି, ସଂଗୀତସ୍ରଷ୍ଟା, ଆଳଙ୍କାରିକ ଆଚାର୍ଯ୍ୟ ଓ ଅଭିଧାନ ପ୍ରଣେତା ହେଲେ ମଧ୍ୟ କାବ୍ୟକାର ଭାବେ ଅଧିକ ସମ୍ମାନିତ । ତାଙ୍କ ସୃଷ୍ଟ କାବ୍ୟାବଳୀ ମଧ୍ୟରେ ଲାବଣ୍ୟବତୀ, ବୈଦେହୀଶ ବିଳାସ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟତ୍ରୟୀ କବିତ୍ୱର ଚରମ ନିଦର୍ଶନ ଭାବେ ଆଲୋଚିତ । ଏଥିରେ କବିଙ୍କ ପ୍ରତିଭା ଓ ପାଣ୍ଡିତ୍ୟର ଅପୂର୍ବ ସମନ୍ୱୟ ଘଟିଛି ତଥା ମଧ୍ୟଯୁଗୀୟ କାବ୍ୟାଦର୍ଶର ସମସ୍ତ ନମୁନା ଏଥିରୁ ସଂଗ୍ରହ କରାଯାଇପାରେ । ସଂସ୍କୃତ ଆଳଙ୍କାରିକ ଆଚାର୍ଯ୍ୟଙ୍କ ମଧ୍ୟରୁ କେଉଁ ବିଶିଷ୍ଟ ସମାଲୋଚକଙ୍କ କାବ୍ୟାଦର୍ଶରେ ଏବଂ କେଉଁ ବିଶିଷ୍ଟ କବିଙ୍କ କାବ୍ୟଗଠନ କୌଶଳରେ ଅନୁପ୍ରାଣିତ ହୋଇ କବି ଉପେନ୍ଦ୍ର ତାଙ୍କର କାବ୍ୟସୌଧ ନିର୍ମାଣ କରିଛନ୍ତି, ତାହା ବିବାଦାସ୍ପଦ ହୋଇ ରହିଛି । କାଳିଦାସୀୟ ମାଧୁର୍ଯ୍ୟ ଓ ପ୍ରସାଦଗୁଣ ସମନ୍ୱିତ ଧ୍ୱନି ଗାମ୍ଭୀର୍ଯ୍ୟ; ବାଣଭଟ୍ଟୀୟ ଅଳଂକୃତ ବାଗ୍‌ଭଙ୍ଗୀ, ଶ୍ରୀହର୍ଷୀୟ ବୈଦର୍ଭୀ ରୀତି ସହିତ ମମ୍ମଟ, ଭୋଜ, ବିଶ୍ୱନାଥ ଆଦିଙ୍କ ପ୍ରଦର୍ଶିତ କାବ୍ୟଗଠନାଦର୍ଶରଶ୍ମି ଉପେନ୍ଦ୍ରଙ୍କ ସୃଷ୍ଟି ସମ୍ଭାରରୁ ଉଦ୍ଧାର କରାଯାଇପାରେ । କିନ୍ତୁ ମନେହୁଏ, ଉପର୍ଯ୍ୟୁକ୍ତ ତିନିଗୋଟି କାବ୍ୟ ଆଚାର୍ଯ୍ୟ କୁନ୍ତକଙ୍କ ପ୍ରଦର୍ଶିତ ତିନିଗୋଟି କାବ୍ୟମାର୍ଗ, ସୁକୁମାର, ବିଚିତ୍ର ଓ ମଧ୍ୟମର ପ୍ରକାଶକ । ବୈଦେହୀଶ ବିଳାସରେ ବିଚିତ୍ର ମାର୍ଗର ସ୍ପଷ୍ଟ ଉଲ୍ଲେଖ ରହିଛି । ଗଭୀରଭାବେ ଅନୁଧ୍ୟାନକରି କୁହାଯାଇପାରେ, ସୁକୁମାର ମାର୍ଗର କାବ୍ୟ ଲାବଣ୍ୟବତୀ ଓ ମଧ୍ୟମ ମାର୍ଗର କାବ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ଆଲୋଚ୍ୟ କାବ୍ୟରେ କୁନ୍ତକଙ୍କ ବକ୍ରୋକ୍ତି ଚେତନାଟି କେତେଦୂର ପ୍ରତିଫଳିତ, ତାହାର ଏକ ସମୀକ୍ଷା ଉପସ୍ଥାପନ କରିବା ଏ ପ୍ରବନ୍ଧର ଲକ୍ଷ୍ୟ ।

ପ୍ରାଚ୍ୟ ପରମ୍ପରାରେ ଆଚାର୍ଯ୍ୟ ଭରତ (ଖ୍ରୀ·ପୂ. ୨୦୦)ଙ୍କ ଠାରୁ ଆରମ୍ଭ କରି ପଣ୍ଡିତରାଜ ଜଗନ୍ନାଥ (ଅଷ୍ଟାଦଶ ଶତାବ୍ଦୀ)ଙ୍କ ପର୍ଯ୍ୟନ୍ତ ପ୍ରାୟ ଦୁଇହଜାର ବର୍ଷ ଧରି ସାହିତ୍ୟ ବା କାବ୍ୟର ସ୍ୱରୂପ ନିର୍ଣ୍ଣୟ ପାଇ ଏକ ଅବ୍ୟାହତ ପ୍ରଚେଷ୍ଟା



Digitized by PPRACHIN, SOA

ପରିଲକ୍ଷିତ ହୁଏ । ପୂର୍ବବର୍ତ୍ତୀ ଆଲୋଚକଙ୍କ ସାହିତ୍ୟ ସମ୍ବନ୍ଧୀୟ ବିଚାର ପରବର୍ତ୍ତୀ କାଳରେ ଖଣ୍ଡିତ ଓ ମଣ୍ଡିତ ହୋଇଛି ତଥା ବିଶିଷ୍ଟ ଆଲୋଚକଙ୍କ ମୁଖ୍ୟ ତତ୍ତ୍ୱକୁ କେନ୍ଦ୍ରକରି ଅଳଂକାର, ରୀତି, ଧ୍ୱନି, ରସ, ବକ୍ରୋକ୍ତି ଆଦି ମତବାଦ ବା ସଂପ୍ରଦାୟ ପ୍ରତିଷ୍ଠା ଲାଭ କରିଛି । ଏ ମଧ୍ୟରେ ବକ୍ରୋକ୍ତି ବାଦର ପ୍ରବର୍ତ୍ତକ ଭାମହ (ସପ୍ତମ ଶତାବ୍ଦୀ) ହେଲେହେଁ ରାଜାନକ କୁନ୍ତକ (ଦଶମ ଶତାବ୍ଦୀ) ଏହି ବାଦର ପ୍ରତିଷ୍ଠାପକ ଭାବେ ସ୍ମରଣୀୟ । ସେ 'ବକ୍ରୋକ୍ତି ଜୀବିତମ୍' ଗ୍ରନ୍ଥରେ ନିଜ ଦୃଷ୍ଟିକୋଣରୁ ସାହିତ୍ୟର ସୌନ୍ଦର୍ଯ୍ୟ ଉଦ୍‌ଘାଟନ କରିଯାଇଛନ୍ତି । ତାଙ୍କ ଗ୍ରନ୍ଥଟି କାବ୍ୟ ଲକ୍ଷଣର ଏକ ବିସ୍ତୃତ ବିଶ୍ଳେଷଣ ମାତ୍ର । ସେ କହନ୍ତି— ସହୃଦୟଙ୍କୁ ଆହ୍ଲାଦିତ ଏବଂ କବି ବ୍ୟାପାରରେ ସୁଶୋଭିତ ବାକ୍ୟ ବିନ୍ୟାସରେ ସାହିତ୍ୟଯୁକ୍ତ ଶବ୍ଦ ଓ ଅର୍ଥ କାବ୍ୟପଦବାଚ୍ୟ । ୧ । ଏଥିରେ ଉକ୍ତ ଶବ୍ଦ ଓ ଅର୍ଥ, ସାହିତ୍ୟ, ବକ୍ରକବି ବ୍ୟାପାର, ବନ୍ଧ ଏବଂ ତଦ୍‌ବିଦାହ୍ଲାଦକାରିତ୍ୱ କାବ୍ୟର ମୌଳିକ ତତ୍ତ୍ୱ ଭାବେ ନିର୍ଣ୍ଣୀତ ।

ଆଜି ଶବ୍ଦ ଓ ଅର୍ଥ କାବ୍ୟର ଶରୀର ଭାବେ ଗୃହୀତ । କିନ୍ତୁ କୁନ୍ତକଙ୍କ ମତରେ ଅଳଂକୃତ ଶବ୍ଦ ଓ ଅର୍ଥ କେବଳ କାବ୍ୟ । କାବ୍ୟରେ ଅପୋଦ୍ଧାର ବୁଦ୍ଧିରେ ଅଳଙ୍କାର୍ଯ୍ୟ ଓ ଅଳଙ୍କାରର ବିଚାର କରାଗଲେ ମଧ୍ୟ ଅଳଂକାର୍ଯ୍ୟ ଓ ଅଳଙ୍କାରର ପୃଥକ୍ ସତ୍ତା ନାହିଁ । ପୁଣି କେବଳ ରମଣୀୟ ଶବ୍ଦ ବା ଚାରୁତା ବିଶିଷ୍ଟ ଅର୍ଥ କାବ୍ୟ ପଦବାଚ୍ୟ ନୁହେଁ । ଯେଉଁ ଶବ୍ଦ ସମାନାର୍ଥକ ବହୁ ଶବ୍ଦ ମଧ୍ୟରୁ ବିବକ୍ଷିତ ଅର୍ଥକୁ ପ୍ରକାଶ କରିବାରେ ସର୍ବାଧିକ ଉପଯୁକ୍ତ ଓ ଯେଉଁ ଅର୍ଥ ରମଣୀୟତାରେ ସହୃଦୟଙ୍କୁ ଆହ୍ଲାଦିତ କରିପାରେ, ତାହା ହିଁ ଉପଯୁକ୍ତ ଅର୍ଥ । ଏତାଦୃଶ ଶବ୍ଦ ଓ ଅର୍ଥର ସଜାତୀୟ ସହିତ ପରସ୍ପର ସ୍ପର୍ଦ୍ଧାର ନାମ ସହଭାବ ବା ସାହିତ୍ୟ । ଅର୍ଥାତ୍ ଶବ୍ଦର ଶବ୍ଦାନ୍ତର ସହିତ ଓ ଅର୍ଥର ଅର୍ଥାନ୍ତର ସହିତ ପ୍ରତିସ୍ପର୍ଦ୍ଧା ଜନିତ ସହଭାବ ହିଁ ସାହିତ୍ୟ । ଉଦାହରଣ ସ୍ୱରୂପ—

ଯେ ବନ ନନ୍ଦନ ସମାନ ବନ୍ଦନ ସଦା ସୁମନାବରି ଥାଇ ।
ପାଶେ କଉଶିକୀ ଯେ ମନ୍ଦାକିନୀ କି ସୁରସନ୍ତାପକୁ ହରଇ ।
ଦେଖନ୍ତି, ରଜନେ ଦୁହିଁଙ୍କ ଶୋଭନ,
କରନ୍ତି ସନ୍ନାଲେ ପରଭୃତସ୍ୱନ ସନ୍ନିଲେ ପରଭୃତ ସ୍ନାନ ( ୨୮-୨)

---

(୧) ଶବ୍ଦାର୍ଥୌ ସହିତୌ ବକ୍ର କବି ବ୍ୟାପାର ଶାଳିନି
ବନ୍ଧେ ବ୍ୟବସ୍ଥିତୌ କାବ୍ୟଂ ତଦ୍‌ବିଦାହ୍ଲାଦ କାରିଣି ।
( ବକ୍ରୋକ୍ତି ଜୀବିତେ ୧-୭ )



Digitized by PPRACHIN, SOA

ଏଥିରେ ପ୍ରଥମ ଦୁଇଟି ପଦରେ ବନକୁ ନନ୍ଦନ ଓ ନଦୀକୁ ଗଙ୍ଗା ସହିତ ତୁଳନା କରାଯାଇଛି । ଶେଷ ପଦରେ ବନ ଓ ନଦୀର ମହତ୍ତ୍ୱ କଥିତ । ସୁମନାବର (ଦେବ ଶ୍ରେଷ୍ଠ-ଶ୍ରେଷ୍ଠ ପୁଷ୍ପ) ସୁର (ଦେବତା-ସୂର୍ଯ୍ୟ) ଶବ୍ଦ ବିଶିଷ୍ଟାର୍ଥ ବୋଧକ । ସଲୀଳ-ସଲିଳ ତଥା ପରଭୃତ (କୋକିଳ, ସେବକ)ରେ ଯମକ ସନ୍ନିବେଶିତ । ଶ୍ଳେଷ-ଗର୍ଭିତ ଉପମା ଚନ୍ଦ୍ର ଧର୍ମରେ ପ୍ରାକୃତିକ ପରିବେଶର ସ୍ୱର୍ଗୀୟ ସୌନ୍ଦର୍ଯ୍ୟକୁ ବ୍ୟକ୍ତ କରେ ଓ ଯମକ ତଥା ଅନୁପ୍ରାସ ସଂଗୀତ ଧର୍ମୀ ପଦଲାଳିତ୍ୟ ସୃଷ୍ଟି କରି ଭାବଧର୍ମର ଉଦ୍‌ବୋଧନ କରେ । ମାଧୁର୍ଯ୍ୟ ପୂର୍ଣ୍ଣ ରୀତିରେ ଉପସ୍ଥାପିତ ଶବ୍ଦ ଓ ଅର୍ଥର ଏହାହିଁ ପ୍ରତିସ୍ପର୍ଦ୍ଧୀ ସହଭାବ ବା ସାହିତ୍ୟ ।

କୁନ୍ତକଙ୍କ ମତରେ ଶବ୍ଦ ଓ ଅର୍ଥ ମଧ୍ୟ ଅଳଂକାର୍ଯ୍ୟ ଓ ତାହାର ଏକମାତ୍ର ଅଳଙ୍କାର ବକ୍ରୋକ୍ତି । ଶାସ୍ତ୍ର ବା ଲୋକ ପ୍ରସିଦ୍ଧ ଉକ୍ତିରୁ ଅତିରିକ୍ତ ବୈଦଗ୍‌ଧ୍ୟ ପୂର୍ଣ୍ଣ ଭଙ୍ଗୀରେ କଥନର ନାମ ବକ୍ରୋକ୍ତି । ଏହି ବକ୍ରତା କବି ପ୍ରତିଭାର ମାପକ ଓ ବକ୍ରତା ସୃଷ୍ଟି ହିଁ କବିର ଏକମାତ୍ର କାର୍ଯ୍ୟ । ଏହା ମୁଖ୍ୟତଃ ଛଅ ଭାଗରେ ବିଭକ୍ତ— ବର୍ଣ୍ଣବିନ୍ୟାସ ବକ୍ରତା, ପଦ ପୂର୍ବାର୍ଦ୍ଧ ବକ୍ରତା, ପ୍ରତ୍ୟୟାଶ୍ରୟ ବକ୍ରତା, ବାକ୍ୟ ବକ୍ରତା, ପ୍ରକରଣ ବକ୍ରତା ଓ ପ୍ରବନ୍ଧ ବକ୍ରତା । ସାମଗ୍ରିକ ଦୃଷ୍ଟିରେ ଦେଖିଲେ ଶବ୍ଦ, ଅର୍ଥ, ବାକ୍ୟ, ପ୍ରକରଣ ଓ ସଂପୂର୍ଣ୍ଣ କାବ୍ୟର ବକ୍ରତା ଏଥିରେ ଅନ୍ତର୍ଭୁକ୍ତ । ବନ୍ଧ ଶବ୍ଦର ନୂତନ ବ୍ୟାଖ୍ୟାକରି କୁନ୍ତକ କହନ୍ତି— କାବ୍ୟରେ ଲାବଣ୍ୟ ଓ ସୌଭାଗ୍ୟ ଗୁଣ ପୁଷ୍ଟ ଶବ୍ଦ ଓ ଅର୍ଥ ବକ୍ର ବ୍ୟାପାର ସୁଶୋଭିତ ବାକ୍ୟର ସୁଷମ ସମାବେଶର ନାମ ବନ୍ଧ । ଲାବଣ୍ୟ ଗୁଣର ଅଭିପ୍ରାୟ ଚାତୁର୍ଯ୍ୟପୂର୍ଣ୍ଣ ସଂଯୁକ୍ତି ଓ ସୌଭାଗ୍ୟ ଗୁଣର ଆଶୟ ସହୃଦୟ ସାମାଜିକ ହୃଦୟରେ ଆହ୍ଲାଦ ସୃଷ୍ଟି ।

କୁନ୍ତକଙ୍କ କାବ୍ୟମାର୍ଗ ବିବେଚନ ପୂର୍ଣ୍ଣତଃ ମୌଳିକ । ସେ ପୂର୍ବ ସୂରୀଙ୍କ ଦେଶ ନାମ ଆଧାରିତ ମାର୍ଗ ବା ରୀତିକୁ ବହୁଭାବରେ ଖଣ୍ଡନ କରିଛନ୍ତି ଓ ସେ ମଧ୍ୟରେ ଥିବା ଉତ୍ତମ, ମଧ୍ୟମ, ଓ ଅଧମ ଧାରଣାକୁ ନିରର୍ଥକ ପ୍ରତିପାଦନ କରିଛନ୍ତି । ସେ କବି ସ୍ୱଭାବ ଆଧାରରେ କାବ୍ୟ ମାର୍ଗର ନାମ ନିର୍ଦ୍ଦେଶ କରି ପ୍ରତ୍ୟେକ ମାର୍ଗକୁ ସମାନ ମର୍ଯ୍ୟାଦା ଦେଇଛନ୍ତି । ଏହି କବି ସ୍ୱଭାବ ଆଧାରିତ ମାର୍ଗ ଅଗଣିତ ହେଲେ ମଧ୍ୟ ମୁଖ୍ୟତଃ ସୁକୁମାର ବିଚିତ୍ର ଓ ମଧ୍ୟମ ଭେଦରେ ତ୍ରିବିଧ । ପ୍ରତ୍ୟେକ ମାର୍ଗରେ ପ୍ରସାଦ, ମାଧୁର୍ଯ୍ୟ, ଲାବଣ୍ୟ ଓ ଆଭିଜାତ୍ୟ ଗୁଣ ସ୍ୱକୀୟ ରୀତିରେ ଗର୍ଭିତ ଥାଏ ଓ ସୌଭାଗ୍ୟ ତଥା ଔଚିତ୍ୟ ଗୁଣ ପ୍ରତ୍ୟେକ ମାର୍ଗର ଅନ୍ୟତମ ତତ୍ତ୍ୱ ।

କବି ପ୍ରତିଭା ସମୁଦ୍ଭୂତ ସହୃଦୟ ଆହ୍ଲାଦକ ସ୍ୱତଃସ୍ଫୂର୍ତ୍ତି ଅଳଙ୍କାର ବିମଣ୍ଡିତ, ସ୍ୱାଭାବିକ ସୌନ୍ଦର୍ଯ୍ୟରେ ସମୁଲ୍ଲସିତ ନିର୍ଦ୍ଦୋଷ ଶବ୍ଦ ଓ ଅର୍ଥରେ ରମଣୀୟ



Digitized by PPRACHIN, SOA

ବାକ୍ୟ ବିନ୍ୟାସ ଓ ଆହାର୍ଯ୍ୟ କୁଶଳତାରୁ ଭିନ୍ନ ବିଧାତାର ସୃଷ୍ଟି ପରି କବି କୌଶଳ ନିର୍ମିତ ସୃଷ୍ଟି ସୁକୁମାର ମାର୍ଗର ବିଶେଷତ୍ୱ । ବିନା ପ୍ରୟତ୍ନରେ ଶବ୍ଦ ଓ ଅର୍ଥ ବକ୍ରତାର ସ୍ଫୁରଣ, ଅଳଙ୍କାରର ସୂକ୍ଷ୍ମ ବିନ୍ୟାସରେ ଅଳଂକାର୍ଯ୍ୟର ଶୋଭା ଆଚ୍ଛାଦନ, ଲୋକୋତ୍ତର ଉକ୍ତି ବୈଚିତ୍ର୍ୟ ସମ୍ପାଦନ, କଳ୍ପନାର ଉଦ୍‌ଜୃମ୍ଭଣ, ଶବ୍ଦ ଓ ଅର୍ଥର ବକ୍ର ବିଦଗ୍ଧପୂର୍ଣ୍ଣ ବାକ୍ୟାର୍ଥର ଅଭିବ୍ୟକ୍ତି, ଅତିଶୟୋକ୍ତି ଜନିତ ବୈଚିତ୍ର୍ୟ ସୃଷ୍ଟି, ଅଲୌକିକ ସୌନ୍ଦର୍ଯ୍ୟ ସମ୍ବଳିତ ସରସ ଅଭିପ୍ରାୟ ପ୍ରକାଶକ ପଦାର୍ଥର ଉପସ୍ଥାପନ ବିଚିତ୍ର ମାର୍ଗର ବୈଶିଷ୍ଟ୍ୟ । ମଧ୍ୟମ ମାର୍ଗ ସୁକୁମାର ଓ ବିଚିତ୍ର ମାର୍ଗର ମଧ୍ୟବର୍ତ୍ତୀ । ଏଥିରେ ସହଜ ଓ ଉତ୍ପାଦ୍ୟ ପ୍ରତିଭାର ଅପୂର୍ବ ସମ୍ମିଶ୍ରଣ ଅପେକ୍ଷିତ । ଉପେନ୍ଦ୍ରଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଏହି ମଧ୍ୟମ ମାର୍ଗର ସମୁଚିତ ବିଳାସ କିପରି ସମୁଲ୍ଲସିତ ହୋଇଛି, ତାହା ବକ୍ରକବି ବ୍ୟାପାରର ସର୍ବବିଧ ଉଦାହରଣରୁ ଉପଲବ୍ଧ କରାଯାଇପାରେ ।

ବର୍ଣ୍ଣ ବିନ୍ୟାସ ବକ୍ରତା—

କାବ୍ୟରେ ବର୍ଣ୍ଣ ବା ଅକ୍ଷର ରମଣୀୟ ଭାବରେ ବିନ୍ୟସ୍ତ ହୋଇ ସହୃଦୟଙ୍କୁ ଆହ୍ଲାଦ ପ୍ରଦାନ କରିପାରିଲେ ଏହି ବକ୍ରତା ଜାତ ହୁଏ । ଏହା ଦ୍ୱାରା ଶବ୍ଦର ସୌନ୍ଦର୍ଯ୍ୟ ଉତ୍କର୍ଷ ଯୁକ୍ତ ହୋଇ ସାଙ୍ଗୀତିକ ମାଧୁର୍ଯ୍ୟରେ ଭାବ ଭୂମି ପ୍ରସ୍ତୁତ କରେ । ଏକ, ଦୁଇ ବା ବହୁ ବ୍ୟଞ୍ଜନବର୍ଣ୍ଣର ବ୍ୟବଧାନ ବା ଅବ୍ୟବଧାନରେ ବାରମ୍ବାର ଆବୃତ୍ତି ଏହି ବକ୍ରତାର ପରିଚାୟକ । କୁନ୍ତକଙ୍କ ଏହି ବକ୍ରତାରେ ସର୍ବବିଧ ଅନୁପ୍ରାସ ଅନ୍ତର୍ଭୁକ୍ତ । ୧ । ଉଦାହରଣ ସ୍ୱରୂପ ଏକ ବର୍ଣ୍ଣ ଓ ଦ୍ୱି ବର୍ଣ୍ଣର ଆବୃତ୍ତି—

ଗୀର୍ବାଣ ମତେ ନିର୍ବାଣ ସାରୂପ୍ୟକୁ ପାଇ
ସାକ୍ଷୀ ପକ୍ଷୀ କରନ୍ତି ପ୍ରତିମା ରୂପେ ଥାଇ । (୧-୬)

ଦ୍ୱିତୀୟ ପଦରେ 'କ୍ଷୀ' ଏବଂ ପ୍ରଥମ ପଦରେ 'ର୍ବାଣ' ବର୍ଣ୍ଣର ଦ୍ୱିରାବୃତ୍ତି ଶ୍ରୁତି ମାଧୁର୍ଯ୍ୟ ପ୍ରଦାୟକ ।

ଅରୁଣାଧରା ଧରା ଭୂଷା ପିଂଗଳାମ୍ବରଧରା ସାରା ପରି କରେ ଲୋକନ
ବୋଲେ ବିମନା ମନା ନନ୍ଦ ଦାୟିନୀ ଅନା ନଭେ ଶୋଭେତ ଶମମାନରେ

---

(୧) ଏତଦେବ ବର୍ଣ୍ଣ ବିନ୍ୟାସ ବକ୍ରତ୍ୱଂ ଚିରନ୍ତନେଷୁ ଅନୁପ୍ରାସ ଇତି ପ୍ରସିଦ୍ଧମ୍ ।
( ବ. ଜୀ.ବୃ.-୬୩ )

॥ ଶବ୍ଦେସାତ ॥

Digitized by PPRACHIN, SOA

କାଦମ୍ବିନୀ, କାଷ୍ଠାବଳୀରେ ଶତାଜାଳ, କେ ଦଗ୍ଧ ହେବ । ଖଞ୍ଜେଆଳୀ
ଅନୁଗତା ପଦ୍ମିନୀ ଅନୁରାଗକୁ ଘେନ ଅନୁସରଣେ ଖନୁମିଳ (୧୩-୬)

ପ୍ରଥମ ପଦରେ 'ଧର'ଓ'ର' ବର୍ଣ୍ଣର, ଦ୍ୱିତୀୟ ପଦରେ ମନା ଓ ନ ବର୍ଣ୍ଣର ଓ ଶେଷ ପଦରେ 'ଅନୁ'ର ବାରମ୍ବାର ଆବୃତ୍ତି ଧ୍ୱନି ମାଧୁର୍ଯ୍ୟ ସୃଷ୍ଟି କରି ଭାବାନୁଭୂତି ପାଇଁ ଭିତ୍ତିଭୂମି ପ୍ରସ୍ତୁତ କରେ । ଅନ୍ୟ ପକ୍ଷରେ ଗୋଟିଏ ବର୍ଣ୍ଣର ବହୁବାର ପ୍ରୟୋଗର ଅଭାବ, କଠୋର ବର୍ଣ୍ଣର କମ୍ ବ୍ୟବହାର ତଥା ପ୍ରଥମ ବ୍ୟବହୃତ ବର୍ଣ୍ଣର ପରିତ୍ୟାଗ ଓ ନୂତନ ବର୍ଣ୍ଣର ଗ୍ରହଣ ଏହି ବର୍ଣ୍ଣ ବିନ୍ୟାସ ବକ୍ରତାକୁ ସୁନ୍ଦର ଓ ମଧୁର କରେ । ପ୍ରଦତ୍ତ ଉଦାହରଣଟି ତାର ଏକ ପ୍ରକୃଷ୍ଟ ନମୁନା ।

ପ୍ରସାଦ ଗୁଣ ସମ୍ପନ୍ନ, ଶ୍ରୁତି ମଧୁର ଓ ଔଚିତ୍ୟଯୁକ୍ତ ହେଲେ ଯମକ ମଧ୍ୟ କାବ୍ୟ ମର୍ଯ୍ୟାଦା ଲଭ କରେ ।

"ଅଶଦରକର ବଶେ ଅଶ-ଦର କର । (୧-୫୬)

ଏଥିରେ ସନ୍ନିହିତ ଯମକ ପ୍ରସାଦ ଗୁଣଯୁକ୍ତ ଓ ଶ୍ରୁତିମଧୁର । ଏପରି ଯମକକୁ କୁନ୍ତକ ବାକ୍ୟବକ୍ରତା ମଧ୍ୟରେ ସ୍ଥାନିତ କରିବା ପକ୍ଷପାତୀ । କିନ୍ତୁ ଯେଉଁଠି ଯମକ ଶବ୍ଦ କାଠିନ୍ୟରେ ଭାବର ଉଦ୍‌ବୋଧକ ହୋଇପାରେ ନାହିଁ, ବା ଔଚିତ୍ୟ ହରାଇଥାଏ, ତାହା କାବ୍ୟ ପାଇଁ ଅନୁପଯୁକ୍ତ ଓ ଅଗ୍ରାହ୍ୟ, ଯଥା—

ଷଢ଼ିଲି ତନୁ ଷଢିଲି ତନୁ ପୁନଃ ପୁନଃ ମୁଁ ବୋଲି
ଷଡଜନତ ଷଡ଼ଜନତ ବାହନ କଲେ ମଲି । (୧୭-୮)

ଏଥିରେ ବିପ୍ରଲମ୍ଭ ରସ ପୁଷ୍ଟି ପାଇଁ ଆବଶ୍ୟକ ପ୍ରସାଦ ଗୁଣ ସମ୍ପନ୍ନ ବର୍ଣ୍ଣ ପରିବର୍ତ୍ତେ ଷ, ଢ଼, ଡ଼, ଃ ଆଦି ଓଜସ୍ ଗୁଣ ପ୍ରକାଶକ ବର୍ଣ୍ଣର ବ୍ୟବହାର ଔଚିତ୍ୟ ହୀନତା ବ୍ୟକ୍ତକରେ । ତେଣୁ କାବ୍ୟରେ ଏ ଧରଣର ଯମକ ରସ ପ୍ରକାଶକ ନହୋଇ ଶ୍ରୁତିକଟୁ ବାଧାତ୍ମକ ହେତୁ ପରିତ୍ୟାଜ୍ୟ ।

ପଦପୂର୍ବାର୍ଦ୍ଧ ବକ୍ରତା—

ପ୍ରାତିପଦିକ ବା ଧାତୁ ବୈଚିତ୍ର୍ୟ ଦ୍ୱାରା ରମଣୀୟତା ସୃଷ୍ଟି ହେଲେ ତାହାକୁ ପଦପୂର୍ବାର୍ଦ୍ଧ ବକ୍ରତା କୁହାଯାଏ । ଏହା ପର୍ଯ୍ୟାୟ ବକ୍ରତା, ରୂଢ଼ି ବକ୍ରତା, ଉପଚାର ବକ୍ରତା, ବିଶେଷଣ ବକ୍ରତା, ସଂବୃତି ବକ୍ରତା ଆଦି ଭେଦରେ ବହୁବିଧ ।

॥ ଶହେଆଠ ॥

Digitized by PPRACHIN, SOA

ପର୍ଯ୍ୟାୟବକ୍ରତା- ପର୍ଯ୍ୟାୟବାଚୀ ବହୁ ଶବ୍ଦ ମଧ୍ୟରୁ ବିଶେଷାର୍ଥ ବୋଧକ ଗୋଟିଏ ଶବ୍ଦର ପ୍ରୟୋଗରେ ପର୍ଯ୍ୟାୟ ବକ୍ରତା ହୁଏ, ଏହା ବହୁବିଧ । ଯେଉଁ ପର୍ଯ୍ୟାୟ ଅଭିଧେୟର ଅନ୍ତରଙ୍ଗ, ଯେହୁ ଅଭିଧେୟକୁ ଯେ ପୁଷ୍ଟ କରେ, ବିଶେଷଣ ଦ୍ୱାରା ଅଭିଧେୟକୁ ଯେ ଅଳଂକୃତ କରେ ଏବଂ ଅଳଙ୍କାର ଦ୍ୱାରା ଉତ୍ପନ୍ନ ଶୋଭାରେ ଯେ ମନୋହର ସେ ସମସ୍ତ ପର୍ଯ୍ୟାୟ ବକ୍ରତା ନାମରେ ଗୃହୀତ ।

ଦୃଷ୍ଟୀକୃତ କୁସୁମିତ କୃତମାଳେ କପୋତରୂତରୁ କରି
କୃଶୋଦରୀ ଦରୀଭୂତ ହୋଇ ହୃଷେ ଏତ କାମ ପ୍ରତିହାରୀ
ରେ ମିତ, ଦୂତୀକାନ୍ତ ଅଙ୍ଗ ଅଙ୍ଗୀକୃତେ,
ମହା ରଜତ ଲଗୁଡ଼ ଧୃତ, ଉଚ୍ଚ ଡ଼ାକରେ ହୋଇଛୁ ରତ । (୧୭-୨୧)

ଏଥିରେ କୃତମାଳ (ସୁନାରି ବୃକ୍ଷ)ରେ ପ୍ରତିହାରୀତ୍ୱର କାର୍ଯ୍ୟକଳାପ ରୂପକ ମାଧ୍ୟମରେ ବ୍ୟକ୍ତ କରି ଅଦ୍‌ଭୂତ ପର୍ଯ୍ୟାୟ ବକ୍ରତା ପ୍ରସ୍ତୁତ କରାଯାଇଛୁ ।

ଚମ୍ପା ଯେ ରଜା ଯୋଷାଗିରେ ବହ୍ନି, ଶିବ ତହିଁରେ ଗୁରୁତର ସ୍ନେହ,
ଜନ ମନୋହର ସୁବାସ ଅଛି, ଭ୍ରମର ଅବଲମ୍ବ ନାହିଁ କହୁ । (୨-୨)

ଏଥିରେ ବ୍ୟବହୃତ ଶିବ (ମହାଦେବ-ମଙ୍ଗଳ) ସୁବାସ (ସୌରଭ ଉତ୍ତମ ଗୃହ) ଆଦି ଶବ୍ଦ ବିଶେଷାର୍ଥ ବୋଧକ ହେତୁ ଚମତ୍କାର ଜନକ ହୋଇଅଛି ।

ଉପଚ୍ଚାର ବକ୍ରତା—

ଅମୂର୍ତ୍ତିକୁ ମୂର୍ତ୍ତି, ଚେତନକୁ ଅଚେତନ, ଓ କଠିନକୁ ଦ୍ରବ ପଦାର୍ଥ ବା ତଦ୍‌ବୈପରୀତ୍ୟ ବୋଧକ ଶବ୍ଦଦ୍ୱାରା କଥନରୁ ସୃଷ୍ଟି ହୁଏ ।

ହେଲା ନଶିନାଶ ଗଲା ଦଶି ଦଶ କ ପ୍ରାଚୀନାଗରୀ ବର,
ନୀଳ ଶାଢ଼ୀ ଗୁଡ଼ି ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର । (୧୭-୧)

ଏଥିରେ 'ଗୁଡ଼ିବା' ଓ ପିନ୍ଧିବା କ୍ରିୟା ଚେତନ ଧର୍ମ ହେଲେ ମଧ୍ୟ ଅଚେତନ ପ୍ରାଚୀଠାରେ ନାଗରୀ ନାୟିକା ଆରୋପିତ ହୋଇ ଉପଚ୍ଚାର ବକ୍ରତା ସୃଷ୍ଟି କରିଛୁ ।

ବିଶେଷଣ ବକ୍ରତା— ବିଶେଷଣ ବଳରେ କ୍ରିୟା ବା କାରକରୂପୀ ବସ୍ତୁର ରମଣୀୟତା ପ୍ରକାଶିତ ହେଲେ ବିଶେଷଣ ବକ୍ରତା ହୁଏ ।

॥ ଶ୍ରେଷ୍ଠ କଥ ॥

Digitized by PPRACHIN, SOA

ଏକେ କ୍ଷମାନିଧି ବୃନ୍ଦେଗୁଣୀ, ପୁଣି ରସିକ ମୁକୁଟମଣି
ଲେଶ କଥାକୁ ବିଶେଷରେ ଘେନିଲେ ବ୍ୟର୍ଥ ନୋହିବ ବାଲୀଙ୍କ ବାଣୀ ।
(୨୪-୨୯)

ନାୟିକାର ପ୍ରେମ ପକ୍ଷରେ ନାୟକ ପାଇଁ ଉକ୍ତ କ୍ଷମାନିଧି, ଗୁଣୀ, ରସିକ ଶିରୋମଣି ଆଦି ସମ୍ବୋଧନ ସହଜ ରମଣୀୟତା ବ୍ୟକ୍ତକରେ । ଅନ୍ୟତ୍ର—

ନୀଳ ଚିକ୍କଣ କୁଟିଳ କୋମଳ ପ୍ରଲମ୍ବ ଗହଳ ସୁଗନ୍ଧ ସ୍ଥୂଳ
ଏମନ୍ତ କେଶେ କି ରୁକ୍ଷ ସଂପାଦି········· (୭-୧୫)

ଏଥିରେ ପ୍ରଯୁକ୍ତ ବିଶେଷଣ 'କେଶ'ର ବହୁବିଧ ସାର୍ଥକ ବୈଶିଷ୍ଟ୍ୟ ଦ୍ୟୋତକ ।
ରୂଢ଼ି ବକ୍ରତା— ଶବ୍ଦର ଅସଂଭାବ୍ୟ ଅର୍ଥ ପ୍ରତୀତିରେ ଏହି ବକ୍ରତା ଆସେ—

ଭକ୍ତି ଦେବୀ ଗୁପ୍ତ ହୋଇଅଛୁ ଯୁକ୍ତାକ୍ଷରେ,
ବୈଷ୍ଣବ ବିହୁନେ କେହୁ ଜାଣିବ ସଂସାରେ । (୧-୧୩)

ଏଥିରେ ପ୍ରଯୁକ୍ତ 'ଯୁକ୍ତାକ୍ଷର' ଶବ୍ଦ ଜଗନ୍ନାଥ ଓ ସେଥିରେ ଥିବା ରାଧା-ପର୍ଯ୍ୟାୟବାଚୀ ଜଗତ୍ ଶବ୍ଦ ଓ ରାଧା ଭକ୍ତିମୟୀ ଆଦି ଭାବର ପ୍ରକାଶକ ହୋଇ-ପାରିଛୁ ।

ସମ୍ବୃତ ବକ୍ରତା— ସର୍ବନାମ ଆଦି ମାଧ୍ୟମରେ ପଦାର୍ଥର ଗୋପନ ଦ୍ୱାରା ସଂବୃତ ବକ୍ରତା ଜାତହୁଏ ।

ଗୃହିଁ ସ୍ତନକୁ, କି ଘେନି ମର୍ଦ୍ଦିଲ ବଜାଇ,
ଖେଳିବା ଗୋ ପଶା ତପସ୍ୟା ଭଞ୍ଜନୀ ସଂଗିନୀଙ୍କ ଗୃହିଁ ବୋଲାଇ । (୧୦-୧)

ଏଥିରେ 'କି ଘେନି' ଶବ୍ଦ ଦ୍ୱାରା ମର୍ଦ୍ଦିଲ ସହିତ ସ୍ତନର ଓ ପଶାକାଠି ସହିତ ଚୁଚୁକରସାମ୍ୟ ତଥା ମର୍ଦ୍ଦନ ଭାବଟି ବ୍ୟଞ୍ଜିତ ହୁଏ ।
ଲିଙ୍ଗ ବୈଚିତ୍ର୍ୟ ବକ୍ରତା— ପୁଲିଙ୍ଗ ସ୍ଥାନରେ ସ୍ତ୍ରୀ ଲିଙ୍ଗ ବା ତଦ୍‌ବୈପରୀତ୍ୟରେ ପ୍ରୟୋଗ

ଶୁଣରେ ରୁଚି ରାଧିକା ଚନ୍ଦ୍ରାବଳୀ ବିରାଜିତ ଅନୁପମରେ
କୁଞ୍ଜରେ ଲଳିତା ବିଶାଖା କ୍ରୀଡ଼ିତ ଇନ୍ଦୁରେଖା ଚମ୍ପାରମ୍ୟରେ । (୧୦ ୭)

ଏଥିରେ ଚନ୍ଦନ ବୃକ୍ଷ ପାଇଁ ଚନ୍ଦ୍ରାବଳୀ, ସୋମଲତା ପାଇଁ ଇନ୍ଦୁରେଖା, ଚମ୍ପାଗଛ ପାଇଁ ଚମ୍ପା, ଆଦି ଶବ୍ଦର ପ୍ରୟୋଗ ଅନ୍ୟାର୍ଥକୁ ବ୍ୟଞ୍ଜିତ କରିବା ସଙ୍ଗେ ସଙ୍ଗେ ଲିଂଗ ବୈଚିତ୍ର୍ୟ ବକ୍ରତା ପ୍ରତିପାଦନ କରେ ।

॥ ଶବ୍ଦେ ଦଶ ॥

Digitized by PPRACHIN, SOA

କ୍ରିୟା ବୈଚିତ୍ର୍ୟ ବକ୍ରତା—

'ତାପତ୍ରସ୍ତ ଭଣ୍ଡ ଭଞ୍ଜନକୁ ଦଣ୍ଡଧର ।
ସୁଦରଶନଙ୍କ ଚକେ ସେହି ପରକାର । (୧-୩୭)

ଭଣ୍ଡ ଭଞ୍ଜନ ଉପଯୋଗୀ ଦଣ୍ଡର ତାପତ୍ରସ୍ତ ଛେଦନରୂପୀ କ୍ରିୟା ବୈଚିତ୍ର୍ୟ ହୃଦୟଗ୍ରାହୀ ନୁହେଁ କି ?

ପଦପରାର୍ଦ୍ଧ ବକ୍ରତା ବା ପ୍ରତ୍ୟୟ ବକ୍ରତା—

କାରକ ବିଭକ୍ତି ବା କ୍ରିୟାର କାଳ ବୋଧକ ପ୍ରତ୍ୟୟ ଦ୍ୱାରା ସୃଷ୍ଟ ବକ୍ରତାର ନାମ ପଦପରାର୍ଦ୍ଧ ବକ୍ରତା । ଏହା କାଳବୈଚିତ୍ର୍ୟ ବକ୍ରତା, କାରକ ବକ୍ରତା, ସଂଖ୍ୟା ବକ୍ରତା, ପୁରୁଷ ବକ୍ରତା ଆଦି ଭେଦରେ ବହୁବିଧ ।

କାରକ ବକ୍ରତା— ଅଚେତନ ବସ୍ତୁରେ ଚେତନତ୍ୱର କର୍ତ୍ତୃତ୍ୱାରୋପ-

ଲେଖ ଗୋ ଚଟାଉ ଅଦ୍ଧୀର ଭୁଟାଉ ଘୋଟାଉ କାମ ଅନ୍ଧାର ଯେ ।(୨୧-୧)

ଏଥିରେ ଭୁଟାଇବା ଓ ଘୋଟାଇବା କ୍ରିୟାର କର୍ତ୍ତାରୂପେ ଚଟାଉ ଉପସ୍ଥାପିତ । ଅଚେତନ ବସ୍ତୁରେ ଚେତନତ୍ୱ ଆରୋପିତ ହୋଇ ଅପୂର୍ବ ଚମତ୍କାରତା ସୃଷ୍ଟି କରେ ।

ପୁରୁଷବକ୍ରତା-ଏକେକ୍ଷମାନଧି···ବ୍ୟର୍ଥ ନୋହିବ ବାଳୀଶବାଣୀ । (୨୪-୧୧)

ଏଥିରେ ମୋର ବାଣୀ ସ୍ଥାନରେ ତାଟସ୍ଥ୍ୟ ପ୍ରତିପତ୍ତି ପାଇଁ ବାଳୀଶ ଶବ୍ଦର ପ୍ରୟୋଗ ବୈଚିତ୍ର୍ୟ ଜନକ/ଅନ୍ୟାନ୍ୟ ବକ୍ରତାର ଉଦାହରଣ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରୁ ସଂଗ୍ରହ କରାଯାଇପାରେ । ନମୁନା ସ୍ୱରୂପ କେତେଗୋଟି ଉପସ୍ଥାପନ କରାଗଲା ।

ବାକ୍ୟ ବକ୍ରତା ବା ପଦାର୍ଥ ବକ୍ରତା—

ପ୍ରତିପାଦିତ ସୁକୁମାର, ବିଚିତ୍ର ଓ ମଧ୍ୟମ ମାର୍ଗରେ ବର୍ଣ୍ଣ୍ୟମାନ ବକ୍ର ଶବ୍ଦ, ଅର୍ଥ, ଗୁଣ, ଅଳଙ୍କାରର ସୌନ୍ଦର୍ଯ୍ୟରୁ ଭିନ୍ନ କବିର ଲୋକୋତ୍ତର କୁଶଳତା ରୂପ ଅନିର୍ବଚନୀୟ ଶକ୍ତିରେ ପ୍ରାଣବାନ୍ ବାକ୍ୟ ନିହିତ ବକ୍ରତାକୁ କୁନ୍ତକ ବାକ୍ୟ ବକ୍ରତା ଆଖ୍ୟା ପ୍ରଦାନ କରିଛନ୍ତି । ଯେପରି ରମଣୀୟ ଚିତ୍ରିତ ଫଳକ, ରେଖାବିନ୍ୟାସ, ରଙ୍ଗ, କାନ୍ତି ଆଦିରୁ ଭିନ୍ନ ଚିତ୍ରକାରର କୁଶଳତାରେ ପ୍ରାଣିତ ହୋଇ ଝଲସି ଉଠେ । ସଂକ୍ଷେପରେ କହିଲେ ପଦାର୍ଥର ସ୍ୱାଭାବିକ ସୌକୁମାର୍ଯ୍ୟ ସୃଷ୍ଟି ବାକ୍ୟବକ୍ରତା ପ୍ରସ୍ତୁତ କରେ ।

ନବ ବୟସ ସଙ୍ଗେ ମେଳ, ହୋଇ ହେବାରୁ କୋଳାକୋଳ,
ଶୋଭା ପ୍ରଭାଏ ଭିଡ଼ାଭିଡ଼ି, ହରଷ ରସ ଜଡ଼ାଜଡ଼ି

॥ ଶବ୍ଦେ ଏଗାର ॥

Digitized by PPRACHIN, SOA

ଶ୍ରବଣକ ଏ କଷାକର୍ଷି, ହାବ ନୟନ ମିଶାମିଶି,
ଲୀଳା ବିଳାସ ଦଶିଗଲେ, ପ୍ରସନ୍ନ ସାଗର ଉଚ୍ଛୁଳିଲେ । (୫-୪/୫)

ନାୟିକାର ଯୌବନର ପୂର୍ଣ୍ଣଭାବରେ ସୌନ୍ଦର୍ଯ୍ୟ, ଧାସ୍ତି, ଭ୍ରୂଭଂଗ,ଲୀଳା, ବିଳାସ ଆଦିର ସ୍ୱତଃସ୍ଫୂର୍ତ୍ତ ପରପ୍ରକାଶ ସ୍ୱଚ୍ଛ ରୀତିରେ ଉପସ୍ଥାପନ ବାସ୍ତବରେ ଚମତ୍କାର-ଜନକ । ବସ୍ତୁର ସହଜବକ୍ରତା ସ୍ୱାଭାବିକ ସୌନ୍ଦର୍ଯ୍ୟ ସୃଷ୍ଟିକରେ ଓ ରସାଦିକୁ ପୁଷ୍ଟକରେ ।

ମାଳା କଣ୍ଠକଲେ କେବଳ କର, ହେଳା କଣ୍ଠଦେଲେ କଣ୍ଟସ୍ୱ ବାର,
ପାନକଣ୍ଠ ମାନ କଲେ ଅଧର, ଧ୍ୟାନ କରି କଲେ ଭାବ ବାଗୁର । (୨-୫୪)

ଏଥିରେ ସ୍ୱାଭାବିକ ଓ ସାବଳୀଳ ରୀତିରେ ସଂଯୋଜିତ ଶବ୍ଦାବଳୀ ରାଜା ଓ ରତିମଦିରାର ବିଳାସମୟ ଭଙ୍ଗୀକୁ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ସଂଭୋଗ ଶୃଙ୍ଗାରର ଅଭିବ୍ୟକ୍ତିରେ ସହାୟକ ହୋଇପାରିଛି ।

ସ୍ଥଳବିଶେଷରେ ରମଣୀୟ ଢଙ୍ଗରେ ଅଳଂକୃତ ପଦଗୁଡ଼ିକ କବି କୌଶଳର ପ୍ରଦର୍ଶକ ହୋଇଥାଏ । ତାହା ବାକ୍ୟ ବକ୍ରତାର ଅନ୍ୟ ଏକ ଦିଗନ୍ତ ।

ସେ କାଳେ ସରସୀ ଶୋଭା ସେ କେଳି ମନ୍ଦିର
ଅତି ମଦନ ମଦାନ୍ଧ ତରୁଣ କୁଞ୍ଜର
କର ସନାଳ ନୀରଜ କରରେ ଧଇଲା
ସ୍ୱଭାବେ ନଳିନୀ ଲତା ଉପାଡ଼ି କ ନେଲା । (୩୪-୩୨)

ମଧୁଶଯ୍ୟା ଗୃହରେ ଅପେକ୍ଷମାଣ ସ୍ୱୟମ୍ବର ପଣ୍ଡିତ ନାୟକ ସୁଦର୍ଶ ସଲଜ୍ଜା ନାୟିକାର ପ୍ରବେଶ ମାତ୍ରେ ତାହାକୁ ବ୍ୟାକୁଳିତ ହୃଦୟରେ କପରି ଆକର୍ଷଣ କରିଛି ସେହି ଭାବଟି ଅଳଙ୍କାର ମାଧ୍ୟମରେ ଅଭିବ୍ୟକ୍ତ । ଏଠାରେ ଉପମା ଓ ରୂପକ ଉତ୍ପ୍ରେକ୍ଷା ଦ୍ୱାରା ପୁଷ୍ଟ ହୋଇ ଅନବଦ୍ୟ ସୌନ୍ଦର୍ଯ୍ୟ ସୃଷ୍ଟିକରେ ।

କବିର ଶକ୍ତି ଓ ବ୍ୟୁତ୍ପତ୍ତି ପରିପୁଷ୍ଟ ପ୍ରୌଢ଼ କୁଶଳତା ହିଁ ଅଳଙ୍କାର । ତାହା ଆହାର୍ଯ୍ୟ ବକ୍ରତା ଅନ୍ତର୍ଭୁକ୍ତ, ତେଣୁ କୁନ୍ତକ ସମସ୍ତ ଅଳଙ୍କାରକୁ ବାକ୍ୟ ବକ୍ରତା ମଧ୍ୟରେ ଗର୍ଭିତ କରିଛନ୍ତି । ୩ । କୁନ୍ତକ ପୂର୍ବାଚାର୍ଯ୍ୟଙ୍କ ଦ୍ୱାରା ସ୍ୱୀକୃତ ନିର୍ଦ୍ଦିଷ୍ଟ କେତେଗୋଟି ଅଳଙ୍କାରକୁ ନାମତଃ ସ୍ୱୀକାର କରିଛନ୍ତି ଓ ସ୍ୱକୀୟ ଲକ୍ଷଣ

---

(୩) ବାକ୍ୟସ୍ୟ ବକ୍ରଭାବୋଽନ୍ୟୋ ଭିଦ୍ୟତେ ଯଃ ସହସ୍ରଧା ।
ଯତ୍ରାଲଙ୍କାର ବର୍ଗୋଽସୌ ସର୍ବୋଽପ୍ୟନ୍ତର୍ଭବିଷ୍ୟତି । (ବ୍ୟା-ଜୀ-ପୃ-୨୧୪)

॥ ଶବ୍ଦେହ ବାର ॥

Digitized by PPRACHIN, SOA

ପ୍ରଦାନ କରି ତାର ଯଥାର୍ଥ୍ୟ ବ୍ୟକ୍ତ କରିଛନ୍ତି । ନମୁନା ସ୍ୱରୂପ କେତେଗୋଟି ଅର୍ଥାଲଙ୍କାରର ଉଦାହରଣ ପ୍ରସ୍ତୁତ କରାଯାଉଛି ।

ସହୋକ୍ତି— ଯେଉଁଠି ପ୍ରସ୍ତୁତ ପଦାର୍ଥର ନିଷ୍ପତ୍ତି ପାଇଁ ଗୋଟିଏ ବାକ୍ୟରେ ଅନେକ ପଦାର୍ଥର କଥନ ପ୍ରସ୍ତୁତ କରାଯାଏ ତାହାର ନାମ ସହୋକ୍ତି ।

ଯଥା— ନାଗରମଣି ସାର ସୁରଭିଧାମ ନାହିଁ ଶ୍ରୁତିରେ ତାହା ଶାରଦ ସମ ।
ସୁନାସା ଦୃଶ କାନ୍ତି କି ମନୋରମ, କାମିନୀଚୟ ଧୈର୍ଯ୍ୟ ହତକୁ କ୍ଷମ ।
(୨୦-୨)

ଏଥିରେ ଏକନ୍ତ ନାୟକ-ନାୟିକାର ରୂପ ଓ ଗୁଣାତିଶୟ ବିପ୍ରଲମ୍ଭ ଶୃଙ୍ଗାରର ପରିପୋଷକ ରୂପେ ଉପନିବଦ୍ଧ । ଏତାଦୃଶ ପଦ ଯୋଜନା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀରେ ବହୁ ପଦରେ କରାଯାଇଛି ।

ଶ୍ଳେଷ— ଗିରିଧାରୀଙ୍କ ବୃଷାନନ୍ଦଦାୟୀ, ଅମୃତନିଧି ବିଷ୍ଣୁପଦସ୍ଥାୟୀ । (୨-୩୭)

ଏଥିରେ ଗଙ୍ଗାକୁ ଶଚୀ ଓ ଚନ୍ଦ୍ର ସହିତ ଏକୀଭୂତ କରାଯାଇଛି ।

ଉତ୍ପ୍ରେକ୍ଷା— ହେ କୁମୁଦ ବିକାଶ ଉଠି ଉଠି ଯାଇ ପଦ୍ମ ଫୁଟି ଫୁଟି ଆସେ
ହରଷ ହରସ ପାଲଟା ପାଲଟି ମଧୁଲିଟ ବିଟ କି ଯେ ?(୨୯-୨୭)

ଏଠାରେ ଭ୍ରମରଠାରେ ବିଟତ୍ୱ ଉତ୍ପ୍ରେକ୍ଷିତ ।

ଅର୍ଥାନ୍ତର ନ୍ୟାସ—
ଏଣୁ ବିରହ ଅନଳ ସରି, ଯୁବା ଯୁବତୀ ଗିରି-ବଲ୍ଲରୀ,
କାହିଁରେ ସଂଗତ କାହା ଭୟଙ୍କର ନଷ୍ଟେ ନୀଚକୁ ସମସ୍ତେ ମାରି ।(୨୪-୨୭)

ଏହି ପଦରେ ବିଶେଷାର୍ଥଟି ସାମାନ୍ୟ ଦ୍ୱାରା ସମର୍ଥିତ ହୋଇ ବାକ୍ୟ ବକ୍ରତାରେ ସହୃଦୟଙ୍କୁ ମୁଗ୍ଧ କରେ ।

ଅତିଶୟୋକ୍ତି— ମୁଖ ଛବି ଧ୍ୟାନରେ ମ୍ଳାନ, ସଙ୍କୋଚେ ନଳିନ ମଳିନ,
ଦିନାନ୍ତେ ଜନ୍ମିଲା ଏ ଖ୍ୟାତି ନିତି ନିତି ଭଜେ ସେ ଖ୍ୟାତି (୫-୧୦)

ପଦ୍ମ ଠାରୁ ନାୟିକାର ମୁଖ ସୌନ୍ଦର୍ଯ୍ୟାଧିକ୍ୟଟି ଖ୍ୟାତ ସାନ୍ଧ୍ୟପଦ୍ମର ମ୍ଳାନିମା ସହିତ ଅସମ୍ବନ୍ଧରେ ସମ୍ବନ୍ଧ ସ୍ଥାପିତ ହୋଇ ଅପୂର୍ବ ମାଧୁର୍ଯ୍ୟ ଦ୍ୟୋତକ ହୋଇ ପାରିଛି ।

ରୂପକ— ମନ୍ତ୍ରୀବର ବେଗେ କହେ ନୃପବର୍ଗ ଅଭିଧାନ ବିଶ୍ୱାନନ୍ଦଙ୍କୁ
କାନ୍ତାଦିକାଣ୍ଡ ପ୍ରକାଶ ତନିଲୋକ ଜିତ କୃତ ଶ୍ଳୋକ ବୃନ୍ଦକୁ

॥ ଶତହେତେର ॥

Digitized by PPRACHIN, SOA

ଉତ୍ତମ ବର୍ଣ୍ଣ ଉଜ୍ଜ୍ୱଳ ସବେ ଉହିଁ,
ଉପବନ ହେବ ସ୍ୱଭବେ ପୁସ୍ତକ ଲେଖା ଭବେ ଦେବା ଋଷାଇ । (୧୮-୭)

ଏହି ପଦରେ ସ୍ୱୟଂବର ପାଇଁ ଆଗତ ରାଜା ମାନଙ୍କୁ ଅଭିଧାନ ସହିତ ରୂପକାଲଂକାରରେ ସମୀକୃତ କରାଯାଇଛି । କାନ୍ତାଦିକାଣ୍ଡ ଦେଇରେ କବି ଉପେନ୍ଦ୍ର ନିଜ ଗୀତାଭିଧାନ'ର କାନ୍ତ, ଖାନ୍ତ, ଗାନ୍ତ ଆଦି କାଣ୍ଡର ସୂଚନା ଦେଇଛନ୍ତି । ପ୍ରକାରାନ୍ତରେ ଏଥିରୁ ପ୍ରମାଣ କରାଯାଇପାରେ ଯେ 'ଗୀତାଭିଧାନ' ଗ୍ରନ୍ଥଟି ଉପେନ୍ଦ୍ର କୃତ ଓ ସେହି ଗ୍ରନ୍ଥଟି କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଗ୍ରନ୍ଥର ପୂର୍ବବର୍ତ୍ତୀ ରଚନା ।

ଏହିପରି କୁନ୍ତକଙ୍କ ସ୍ୱୀକୃତ ସମସ୍ତ ଅଳଙ୍କାରର ବହୁ ଉଦାହରଣ ଆଲୋଚ୍ୟ ଗ୍ରନ୍ଥରୁ ଉଦ୍ଧାର କରାଯାଇପାରେ । ପ୍ରବନ୍ଧର କଳେବର ବୃଦ୍ଧି ଭୟରେ ପରିହାର କରାଯାଇଛି । ବିଶେଷକରି କୁନ୍ତକ ଅଳଙ୍କାରକୁ ଆହାର୍ଯ୍ୟ ବକ୍ରତା ରୂପେ ଉପସ୍ଥାପନ କରିଛନ୍ତି ଓ ବଚିତ୍ର ତଥା ମଧ୍ୟମ ମାର୍ଗରେ ଏହାର ବହୁଳ ପ୍ରୟୋଗକୁ ସ୍ୱୀକୃତି ଦେଇଛନ୍ତି । ଉପେନ୍ଦ୍ରଙ୍କ ଏହି କାବ୍ୟରେ ଅଳଙ୍କାରର ପ୍ରାଚୁର୍ଯ୍ୟ ସେହି ମଧ୍ୟମ ମାର୍ଗର ପୋଷକ ମାତ୍ର ।

ପ୍ରକରଣ ବକ୍ରତା—

କୁନ୍ତକଙ୍କ ମତରେ କାବ୍ୟସମୂହ ଓ ସଂପୂର୍ଣ୍ଣ ଅଂଶ ବିଶେଷର ନାମ ପ୍ରକରଣ । ସେହି ପ୍ରକରଣ ସହଜ ଓ ଆହାର୍ଯ୍ୟ ସୁକୁମାରତାରେ ରଂଜିତ ହେଲେ ତାହାକୁ ପ୍ରକରଣ ବକ୍ରତା କୁହାଯାଏ । ଏହାର ବହୁବିଧ ରୀତି ପ୍ରଦର୍ଶିତ ହୋଇଛି ।

ମୂଳ ବିଷୟକୁ ଉଚ୍ଛେଦନ କରି ପୁରାତନ କଥାରେ ଅବାଧ ସ୍ୱାତନ୍ତ୍ର୍ୟ ନେଇ କଳ୍ପନାକୁ ବାସ୍ତବ ରୂପରେ ଉପସ୍ଥାପନ ପ୍ରଥମ ପ୍ରକାର ପ୍ରକରଣ ବକ୍ରତା । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ରାଜା ବିଶ୍ୱାନନ୍ଦକଙ୍କ ଦ୍ୱାରା ବ୍ରହ୍ମାଙ୍କ ବାହନ ହଂସର ରାକ୍ଷସ କବଳରୁ ଉଦ୍ଧାର, ବ୍ରହ୍ମାଙ୍କ ବରଦାନ, ରତିମର୍ଦ୍ଦା ଅପ୍ସରା ସହିତ ରାଜାଙ୍କ ମିଳନ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଜନ୍ମ ପ୍ରକରଣଟି ପୌରାଣିକ ଅତିରଞ୍ଜନ କଳ୍ପନାରେ ବିବୃତ ହୋଇଛି ଓ ନାୟିକା ଅପ୍ସରା ସମ୍ଭବା ସ୍ୱର୍ଗୀୟା ଭବେ ଅଲୌକିକ ସୌନ୍ଦର୍ଯ୍ୟର ଅଧିକାରିଣୀ ହେବା ପ୍ରତ୍ୟୟକୁ ପାଠକ ମନରେ ସଞ୍ଚାର କରିପାରୁଛି ।

ଗୋଟିଏ ପଦାର୍ଥର ସ୍ୱରୂପ ଅପୂର୍ବ ରସ ଓ ଅଳଙ୍କାର ସଂଯୋଜନରେ ରମଣୀୟ ହେବା, ପ୍ରତ୍ୟେକ ସ୍ଥଳରେ ସେହି କଥାକୁ ବାରମ୍ବାର ଉପସ୍ଥାପନ କରିବା ଅନ୍ୟ ଏକ ପ୍ରକରଣ ବକ୍ରତା । କବି ଉପେନ୍ଦ୍ର ନାୟିକାକୁ ସ୍ୱର୍ଗୀୟା ଭବେ ପ୍ରଦର୍ଶନ କରିବା ପରେ ସ୍ୱର୍ଗୀୟା କନ୍ୟା (ବାଣୀକା-ଶଚୀକଳା-କାଦମ୍ବିନୀଙ୍କ ସଖୀ ରୂପେ



Digitized by PPRACHIN, SOA

(୫ମଛାନ୍ଦ) ସନ୍ନ୍ୟାସୀ, ଅବଧୂତ, ଉପାଧ୍ୟାୟୀ, ନାରଦ ଆଦିଙ୍କୁ ବିଭିନ୍ନ ସ୍ଥାନରେ ଉପସ୍ଥିତ କରାଇ କାର୍ଯ୍ୟ, ସଂପାଦନ ସଂଗଠନ ରକ୍ଷା କରିଛନ୍ତି ।

ସ୍ଥଳ ବିଶେଷରେ ନୂତନ ପ୍ରକରଣ ସଂଯୋଜନ କରି ପ୍ରଧାନ ବସ୍ତୁର ସିଦ୍ଧି କରାଗଲେ ପ୍ରକରଣ ବକ୍ରତା ସୃଷ୍ଟି ହୁଏ । ପୂର୍ବ ପରିଚିତ ପ୍ରେମିକ ନାୟକ ପୁଷ୍ପକେତୁ ସହିତ ପ୍ରେମିକା ନାୟିକା କୋଟିବ୍ରହ୍ମାଣ୍ଡସୁନ୍ଦରୀର ମିଳନ ପାଇ ସ୍ୱୟଂବର ଘଟଣା ସଂଯୋଜନ ଓ ବିଚିତ୍ର ସ୍ୱର୍ଗୀୟ ମୃଗର ଶୃଙ୍ଗର ଛେଦନ ଘଟଣା ନୂତନଭାବରେ ପ୍ରଦର୍ଶିତ । ପୂର୍ବରୁ ରାମାୟଣ ଓ ମହାଭାରତରେ ସଂଯୋଜିତ ସୀତା ଓ ଦ୍ରୌପଦୀଙ୍କ ବିବାହ ପାଇଁ ପଣରକ୍ଷାମୂଳକ ସ୍ୱୟଂବର ବ୍ୟବସ୍ଥା ସ୍ମରଣ ପାଠକ ହୃଦୟର ବିଶ୍ୱାସକୁ ଦୃଢ଼ୀଭୂତ କରେ ।

ସୌନ୍ଦର୍ଯ୍ୟ, ସୃଷ୍ଟି ପାଇଁ କାବ୍ୟ ମଧ୍ୟରେ ଜଳକ୍ରୀଡ଼ା, ମୃଗୟା, ବନବିହାର ଆଦିର ସଂଯୋଜନ ଅନ୍ୟତମ ପ୍ରକରଣ ବକ୍ରତା ଭାବେ ନିର୍ଣ୍ଣୀତ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନାୟିକାର ବନବିହାର ବର୍ଣ୍ଣନା (୧୦ମଛାନ୍ଦ) ଶୃଙ୍ଗାର ରସାତ୍ମକ କାବ୍ୟ ହେତୁ ନାୟକର ପ୍ରେମପତ୍ର ପ୍ରଦାନ (୨୩ଛାନ୍ଦ) ନାୟିକାର ପ୍ରେମପତ୍ର ଲିଖନ (୨୯ଛାନ୍ଦ) ମଧୁ ଶଯ୍ୟା ମଣ୍ଡନ (୩୪ଛାନ୍ଦ) ସଖୀମାନଙ୍କର କେଳିଗୃହ ବାହୁଡ଼ା ନାୟିକା ପ୍ରତି ପରିହାସ (୩୫ଛାନ୍ଦ) ଅତି ସୁନ୍ଦର, ହୃଦ୍ୟ ତଥା ଶାଳୀନ ଭାବରେ ଚର୍ଚ୍ଚିତ । ଏ ସମସ୍ତ ବକ୍ରତା କଥାନକର ରୁଚିତା, ସତ୍ୟ ଆଧାରିତ କଳ୍ପନା, ସଂଗଠନ ରକ୍ଷା, ଯୌକ୍ତିକତା ଓ ସଂଯୋଜନ କୌଶଳର ଗୁରୁତ୍ୱ ତଥା ଗାମ୍ଭୀର୍ଯ୍ୟ ବ୍ୟକ୍ତ କରେ ।

ପ୍ରବନ୍ଧ ବକ୍ରତା

କୁନ୍ତକଙ୍କ ବିଚାରରେ ସଂପୂର୍ଣ୍ଣ ମହାକାବ୍ୟ ବା ନାଟକର ନାମ ପ୍ରବନ୍ଧ ଓ ସେଥିରେ ସାମଗ୍ରିକ ଭାବେ ବିଷୟବସ୍ତୁ ତଥା ଚରିତ୍ର ଆଧାରରେ ସୃଷ୍ଟ ସୌନ୍ଦର୍ଯ୍ୟର ନାମ ପ୍ରବନ୍ଧ ବକ୍ରତା । ଏହା ମଧ୍ୟ ବହୁବିଧ ।

କଥା ବସ୍ତୁରେ ବୈଦଗ୍ଧ ସୃଷ୍ଟି ଅପେକ୍ଷା ନାମକରଣରେ ପ୍ରାଧାନ୍ୟ କଥା ଯୋଜନାରେ ବ୍ୟକ୍ତ କରି ପ୍ରବନ୍ଧବକ୍ରତା ସୃଷ୍ଟି କରାଯାଏ । ଏ କାବ୍ୟରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ନାମକରଣର ମହତ୍ତ୍ୱ ଓ ତାର ସୁଷମ ସୌନ୍ଦର୍ଯ୍ୟର ପରାକାଷ୍ଠା ଅଭିବ୍ୟକ୍ତ । କବି ବହୁସ୍ଥଳରେ କାବ୍ୟ ନାୟିକାର ବୈଶିଷ୍ଟ୍ୟ ବ୍ୟକ୍ତ କରି ନାମକରଣର ଯାଥାର୍ଥ୍ୟ ରକ୍ଷା କରିଛନ୍ତି ।

॥ ଶହେପନ୍ଦର ॥

Digitized by PPRACHIN, SOA

ରଚିବ କୋଟି ବ୍ରହ୍ମାଣ୍ଡସୁନ୍ଦରୀ ଚରିତ
ସୁକାନ୍ତ ସୁମନାପରି ହୋଇବ ଏ ଗୀତ । (୧-୬୦)
ବୋଲିବ କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମ ଅଙ୍କୁରରୁ ପ୍ରେମମଞ୍ଜରୀ, (୨-୪୯)

ନାମ ଯା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଦୃଷ୍ଟ ରଜାପଦ ଏବେ ଆଦରି (୩-୨୯)
ଏବେ ତରୁଣଙ୍କୁ ଭଜେ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଯେ (୫-୨୧)
ଯେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏ ହେଲେ ତାହା ସହଚରୀ (୫-୩୭)
କୋଟିବ୍ରହ୍ମାଣ୍ଡସୁନ୍ଦରୀଏପଦୁ ବର୍ଣ୍ଣିବ ବର୍ଣ୍ଣ ଘେନ ଆଦ୍ୟରୁ
କି ଯୋଗରୁ ଯୋଗ ଏକା ସ୍ଥାନକେ, ଗୋଟିଏ ଗୋଟିଏ କଳ୍ପ କଳ୍ପକେ,
ପ୍ରମାଣ କଲେ ନିର୍ମାଣ କେମା, ବନ୍ଦନ କଲେ ନନ୍ଦନ ଉପମା, (୮-୪)
ଉପାଧ୍ୟାୟୀ କହି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, କଲ୍ୟାଣୀ ଦର୍ଶନ ବରିଷ୍ଠକ ବଚନେ କହି
(୨୧-୧୭)

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ହୋଇବ ନିରନ୍ତର ଏହି ବିଗ୍ରହ, (୨୩-୨୯)
କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଶୋଭିଣ୍ଡବେ, ବୁଡାଇ ଦେଇଛୁ ବୁଦ୍ଧି, (୨୯-୨୧)
କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଯେ ଏମନ୍ତ ଶୋଭି ପୁଣି ବନ୍ଧି (୩୦-୧୮)

ଉପର୍ଯ୍ୟୁକ୍ତ ପଦଗୁଡିକୁ ପାଠକଲେ କବି କାବ୍ୟ ନାୟିକାର ମହତ୍ତ୍ୱ ପ୍ରଖ୍ୟାପନ ପାଇଁ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ନାମକରଣ ବିଷୟରେ ସଚେତନ ଥିବା ମନେହୁଏ ।

ସାହିତ୍ୟର ମୂଳଲକ୍ଷ୍ୟ ସୌନ୍ଦର୍ଯ୍ୟ ସୃଷ୍ଟି ମାଧ୍ୟମରେ ସାମାଜିକର ଭାବ ଚେତନାରେ ବିବର୍ତ୍ତନ ସୃଷ୍ଟି । ଆଲୋଚକ ଆଚାର୍ଯ୍ୟ କୁନ୍ତକ କାବ୍ୟ ବା ସାହିତ୍ୟର ସୌନ୍ଦର୍ଯ୍ୟ ଅବବୋଧ ପାଇଁ ଏକ ନୂତନ ଦୃଷ୍ଟି ପ୍ରଦାନ କରିଛନ୍ତି । କିନ୍ତୁ ସୌନ୍ଦର୍ଯ୍ୟ ବିଶ୍ଳେଷଣ ସାପେକ୍ଷ ନୁହେଁ । ଏହା ଉପଲବ୍ଧିର ବସ୍ତୁ । ତେଣୁ କୁନ୍ତକଙ୍କ ବ୍ୟାଖ୍ୟା ସୌନ୍ଦର୍ଯ୍ୟ ନିକଟରେ ପହଞ୍ଚିବାପାଇଁ ଏକ ସୁଚିନ୍ତିତ ମାର୍ଗ । ଉପେନ୍ଦ୍ର, କୁନ୍ତକଙ୍କ ପ୍ରଦର୍ଶିତ କବିମାର୍ଗ ବିଷୟରେ ସଚେତନ ଥିବା ବୈଦେହୀଶ ବିଳାସରୁ ସ୍ପଷ୍ଟ ହୁଏ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ମଧ୍ୟ ପ୍ରସଙ୍ଗ ବିଶେଷରେ କୁନ୍ତକଙ୍କ କେତେକ ବିଶିଷ୍ଟ ଶବ୍ଦର ପ୍ରୟୋଗ କରି ଅସ୍ପଷ୍ଟ ଭାବେ ତାଙ୍କ ଚେତନା ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିଥିବା ଶଙ୍କି ଏ କାବ୍ୟରୁ ଉଦ୍ଧାର କରାଯାଇପାରେ ।

ଲକ୍ଷଣ ସହିତ ସାହିତ୍ୟ ଏହି ଚିତ୍ତ ମୋହିତ, (୧୮-୬୫)
ପ୍ରଗଲ୍‌ଭତା ବହୁବିଧ ଘଟିତ ହାସ ପରିହାସ ସୁବନ୍ଧ ଉକ୍ତି । (୩୧-୪)
ନାନାବନ୍ଧ ବିଖ୍ୟାତ ଶୃଙ୍ଖଳା ଧ୍ୱନିଘେନ ।
ବକ୍ରୋକ୍ତି ଜନ୍ମିବ ମେଳ ହୋଇଲେ ସଜନୀ । (୩୪-୪୫)

॥ ଶବ୍ଦେହ୍ୱେପୋହିଳ ॥

Digitized by PPRACHIN, SOA

ଉପର୍ଯ୍ୟୁକ୍ତ ଗ୍ରନ୍ଥପଦରେ ରେଖାଙ୍କିତ ପଦଗୁଡ଼ିକ କୁନ୍ତକଙ୍କ ଆଲୋଚନା ଗ୍ରନ୍ଥ 'ବକ୍ରୋକ୍ତି ଜୀବିତମ' ପ୍ରତି ଆକର୍ଷଣର ସୂଚନା ଦିଏ ନାହିଁକି ? ସେ ଦୃଷ୍ଟିରୁ ଉପେନ୍ଦ୍ରଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ କୁନ୍ତକଙ୍କ ପ୍ରଦର୍ଶିତ କବିମାର୍ଗ ମଧ୍ୟରୁ ଅନ୍ୟତମ ମଧ୍ୟମ ମାର୍ଗର ଗ୍ରନ୍ଥ କହିବା ସମୀଚୀନ ମନେହୁଏ ।

---

୩) ବାକ୍ୟସ୍ୟ ବକ୍ରଭାବୋଽନ୍ୟୋ ଭିଦ୍ୟତେ ଯଃ ସହସ୍ରଧା ।
ଯତ୍ରାଲଂକାର ବର୍ଗୋଽସୌ ସର୍ବୋଽପ୍ୟନ୍ତର୍ଭବିଷ୍ୟତି, (ବ. ଜୀ.-ପୃ-୬୯)



ଅଧ୍ୟାପକ, ଓଡ଼ିଆ ସାହିତ୍ୟ ବିଭାଗ,
ଖଲ୍ଲିକୋଟ କଲେଜ
ବ୍ରହ୍ମପୁର-୭୬୦୦୦୧



Digitized by PPRACHIN, SOA

# ।। କୋଟିବ୍ରହ୍ମାଣ୍ଡ ସୁନ୍ଦରୀର କଥା, କଥାନକ ଓ କଥନ ଚାତୁରୀ ।।

ଡ଼କ୍‌ଟର ଲକ୍ଷ୍ମୀଧର ଦାସ

●

କଥାବସ୍ତୁ କାବ୍ୟର ଗୁଣ, ଆତ୍ମା ଏବଂ ସୌନ୍ଦର୍ଯ୍ୟର ଆଧାର । ଉପେନ୍ଦ୍ରଙ୍କ ବଚନ ବୈଦଗ୍ଧ, ଭାଷାକାରଗରୀ, ରୂପପ୍ରାଣତା, ମନୋଜ୍ଞ କଳ୍ପନା ବିଳାସ, ପାଣ୍ଡିତ୍ୟ ତଥା ପ୍ରତଭାର ସମ୍ବାହକ ରୂପେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର କାବ୍ୟବିଶ୍ୱ ସମୀକ୍ଷକ-ମଣ୍ଡଳୀରେ ସ୍ୱୀକୃତ । ଅଥଚ କାବ୍ୟସ୍ଥ କଥାବସ୍ତୁର ଯଥାର୍ଥ ମୂଲ୍ୟାୟନ ଏଯାବତ୍ ହୋଇନଥିଲା ପରି ମନେହୁଏ । ଉକ୍ତ କାବ୍ୟ ଅନ୍ତର୍ଗତ କଥା, କଥାନକ ଓ କଥନ ଚାତୁରୀର ବିଚାର ପ୍ରସ୍ତୁତ ପ୍ରବନ୍ଧର ଲକ୍ଷ୍ୟ ।

କଥା, କଥାନକ ଓ କଥନ ଚାତୁରୀର ସ୍ୱରୂପ :—

ଆଦ୍ୟ କାଳର କାବ୍ୟତତ୍ତ୍ୱପ୍ରଣେତା କଥା ଏବଂ କଥାନକ ବା ପ୍ଲଟ ମଧ୍ୟରେ କୌଣସି ପାର୍ଥକ୍ୟ ନିର୍ଣ୍ଣୟ କରିନଥିବାବେଳେ, ଆଧୁନିକ କଥାତତ୍ତ୍ୱବିଦ୍ ଏହି ଦୁଇଟି ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ନିରୂପଣ କରିଥାନ୍ତି । କଥା ସମୟ କ୍ରମରେ ସଜ୍ଜିତ ଘଟଣାବଳୀକୁ ବୁଝାଇଲାବେଳେ କଥାନକ ଘଟଣା ସଂଘଟନର କାର୍ଯ୍ୟ-କାରଣ ସମ୍ପର୍କକୁ ବୁଝାଏ । (୧)

କଥାବସ୍ତୁର ନିର୍ବାଚନ, କାର୍ଯ୍ୟକାରଣ ଭିତ୍ତିକ କ୍ରମସଂସ୍ଥାପନ ଓ ଉପ-ସ୍ଥାପନ କୌଶଳ ଉପରେ କାବ୍ୟର ସାମଗ୍ରିକ ସୌନ୍ଦର୍ଯ୍ୟ ପରିସ୍ଫୁଟିତ ହୋଇଥାଏ । ଏକ ପତ୍ନୀବ୍ରତର ଉପାସକ ଭଞ୍ଜଙ୍କ ସମସ୍ତ କାବ୍ୟ ଗୋଟିଏ ଗୋଟିଏ ନାୟକ ଓ ନାୟିକାକୁ ନେଇ ପରିକଳ୍ପିତ ହୋଇଥିବାରୁ ଏଗୁଡ଼ିକର ପ୍ଲଟ ସରଳ ଓ

---

୧) E.M. Forster : Aspect of the Novel-penguine edn 1968 p-38.



Digitized by PPRACHIN, SOA

ସୁସଂହତ (organic) କବି ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ବାକ୍‌ବାହୁଲ୍ୟ ବା ଅଳଙ୍କରଣ ଉପରେ ମାତ୍ରାଧିକ ଗୁରୁତ୍ୱ ପ୍ରଦାନ କରିଥିବାରୁ ତାଙ୍କ ରଚିତ କାବ୍ୟ ଗୁଡ଼ିକର କଥାନକ ଆଳଙ୍କାରିକ ବା ଗ୍ରଥିକ ।

ପରମ୍ପରାର ପ୍ରଭାବ ଓ ନାଟକୀୟତା :—

ଭାରତୀୟ ପ୍ରେମାଖ୍ୟାନ ମୂଳକ କାବ୍ୟ ନାୟକ-ନାୟିକାଙ୍କ ଜନ୍ମ, ଯୌବନ ଲାଭ, ବିରହ, ମିଳନ ପ୍ରଭୃତି ସୋପାନ ଦେଇ ଗତିଶୀଳ । କବି ଉପେନ୍ଦ୍ର ସଂସ୍କୃତ, ପ୍ରାକୃତ, ପୂର୍ବବର୍ତ୍ତୀ ଓଡ଼ିଆ ସାହିତ୍ୟ ତଥା ଅଳଙ୍କାର ଶାସ୍ତ୍ର ପ୍ରଭାବରେ ସ୍ୱୀୟ ପ୍ରେମ କାବ୍ୟର ପରିକଳ୍ପନା କରିଯାଇଛନ୍ତି । କବିଙ୍କ ସମସ୍ତ କାଳ୍ପନିକ କାବ୍ୟରେ ଅଲୌକିକତା, ରୋମାନ୍‌ସଧର୍ମିତା, 'ପୁରାଣ ଗ୍ରାଇ' ଏବଂ ଲୋକଗଳ୍ପ ଶୈଳୀ ପରିଲକ୍ଷିତ । ପ୍ରାୟ ସମସ୍ତ ଅଳଙ୍କାରିକ ମହାକାବ୍ୟ ନାଟକୀୟ ପଞ୍ଚସନ୍ଧିଯୁକ୍ତ ହେବା ସମ୍ପର୍କରେ ଏକମତ । (୧) ଆଲୋଚ୍ୟ କାବ୍ୟରେ ଦ୍ୱନ୍ଦ୍ୱ, ସଂଘାତ ଓ ଉତ୍କଣ୍ଠା ସୃଷ୍ଟି ମଧ୍ୟରେ ନାଟକୀୟ ପଞ୍ଚସନ୍ଧି କ୍ରମିକ ବିଷୟବସ୍ତୁ ଅବତାରଣା କରାଯାଇଛି ।

କଥା ବା କାହାଣୀ:—

ଚମ୍ପାପୁର ରାଜକୁମାରୀ କୋଟିବ୍ରହ୍ମାଣ୍ଡସୁନ୍ଦରୀ ଓ ପୁଷ୍ପପୁର ରାଜକୁମାର ପୁଷ୍ପକେତୁଙ୍କ ନାମ ଓ ଗୁଣ ଶ୍ରବଣରେ ପରସ୍ପର ପ୍ରତି ଆକର୍ଷଣ, ଆକସ୍ମିକ ମିଳନ ଜନିତ ପ୍ରଣୟ ଓ ପରିଶେଷରେ ପରିଣୟ ଏହି କାବ୍ୟର କଥା ବସ୍ତୁ । କବି କାବ୍ୟର ପ୍ରାରମ୍ଭରେ ନାୟିକା ଜନ୍ମ ସମ୍ପର୍କୀୟ ଏକ ଉପାଖ୍ୟାନର ସଂଯୋଜନ କରିଛନ୍ତି । ବ୍ରହ୍ମା, ନାରଦ, ଅଦ୍‌ଭୂତ ପୁରୁଷ, ମାଙ୍ଗଳା, ଭାଟ, ଦୂତ, ମାଳୁଣୀ ପ୍ରଭୃତି ଦେବତା ଓ ମାନବଙ୍କ ସହାୟତାରେ ନାୟକ ଶରମୃଗପୁଚ୍ଛ ଛେଦନ କରି ବୀରତ୍ୱ ପ୍ରଦର୍ଶନ ପୂର୍ବକ ରାଜକନ୍ୟାର ପାଣିଗ୍ରହଣ କରନ୍ତି । ନାୟକ ନାୟିକାଙ୍କ ମଧୁଯାମିନୀ ମିଳନ ପରେ ପରେ କାବ୍ୟର ପରିସମାପ୍ତି ଘଟିଛି । ଆଳଙ୍କାରିକମାନଙ୍କ ନିର୍ଦ୍ଦେଶ ପ୍ରତି ସଚେତନ କବି ପ୍ରସଙ୍ଗ କ୍ରମେ ନଗର, ବନ, ଉପବନ, ସରୋବର, ସମାଜ ସେନା ନିବାସ, ସଙ୍ଗୀତ, ଶୃଙ୍ଗାର, ଋତୁଚର୍ଯ୍ୟାର ବର୍ଣ୍ଣନା କରିଛନ୍ତି ।

ବିଷୟବସ୍ତୁର କ୍ରମ ସଜ୍ଜୀକରଣ ପଦ୍ଧତି:—

ଉପେନ୍ଦ୍ରଙ୍କ ସମସ୍ତ କାଳ୍ପନିକ କାବ୍ୟସ୍ଥ କଥା ବସ୍ତୁକୁ ନାୟକ ନାୟିକାର ଜୀବନବୃତ୍ତ ଅନୁକ୍ରମରେ ସଜ୍ଜିତ କଲେ ଏହା ଦ୍ୱାଦଶ ସୋପାନ ବିଶିଷ୍ଟ ହୋଇଥାଏ;

୧) କ) ପୁରାଣଗ୍ରାଇ କଳ୍ପନା ମାଧୁରୀ, ଗୁରୁଚର ଲେଖା ହେମମଞ୍ଜରୀ । (ଶ. କା. ବ)
ଖ) କୋ: ବ୍ର. ସୁ-୭-୧୭

॥ ଶହେଉଣେଇଶ ॥

Digitized by PPRACHIN, SOA

ଯଥା—ପୂର୍ବଜନ୍ମ—ଜନ୍ମ—ଶୈଶବ ଓ କୈଶୋର—ଯୌବନ ପ୍ରାପ୍ତି—ଭାବୋଦୟ—ପୂର୍ବାନୁରାଗ—ପ୍ରଯତ୍ନ—ମିଳନ—ବିଳାସ—ବିଚ୍ଛେଦ ଓ ପୁନର୍ମିଳନ । ପ୍ରତିଟି ସୋପାନ ଅନ୍ୟଟିର ଅନୁପୂରକ । ଉପର୍ଯ୍ୟୁକ୍ତ ଆଧାରରେ ଭଞ୍ଜୀୟ କାଳନିକ କାବ୍ୟ ସମୂହର କଥା ଓ କଥାନକ ସହିତ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ତୁଳନାତ୍ମକ ବିଚାର କରାଯାଇ ବୈଶିଷ୍ଟ୍ୟ ନିରୂପଣ କରାଯାଉଛି ।

(କ) ପୂର୍ବଜନ୍ମ ବା ପ୍ରାଗ୍ଭବଃ—

ନାୟକ ନାୟିକାଙ୍କ ପୂର୍ବଜନ୍ମ ବର୍ଣ୍ଣନା ଓଡ଼ିଆ କାବ୍ୟ ଜଗତରେ ଏକ ପୌରାଣିକ ଧାରା, ଜନ୍ମାନ୍ତର ବିଶ୍ୱାସୀ ଭାରତୀୟ କବିର ଏହା ଏକ ବିଚିତ୍ର କଳ୍ପନା । ଉପେନ୍ଦ୍ରଙ୍କ ପୂର୍ବରୁ ନରସିଂହ ସେଣଙ୍କ 'ପରିମଳା', ବିଷ୍ଣୁ ଦାସଙ୍କ 'ଇଚ୍ଛାବତୀ', ଧନଞ୍ଜୟ ଭଞ୍ଜଙ୍କ ଅନଙ୍ଗରେଖା ଓ ରତ୍ନମଞ୍ଜରୀ ପ୍ରଭୃତି କାବ୍ୟରେ ଏହି ଧାରାର ପ୍ରଚଳନ ଥିଲା । କବି ଉପେନ୍ଦ୍ର ଏହି ଧାରାରେ ପରିବର୍ତ୍ତନ ଆଣିଛନ୍ତି । ସେ କେବଳ 'ରସିକ ହାରାବଳୀ' 'ଲାବଣ୍ୟବତୀ' ଓ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ନାୟକ-ନାୟିକାଙ୍କ ପୂର୍ବଜନ୍ମ ବିବରଣ ବା ପ୍ରାକ୍-ଆଭାସ ପ୍ରଦାନ କରିଯାଇଛନ୍ତି ।

ଉପେନ୍ଦ୍ରଙ୍କ ପୂର୍ବବର୍ତ୍ତୀ ରଚନାରେ ନାୟକ ନାୟିକା ବା କେବଳ ନାୟିକା ପୂର୍ବଜନ୍ମରେ ଗନ୍ଧର୍ବ ଓ ଅପ୍ସରା । ପରିମଳା ଓ ଇଚ୍ଛାବତୀ ମର୍ତ୍ତ୍ୟରେ ଜନ୍ମଗ୍ରହଣ କରି, ପୂର୍ବଜନ୍ମର ଗନ୍ଧର୍ବ ପ୍ରଣୟୀ ସହିତ ପାପପ୍ରଣୟ ଲିପ୍ତ ରହିଛନ୍ତି । ପକ୍ଷାନ୍ତରେ ଅଭିଶପ୍ତା ନାୟିକା ଅନଙ୍ଗରେଖା ଗନ୍ଧର୍ବ ପୁଷ୍ପଦନ୍ତର ପ୍ରେମ ନିବେଦନକୁ ଉପେକ୍ଷା କରିଛି । ପିତାମହଙ୍କ ଆଦର୍ଶରେ ଦୀକ୍ଷିତ ଉପେନ୍ଦ୍ର ଏକ୍ଷେତ୍ରରେ ପ୍ରଚଳିତ ପଦ୍ଧତିକୁ 'ରସିକ ହାରାବଳୀ'ରେ ପରିହାର କରିଛନ୍ତି । ସେ ଏହି ଗ୍ରନ୍ଥରେ ନାୟିକାର ପିତାମାତାଙ୍କୁ ଶାପଗ୍ରସ୍ତ ଗନ୍ଧର୍ବ-ଅପ୍ସରା ଭାବରେ ଉପସ୍ଥାପନ କରି ନାୟିକା ଠାରେ ପରୋକ୍ଷରେ ଅଲୌକିକତାର ଆରୋପ କରିଛନ୍ତି । 'ଲାବଣ୍ୟବତୀ'ରେ ନାୟକନାୟିକାଙ୍କ ପୂର୍ବଜନ୍ମ ବିବରଣ ପ୍ରଦତ୍ତ । କବି ଏଠାରେ 'ରୁଦ୍ରସୁଧାନିଧି' ବା ପଦ୍ମପୁରାଣୋକ୍ତ ଗଣେଶ ଜନ୍ମ ଆଖ୍ୟାନରୁ କିଛି ପ୍ରେରଣା ପାଇ ପାରିଥାନ୍ତି । ପାର୍ବତୀଙ୍କ ମାନସକନ୍ୟା ରୂପେ ବାଞ୍ଛାବତୀର ଉପସ୍ଥାପନା ମଧ୍ୟରେ କାବ୍ୟର ପ୍ରାରମ୍ଭାଂଶକୁ ନାଟକୀୟ ଓ ଅଶ୍ରୂଳ କରିପାରିଛନ୍ତି । 'ରସିକ ହାରାବଳୀ' ପରି କୋଟି ବ୍ରହ୍ମାଣ୍ଡସୁନ୍ଦରୀର ପ୍ରାରମ୍ଭ ନାୟିକାର ଅଲୌକିକ ରୂପବିଭାର ଦ୍ୟୋତକ ହୋଇଛି । ସେ ଗନ୍ଧର୍ବପୁତ୍ରୀ, ବ୍ରହ୍ମାବିଳାସିନୀ ରତିମର୍ଦ୍ଦାଗର୍ଭ ସମ୍ଭୂତା, ସେ 'ନାହିଁ, ନଥିଲା, ନୋହିବ' ସୁନ୍ଦରୀ ହେବ ଏବଂ ତାର ନାମ କୋଟି ବ୍ରହ୍ମାଣ୍ଡସୁନ୍ଦରୀ ରଖିବାପାଇଁ ବ୍ରହ୍ମା ଆଶିଷଛଳରେ ନିର୍ଦ୍ଦେଶ ଦେଇଯାଇଛନ୍ତି ।

॥ ଶବ୍ଦକୋଷରେ ।

Digitized by PPRACHIN, SOA

ନାୟିକା ଜନ୍ମ ପୂର୍ବରୁ ପ୍ରଦତ୍ତ ଏହି ବିବରଣୀର 'ରସିକହାରାବଳୀ' ଓ 'ଲାବଣ୍ୟବତୀ'ର ବୈପରୀତ୍ୟରେ ପରବର୍ତ୍ତୀ ଘଟଣା ସହିତ ସଂଯୋଗ ସ୍ଥାପନ କରାଯାଇ ପାରିନ୍ଥି । ଏହି ଉପାଖ୍ୟାନରେ ବିଶ୍ୱାନନ୍ଦକ କାବ୍ୟର ଘଟଣା ପ୍ରବାହ ସହିତ ପରିଣତି ପର୍ଯ୍ୟନ୍ତ ସଂଯୁକ୍ତ ହେବା ଫଳରେ ଅନ୍ୟତମ ମୁଖ୍ୟ ଚରିତ୍ର ମର୍ଯ୍ୟାଦା ଲଭିଛନ୍ତି । ବ୍ରହ୍ମା ସ୍ୱବାହନ କନ୍ୟା କାଦମ୍ବିନୀଙ୍କୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସହଚରୀ ରୂପେ ପ୍ରଦାନ କରିଛନ୍ତି ।

(ଖ) ଜନ୍ମ, ଶୈଶବ, କୈଶୋର ଓ ଯୌବନ ପ୍ରାପ୍ତିର ବର୍ଣ୍ଣନା :—

ପୌରାଣିକ ଗନ୍ଧମାର୍ଦ୍ଧନ ପର୍ବତର ମନୋଜ୍ଞ ପ୍ରାକୃତିକ ପରିବେଶ ମଧ୍ୟରେ ଅଲୌକିକ ସୌନ୍ଦର୍ଯ୍ୟର ଅଧିକାରିଣୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଜନ୍ମ । ସଦ୍ୟଜାତ କନ୍ୟା ସହିତ ରତିଦେବୀ ରତିଏ ମାତ୍ର ସମାନ ହୋଇପାରି ନାହାନ୍ତି । ରତ୍ନପଲଙ୍କ ଶୟନା ନବଜାତ କନ୍ୟାକୁ ରାଜ ଅନୁଚର ଅପଲକ ନୟନରେ ଚାହିଁ ରହିଛନ୍ତି । ଉପେନ୍ଦ୍ରଙ୍କ ଅନ୍ୟ ଗୁରୁକାବ୍ୟ ମାନଙ୍କରେ ନାୟିକା-ଜାତକର୍ମର ବିଶଦ ବର୍ଣ୍ଣନା ହେଉଥିବାବେଳେ ନିସର୍ଗ-ସୁନ୍ଦରୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ଜନ୍ମୋତ୍ସବ ବର୍ଣ୍ଣନା କରାଯାଇ ନାହିଁ । ଜାତ ପୂର୍ବରୁ ନାମକରଣ ସମ୍ପାଦିତ ହୋଇ ପୂର୍ବରୁ ସୂଚିତ ।

ଉପେନ୍ଦ୍ରଙ୍କ ଲଘୁ କାବ୍ୟମାନଙ୍କରେ ନାୟିକାର ଶୈଶବ ଓ କୈଶୋରର ବିସ୍ତୃତ ବର୍ଣ୍ଣନା ପରିଲକ୍ଷିତ ହୁଏନାହିଁ । ଲାବଣ୍ୟବତୀ ଅନୁରୂପ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଶୈଶବ ଓ କୈଶୋର ବର୍ଣ୍ଣନା ପରିବ୍ୟାପ୍ତ । ଶୈଶବରୁ କୈଶୋରରେ ପଦାର୍ପଣ ବ୍ୟଞ୍ଜନା ମଧ୍ୟରେ ଉପସ୍ଥାପିତ ।

( ୩ଚ୍ଛା/୩ରୁ ୫ ପ)

ନାୟିକାର ଯୌବନ ପ୍ରାପ୍ତି ଭଞ୍ଜୀୟ କାବ୍ୟର ଏକ ବଶିଷ୍ଟ ବିଭବ । ଏହିଠାରୁ ହିଁ କାବ୍ୟ ବିଷୟବସ୍ତୁର ଆବେଦନଗତ ଆରମ୍ଭ ହୋଇଥାଏ । (ପ୍ରେମ ସୁଧାନିଧି ପ୍ରତି ଏହା ପ୍ରଯୋଜ୍ୟ ନୁହେଁ) 'ଲାବଣ୍ୟବତୀ' ପରି 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ମଦନ ନବ ବିଧାତା ହୋଇ ନବଯୌବନ ସୃଷ୍ଟି କରିଛି । ଉପମାନ-ମାନେ ଅପମାନ ଭୟରେ ଅଧୀର ହୋଇପଡ଼ିଛନ୍ତି । 'ଲାବଣ୍ୟବତୀ'ରେ ନବ-ପୁଷ୍ପବତୀର ଚିହ୍ନନିଷ୍ଠି ଛନ୍ଦ ପ୍ରଦାନ କରାଯାଇଥିଲାବେଳେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ କବି ସଂଯତ । ସେ ସଂଯମ ଓ ଶାଳୀନତା ଅବଲମ୍ବନ ପୂର୍ବକ ଋତୁମତୀ ନାରୀର ଗୁହ୍ୟାଙ୍ଗ ବର୍ଣ୍ଣନା କରିନାହାନ୍ତି । ଏ ଛନ୍ଦ ସୂଚନାଧର୍ମୀ ଓ ରସବ୍ୟଞ୍ଜକ :—

ଭଞ୍ଜକବି ସୀତା, ପ୍ରେମସୁଧାନିଧି, ରସ ଲେଖା, ଲାବଣ୍ୟବତୀ ଓ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ପ୍ରଭୃତିଙ୍କ ରୂପ ଶୋଭାର ନଖଶିଖ ବର୍ଣ୍ଣନା କରିଯାଇଛନ୍ତି । ଅଥଚ

॥ ଚିତ୍ରେ ଏକୋଇଶି ॥

Digitized by PPRACHIN, SOA

ଏହି ବର୍ଣ୍ଣନା ପାଇଁ କାବ୍ୟଭେଦରେ ଭିନ୍ନ କୌଶଳ ଅବଲମ୍ବନ କରିଛନ୍ତି । ସେ ସୀତା, ପ୍ରେମସୁଧାନିଧି ଓ ରସଲେଖା ସୌନ୍ଦର୍ଯ୍ୟର ଅଂଶବିଶେଷ (ମୁଖ,ନେତ୍ର,ସ୍ତନ) ବର୍ଣ୍ଣନା ପାଇଁ ଗୋଟିଏ ଗୋଟିଏ ଛାନ୍ଦର ଅଂଶ ନେଇଥିଲାବେଳେ, ଲାବଣ୍ୟବତୀର ବାଲ୍ୟ, କୈଶୋର ଓ ଯୌବନ ବର୍ଣ୍ଣନା ପାଇଁ ଏକାଦିକ୍ରମେ ତିନୋଟି ଛାନ୍ଦ (ଦ୍ୱିତୀୟରୁ ଚତୁର୍ଥ) ସଂଯୋଜନା କରିଛନ୍ତି । ଏପରିକି ପରବର୍ତ୍ତୀ ଛାନ୍ଦ ଦୁଇଟି (ପଞ୍ଚମ ଓ ଷଷ୍ଠ)ରେ ନାୟିକାର ଯୌବନ ସୁଲଭ କ୍ରୀଡ଼ାପାଇଁ ବ୍ୟୟିତ ହୋଇଛି । କିନ୍ତୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଗୋଟିଏ ମାତ୍ର ଛାନ୍ଦରେ (ତୃତୀୟ) ନାୟିକାର ବାଲ୍ୟ, ପୌଗଣ୍ଡ ଓ ଯୌବନ ଚିତ୍ର ଅଭିବ୍ୟକ୍ତ । ପରବର୍ତ୍ତୀ ପର୍ଯ୍ୟାୟରେ ଭିନ୍ନ ଭିନ୍ନ ପରିବେଶ ଓ ପାତ୍ରମୁଖରେ ନାୟିକା ସୌନ୍ଦର୍ଯ୍ୟର ସବିଶେଷ ବିଶ୍ଳେଷଣ କରାଯାଇଛି ।

ଯୁଗୀୟ ଆଦର୍ଶରେ ଭଞ୍ଜଙ୍କ ସମସ୍ତ କାଳ୍ପନିକ କାବ୍ୟ ନାୟିକା-ପ୍ରଧାନ । (୩) ଅନ୍ୟ କାବ୍ୟଗୁଡ଼ିକର ନାୟକମାନେ ପୁଷ୍ପକେତୁର ବହୁ ବିଳମ୍ବରେ କଥାମଞ୍ଚରେ ଆବିର୍ଭାବ । ତାହାର ଜନ୍ମରେ ଅଲୌକିକତା ନାହିଁକି ତାହାର ବାଲ୍ୟ କୈଶୋରର ବର୍ଣ୍ଣନା ନାହିଁ । କବି ଏ କ୍ଷେତ୍ରରେ ଅଳଙ୍କାର-ଶାସ୍ତ୍ର ନିର୍ଦ୍ଦେଶିତ କ୍ରମ ଓ ଆଦର୍ଶରୂପେ ଗ୍ରହଣ କରିଥିବା 'ନୈଷଧ'ର ଧାରାକୁ ଉପେକ୍ଷା କରିଛନ୍ତି । (୪) ଅଥଚ ଅଳଙ୍କାର ଶାସ୍ତ୍ର ଅନୁସାରେ ଭଞ୍ଜୀୟ ନାୟକ ସର୍ବତ୍ର ଉଚ୍ଚକୁଳ ସମ୍ଭୂତ ଧୀରୋଦାତ୍ତ । ରାଜକୁମାର ପୁରୁଷ ଶ୍ରେଷ୍ଠ । ସେ ସୌନ୍ଦର୍ଯ୍ୟରେ କାମଦେବଙ୍କୁ ଅତିକ୍ରମ କରିଛନ୍ତି । ସେ ନ୍ୟାୟ, ବ୍ୟାକରଣ, ମୀମାଂସା, ବେଦ ବେଦାନ୍ତ ପ୍ରଭୃତି ଶାସ୍ତ୍ରରେ ନିପୁଣ, ମହାଦାନୀ, ଧାର୍ମିକ, ବୀର ଓ ସଂଗୀତ ଶାସ୍ତ୍ରବିଦ୍ । ତାଙ୍କର କୀର୍ତ୍ତିସୁଧା ସମସ୍ତ ବସୁଧାକୁ ଧବଳ କରିଦେଇଛି । (୪ଛା/୨୫ରୁ ୩୦ ପ)

(ଗ) ଭାବୋଦୟ :—

ଯୌବନ ପ୍ରାପ୍ତିପରେ ନାୟକ ନାୟିକାର ଚିତ୍ତରଙ୍ଗ ଚିତ୍ତବୃତ୍ତିରେ ଯେଉଁ ବିକୃତି ଦେଖାଯାଏ ତାହାହିଁ ଭାବ । ବସ୍ତୁତଃ ନାୟକ ନାୟିକା

---

(୩) ରୁଦ୍ରଟ ମହା କାବ୍ୟରେ ନାୟକର ବାସସ୍ଥାନ ନଗର ବର୍ଣ୍ଣନା ପ୍ରାରମ୍ଭରେ ହେବା ଉଚିତ ବୋଲି ଦର୍ଶାଇଛନ୍ତି । ଶ୍ରୀହର୍ଷ ନଳଙ୍କ ରୂପ, ଗୁଣ,ଐଶ୍ୱର୍ଯ୍ୟାଦିର ଚିତ୍ର କାବ୍ୟାରମ୍ଭରେ ପ୍ରଦାନ କରିଛନ୍ତି ।

(୪) କାବ୍ୟରେ ନାୟିକା ଯିନା ପ୍ରଧାନ । ଏଣୁ ତା ଘେନ ସବୁର ସମାନ ॥
(ଲୋକନାଥ ବିଦ୍ୟାଧର)

॥ ଶବ୍ଦେ ବାଇଶ ॥

Digitized by PPRACHIN, SOA

ହୃଦସ୍ଥ ଶୃଙ୍ଗାର ଚେତନାର ସ୍ଫୁର୍ତ୍ତି ତ୍ୟାଗ ପୂର୍ବକ ଜାଗୃତିକ ଭାବବାଦସ୍ଥ କୁହାଯାଏ । (୫) 'ଲାବଣ୍ୟବତୀ' ଓ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଭାବୋଦୟର ମନୋଗ୍ରାହୀ ଚିତ୍ର ସନ୍ନିବେଶିତ । ଭଞ୍ଜଙ୍କ ଦୃଷ୍ଟିରେ ବାସନ୍ତୀଶୋଭା ପାଠକପାଠୀଙ୍କ ସୁପ୍ତକାମ ବାସନାର ଉଦ୍ଦୀପକ । ଉପବନ ବିହାର କାଳରେ ସଖା ବା ସଖୀଙ୍କ ଶୃଙ୍ଗାରାଶ୍ରିତ ଶ୍ଳେଷ, ବକ୍ରୋକ୍ତି ନବକୁମାର କୁମାରୀଙ୍କ ହୃଦୟରେ ଅପୂର୍ବ ପୁଲକ ସୃଷ୍ଟି କରେ । ଉଭୟ କାବ୍ୟରେ ମଧୁମାସ ଓ ଉପବନ ଭାବୋଦୟର କାଳ ଓ ସ୍ଥାନ ରୂପେ ପରିକଳ୍ପିତ ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଷଷ୍ଠ ଛାନ୍ଦରୁ ନବମ ଛାନ୍ଦ ମଧ୍ୟରେ ଭାବୋଦୟର ଅଭିବ୍ୟକ୍ତି । 'ଅଥ ଋତୁମସ୍ତ ବସନ୍ତ ସମସ୍ତ' ପ୍ରବେଶ ହେବାରୁ ଜଳ, ସ୍ଥଳ ଓ ଆକାଶ ଅନଙ୍ଗର ଲୀଳାଙ୍ଗନରେ ପରିଣତ ହୋଇଛି । ସ୍ଥାବର ଜଙ୍ଗମ, ସୂର୍ଯ୍ୟ,ଚନ୍ଦ୍ର, ତାରା ବ୍ରହ୍ମା, ଇନ୍ଦ୍ର, ଶିବ, କୁବେର ପ୍ରଭୃତି ବସନ୍ତୋତ୍ସବ ପାଳନରେ ଉନ୍ମତ୍ତ । ଏହି କାଳରେ ଯୁବକ ପୁଷ୍ପକେତୁ ଦୁଇ ମିତ (ବିଦ୍ୟାନିଧି ଓ ଯଶୋବନ୍ତ), ଦୁଇ କବି (ତର୍କବିଦ ଓ ବାଗୀଶ୍ୱର ତଥା ଅଦ୍ଭୁତ ପୁରୁଷ (ଚିତ୍ରସ୍ପର୍ଶ )ଙ୍କ ସହିତ ଉପବନ ବିହାର କରି ବସନ୍ତ ଶୋଭା ଉପଭୋଗ କରନ୍ତି । ସମସ୍ତେ ମୁଗ୍ଧ ବିଭୋର ହୋଇ ଋତୁରାଜ ବସନ୍ତର ପ୍ରଶଂସାରତ । ଠିକ୍ ଏହି ସମୟରେ ଜଣେ କବି ନାଟକୀୟ ଭଙ୍ଗୀରେ କହନ୍ତି— ଋତୁ ମଧ୍ୟରେ ବସନ୍ତ, ନଦୀରେ ଗଙ୍ଗା ପୁରୁଷଙ୍କ ଭିତରେ କନ୍ଦର୍ପ ଓ ସ୍ତ୍ରୀମାନଙ୍କ ମଧ୍ୟରେ ଐରାବତ ପରି ଚମ୍ପାପୁର ରାଜକୁମାରୀ "ମତ୍ତ-କାଶିନୀଙ୍କ ସୀମନ୍ତ ମଣିଭୂଷା" ରୂପେ ବନ୍ଦନୀୟା । (୬ଛା/୧୯ ପ)

କବି ଦ୍ୱୟ ରାଜକେମାର ଅଦ୍ଭୁତପୂର୍ବ ଶୋଭା ବର୍ଣ୍ଣନା କରିବାରୁ ମନ୍ତ୍ରୀପୁତ୍ର ଯଶୋବନ୍ତ ପଚାରିଲେ— "ଏ ସୁକାନ୍ତିର ତୁଳ୍ୟବର କାହିଁ ?" ଏହାର ଉତ୍ତରରେ କବିମାନେ କହନ୍ତି— ସୁନ୍ଦରୀର ଉପଯୁକ୍ତ ବର ଏ ସଂସାରରେ ଦୁର୍ଲଭ । ଏକଥା ଶୁଣି ରାଜକୁମାର ହୋଇଛି ଉତ୍କଣ୍ଠିତ, ରାଜକୁମାରର ଭାବାବେଶକୁ ଲକ୍ଷ୍ୟ କରି ମନ୍ତ୍ରୀପୁତ୍ର କବିମାନଙ୍କୁ ପଚାରିଛନ୍ତି— ଯାହା କହିଲ, 'ସେସବୁ ସତ୍ୟ ନା କବି ଚାତୁରୀ ?' ସେ ଦୁହେଁ ମିଳିତ କଣ୍ଠରେ ତତ୍କ୍ଷଣାତ୍ ଉତ୍ତର ଦେଇଛନ୍ତି— 'ମିଥ୍ୟା ପ୍ରକାର ଚମତ୍କାର ଯେତେକ ତା ଯେନ ସତ୍ୟକୁ ଆସିଲେ ।'' (୬ଷ୍ଠ ଛା/୨୩ପ) କବି ଦୁହେଁ କୁମାରୀ ଶୋଭାର ନଖଶିଖ ବର୍ଣ୍ଣନା କରି ସିଦ୍ଧାନ୍ତରେ ପହଞ୍ଚିଛନ୍ତି— 'ସାର ଭାଗ କଲା ନୃପ କେମାକୁ । ଅସାର ଭାଗ କଲା ଉପମାକୁ ॥' ସେମାନଙ୍କ

---

(୫) ନିର୍ବିକାରାତ୍ମକେ ଚିତ୍ତେ ଭାବ ପ୍ରଥମ ବିକ୍ରିୟା । (ସା.ଦ. ୩/୧୩୨)



Digitized by PPRACHIN, SOA

ବର୍ଣ୍ଣନାରେ ତଲ୍ଲୀନ କୁମାର ରାଜଜେମାର ସ୍ପର୍ଶ ସୁଖ ଲାଭ କଲାପରି ମନେକରନ୍ତି କବିମାନେ ତାହାରି ପୁରସ୍କୃତ ହୋଇଛନ୍ତି । (୮ ଗ୍ରୁ/୧ପ)

ରାଜକୁମାରର ଶାନ୍ତ ଚିତ୍ତ ସମୁଦ୍ରରେ ସୃଷ୍ଟି ହୋଇଛି ଅଶାନ୍ତ ଝଡ଼ । ଉଦ୍‌ବେଳିତ ମାନସରାଜ୍ୟରେ ଶତ ପ୍ରଶ୍ନବାଚୀ । 'ସତେ ଏପରି ସୁନ୍ଦରୀ ଅଛି?'··· ବିଧାତାଙ୍କ ବିଧାନରେ କିଛି ବିଚିତ୍ର ନୁହେଁ । ସେ କହୁଛି— 'ଏ ନିଶ୍ଚୟ କବି ଚାତୁରୀ' । ଏକଥା ଶୁଣି ଅଦ୍‌ଭୁତ ପୁରୁଷ କହିଲେ, ରାଜକନ୍ୟା ବାସ୍ତବରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ — ସୁମନା କାମିନୀ ଗର୍ବ ଯୁମନା । କବି ବାଗୀଶ୍ୱର ଏ ପ୍ରସଙ୍ଗରେ ପୁଣି କହୁଛି— କବି କଳ୍ପନାରେ ସୁନ୍ଦରୀର ଶୋଭା ଅନଭିବ୍ୟକ୍ତ (ନବୀନାଠାରେ ଏହି ବିନାଭକ୍ତ) । (୮ମଗ୍ରୁ/ ୧୩-୧୪ପ)

ପରେ ଘଟକ କୁମାରର ମନକଥା ଜାଣି କହୁଛି— ଏହି କନ୍ୟାକୁ ପତ୍ନୀ-ରୂପେ ଲାଭ କରିବା ଦୁର୍ଲ୍ଲଭ, କିନ୍ତୁ 'ପ୍ରଯତ୍ନ ଦର୍ଶନ ସୁଲଭ ।' ଶେଷରେ ଆତୁର କୁମାର କହୁଛି, "କି ଉପାୟରେ ଏହି ସୁନ୍ଦରୀକୁ ସାକ୍ଷାତ କରି ବାକ୍ୟାଲାପ କରି-ପାରିବା ?" 'ଏହା ସମ୍ଭବ' ବୋଲି ମନ୍ତ୍ରୀ ଆଶ୍ୱାସନା ଦେଇଛନ୍ତି । ପୁଣି ପୋଟା ଉପସ୍ଥିତ ହୋଇ କହୁଛି— ମୁଁ ରାଜଜେମାଙ୍କୁ ଦେଖାଇଦେବି କିନ୍ତୁ ତାର କୃପା ଦୃଷ୍ଟି ଆକର୍ଷଣ ତୁମ ଉଦ୍ୟମ ଉପରେ ନିର୍ଭର କରେ । ପରଚ୍ଛେଦରେ ମନ୍ତ୍ରୀ ବା ଚିତ୍ରପୁଂସ କୁମାରକୁ ମନ୍ତ୍ର ବଳରେ କୁମାରୀର କେଳି ଉପବନକୁ ନେଇଯିବାକୁ ପ୍ରତିଶ୍ରୁତି ଦେଇଛନ୍ତି ।

ଭିନ୍ନ ତଥା ଦ୍ୱାଦ୍ୟଶୀଠରେ ନାସ୍ତିକାର ଘଟବାଦସ୍ଥ-ଚନ୍ଦ୍ର ପରିବେଷିତ । ଅଶୋକାଷ୍ଟମୀ ଦିନ ରାଜଜେମା ସହଚରୀମାନଙ୍କୁ ପଶା ଖେଳିବାକୁ ପ୍ରସ୍ତାବ ଦେଇଛି । ଏହା ପଶାଖେଳର ଉପଯୁକ୍ତ ସମୟ ନୁହେଁ ବୋଲି କହି ସଖୀମାନେ ପରିହାସରେ ଲିପ୍ତ ହୋଇଛନ୍ତି । ପରେ ରାସଲୀଳା ଦର୍ଶନ ବ୍ୟାଜରେ ରାଜନନ୍ଦିନୀକୁ ଉପବନକୁ ନେଇଯାଇଛନ୍ତି । ସେମାନେ ସେଠାରୁ ମାଙ୍ଗଲ୍ୟାଙ୍କ ଆଶ୍ରମ ଉପବନକୁ ଯାଇଛନ୍ତି । ଜେମାର ଭକ୍ତିରେ ପ୍ରୀତ ମାଙ୍ଗଲ୍ୟା ଆଶୀର୍ବାଦ କରିଛନ୍ତି— 'ମଦନ ଗର୍ବଗଞ୍ଜନକାରୀ ପୁରୁଷର ଶୋଭାଙ୍ଗୀ ତଥା ସୌଭାଗ୍ୟବତୀ ହୁଅ । (୧୦ଗ୍ରୁ/୨୧ପ) ସନ୍ନ୍ୟାସିନୀଙ୍କ ଶୁଭାଶିଷ ଶୁଣି କୌଣସି ସଖୀ ପଚାରିଛି— "ସେ ଦେବତା ନା' ମାନବ ?' ଉତ୍ତର ଛଳରେ ମାଙ୍ଗଲ୍ୟା କହିଛନ୍ତି— କୁମାରୀର ଯୋଗ୍ୟବର ଏଇ ମର୍ତ୍ତ୍ୟରେ ଅଛି । ସନ୍ନିକଟରେ ଥିବା ଅବଧୂତ କହିଲେ— ସେ ସୁଦର୍ଶନ ପୁରୁଷ ହେଉଛି ପାଟଳିପୁତ୍ର ରାଜକୁମାର ପୁଷ୍ପକେତୁ । ତାର ନାମ ଅନୁଯାୟୀ କର୍ମ ।

॥ ୫. ସ୍ନେହଚବଣ ॥

Digitized by PPRACHIN, SOA

ପୁଷ୍କର ତୀର୍ଥରେ ସେହି ଅନୁପମ ଯୁବକର ବ୍ୟବହାର ସମସ୍ତଙ୍କୁ ମୁଗ୍‌ଧ କରିଥିଲା । ପୁଣି ରାଜକେମା ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ ପୁଷ୍ଟିକେତୁ ସହିତ କୁମାରୀର ମିଳନ ହେବ ମଣିକାଞ୍ଚନ ସଂଯୋଗ । ଅବଧୂତଙ୍କ ବଚନ ଶୁଣି କୁମାରୀର ଯେଉଁ ଭାବାନ୍ତର ସୃଷ୍ଟି ହୋଇଛି ତାର ଲିପିଚିତ୍ର ପ୍ରଭାବଶାଳୀ ।

(ଗ) ପୂର୍ବରାଗ :—

ନାୟକ ନାୟିକାଙ୍କ ବାସ୍ତବ ମିଳନ ପୂର୍ବରୁ ସେମାନଙ୍କ ହୃଦୟରେ ଯେଉଁ ଅନୁରାଗର ସଞ୍ଚାର ହୋଇଥାଏ, ତାହାର ଆଳଙ୍କାରିକ ଅଭିଧା ହେଉଛି ପୂର୍ବରାଗ । ଉପେନ୍ଦ୍ରଙ୍କ ଗୁରୁଲଘୁ ପ୍ରତିଟି କାବ୍ୟରେ ପୂର୍ବାନୁରାଗ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ସେ ଅଳଙ୍କାର ଶାସ୍ତ୍ରାନୁସରଣରେ ଦର୍ଶନ,ଶ୍ରବଣ ସ୍ୱପ୍ନକୁ ପୂର୍ବରାଗ ସୃଷ୍ଟିର ମାଧ୍ୟମ ରୂପେ ଗ୍ରହଣ କରିଛନ୍ତି । (୬) ଆଲୋଚ୍ୟ କାବ୍ୟରେ ନାୟକ ନାୟିକା କବି, ଭାଟ, ଅଭିଜ୍ଞ ପୁରୁଷ, ସନ୍ନ୍ୟାସୀ ସନ୍ନ୍ୟାସିନୀଙ୍କ ମୁଖରୁ ମନର ମଣିଷର ରୂପ-ଗୁଣ ସମ୍ବନ୍ଧରେ ସୂଚନା ପାଇଁ ପରସ୍ପର ପରସ୍ପର ନିକଟରେ ଆତ୍ମସମର୍ପଣ କରିଛନ୍ତି । କବି ଲେଖନୀ ଏହି ଦର୍ଶନାତୁର କୁମାର କୁମାରୀଙ୍କ ଉତ୍କଣ୍ଠାର ମନୋଜ୍ଞ ଆଲେଖ୍ୟ ରଚନା କରିଯାଇଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଭାବାବେଗକୁ ନିଆଯାଉ—

ଆଶା-ନିରାଶାର ଦୋଳାରେ ଦୋଳାୟମାନ ରାଜକେମା ଉନ୍ନିଦ୍ର ରାତ୍ରି ଯାପନ କରିଛି । ପଶ୍ଚିମରେ ଆଖି ସାରି ଫେରି ଅରୁଣୋଦୟକୁ ଲକ୍ଷ୍ୟ କରିଛି । ପ୍ରେମବାତୁଳୀ ସନ୍ଦେହ ଶଙ୍କା ମଧ୍ୟରେ ମାନସିକ ଭାରସାମ୍ୟ ହରାଇ ରକ୍ତରଞ୍ଜିତ ଆକାଶକୁ ଚିତାବୋଲି ଭାବିନେଇଛି । ମନରେ ତାର ନୈରାଶ୍ୟ । ସେ ଧରିନେଇଛି ମନର ମଣିଷର ଦର୍ଶନ ତା ପାଇଁ ଦୁର୍ଲ୍ଲଭ । ଅତଏବ ମୃତ୍ୟୁ ଅବଶ୍ୟମ୍ଭାବୀ । ସେ ଭାବିଛି ବୋଧହୁଏ ତାକୁ ଦଗ୍‌ଧୀଭୂତ କରିବା ପାଇଁ ଆକାଶରେ ଅଗ୍ନି ପ୍ରଜ୍ଜ୍ୱଳିତ । ରାଜକେମାର ଏହି ସନ୍ଦେହ ସଖୀ କାଦମ୍ବିନୀ ଉତ୍ତର ମାଧ୍ୟମରେ ଦୂର ହୋଇଛି । ସଖୀ କହିଛି ଏହା ଅଗ୍ନି ନୁହେଁ । ଅନୁରାଗିଣୀ ପଦ୍ମିନୀର ଅଭିଳାଷ ପୂରଣ ପାଇଁ ପ୍ରଣୟଲୁବ୍ଧ ରବିଙ୍କ ଅଭିସାର । କବି ଏକନିଷ୍ଠ ଅନୁରାଗର ଫଳଶ୍ରୁତିକୁ ବ୍ୟଞ୍ଜନାରେ ପ୍ରକାଶ କରିଛନ୍ତି ।

---

(୬) ଦର୍ଶନଞ୍ଚ ଭବେତ୍ ସ୍ୱପ୍ନେ ଚିତ୍ରାଦାବୁଚ୍ଛବେପିବା
ଶ୍ରବଣଞ୍ଚ ଭବେତତ୍ର ଦୂତ, ବନ୍ଦୀ, ସଖୀ ମୁଖାତ୍ (ସା.ଦ.)

॥ ଶିହ୍ନୋପଠାଣ୍ଣ ॥

Digitized by PPRACHIN, SOA

ଏକ ଅଲୌକିକ ପରିବେଶରେ ସହସା ରାଜକୁମାର ଓ ରାଜକୁମାରୀଙ୍କ ପ୍ରଥମ ସାକ୍ଷାତ ସଂଘଟିତ । ମାଙ୍ଗଳାଙ୍କ ଉପବନ ଅଟ୍ଟାଳିକା ମଧ୍ୟପୀଠାସନରେ ସଖୀ ପରିବେଷ୍ଟିତା ରାଜଜେମା ଦଣ୍ଡାୟମାନ । ଅଦ୍ଭୁତ ପୁରୁଷଙ୍କ ମାୟାବଳରେ ପୁଷ୍ପପୁର ରାଜକୁମାରଙ୍କ ବିମାନ ପ୍ରବେଶ କରିଛି । ଦୂରରୁ ଦର୍ଶନ କରି ପରସ୍ପର ପରସ୍ପରର ରୂପ ମାଧୁରୀରେ ବିମୁଗ୍ଧ 'ମନନେତ୍ର ଲୋଭିତ' 'ହାସରେ ଝଲକ' ଅଛି ମାତ୍ର 'ପଲକ ନାହିଁ' । ଶୁଭଚକ୍ଷୁ ମିଳନ ହେବାରୁ ସ୍ନେହ ଓ କାମ ବିକାର ଜନ୍ମିଛି । ଯୁବକ ଯୁବତୀ ପ୍ରତ୍ୟେକ ନିଜକୁ କୃତାର୍ଥ ମଣିଛନ୍ତି । ରାଜକୁମାରୀ କୁମାରର ରୂପାମୃତ ପାନରେ ତନ୍ମୟ ବେଳେ କୁମାର ନିକଟରୁ ନିକଟତର ହୋଇ ପ୍ରକଟ ହୋଇଛି । କବି ତର୍କଣା କରନ୍ତନ୍ତି— "କଳାନିଧି ସନ୍ନିଧି ପ୍ରକାଶ କି ବିଷୟେ । କୁମୁଦିନୀ ପାଶେ ଜଳେ ପ୍ରତିବିମ୍ବ ପ୍ରାୟେ ।" କୁମାରୀ ଆଉ ସ୍ଥିରହୋଇ ରହିପାରିନି; ସଖୀ କରରେ କର ଛନ୍ଦି ଭାବାବେଶରେ ସୋପାନ ପରେ ସୋପାନ ଅତିକ୍ରମ କରିଛି । ନାଗର ନାଗରୀର ଦୃଷ୍ଟି ବାକ୍ୟ କହିବାକୁ କର ଯୋଡ଼ିଛି । ଏହି ସମୟରେ ବିଦ୍ୟୁତ୍ ବର୍ଣ୍ଣା ସୁନ୍ଦରୀ କନକ ଚମ୍ପାମାଳକୁ କଟାକ୍ଷ ପାତରେ ସହଚରୀ ହସ୍ତକୁ ବଢ଼ାଇ ଦେଇଛି, ଠିକ୍ ଏହି କାଳରେ ମାଙ୍ଗଳା, ଅବଧୂତ ଚନ୍ଦ୍ରଚୂଡ଼ ଓ ପୋଟା ଉପସ୍ଥିତ ହୋଇଛନ୍ତି । ବାଳା ଲଜକୁଳୀଲତା ପରି ଲଜରେ ଝାଉଁଳି ଯାଇଛି ।

ସହଚରୀ ସ୍ୱର୍ଣ୍ଣଚମ୍ପା ମାଳା ଅର୍ପଣ କରିବାକୁ ଆଗେଇ ଯାଇ ମୁଗ୍ଧଚକିତ ହୋଇପଡ଼ିଛି । ସେ ଭାବିଛି 'ଅତି ଦୁର୍ଲ୍ଲଭ' ଏ ପୁରୁଷ । ତା ମୁହଁରୁ ହଠାତ୍ ପ୍ରକାଶ ପାଇଛି— 'ଏମତ୍ତକୁଞ୍ଜର ଯୁବାକୁ' 'ଆଶାବନ୍ଧେ ବାନ୍ଧିବାକୁ' ରାଜଜେମା ଆଚା-କରିଛି କାହିଁକି ? ରାଜପୁତ୍ରର ସନ୍ନିକଟସ୍ଥ ମିତ୍ର ଏହାଶୁଣି ମୃଦୁ ଭାବରେ ଉତ୍ତର ଦେଇଛି— ନ ବାନ୍ଧିଲେ ମଧ୍ୟ 'ଗୃହାଣି-ଅଙ୍କୁଶ' ଓ 'ମୋହନ-ଫାନ୍ଦ'ରେ ପଡ଼ି ଆଜି ସେ (ମତ୍ତକୁଞ୍ଜର) ଆୟତ୍ତ । ସଖୀ ଓ ସଖାଙ୍କ ମାଧ୍ୟମରେ କୁମାରୀ କଣ୍ଠସ୍ଥ ଚମ୍ପାମାଳ ଓ କୁମାର ହୃଦସ୍ଥ ପଦକ ବିନିମୟରେ ବରଣୋତ୍ସବ ସମ୍ପନ୍ନ ହୋଇଛି । ଯୋଗୀ ଓ ଯୋଗିନୀ କୌଶଳରେ ମାୟା ସଂହରଣ କରିନେବା ଫଳରେ ନାୟକ ନାୟିକା ତତ୍‌କ୍ଷଣାତ୍ ବିଚ୍ଛିନ୍ନ ହୋଇଯାଇଛନ୍ତି ।

ଭଞ୍ଜ ତାଙ୍କର ସମସ୍ତ ପ୍ରଖ୍ୟାତ କାଳ୍ପନିକ କାବ୍ୟରେ ନାୟକ-ନାୟିକାର ଭାବୋଦୟ, ପୂର୍ବରାଗ ଓ ପ୍ରଥମ ମିଳନର ବର୍ଣ୍ଣନା କରିଯାଇଅଛନ୍ତି । 'ଚନ୍ଦ୍ରଲେଖା' 'ରସଲେଖା', 'ରସିକହାରାବଳୀ', 'ସୁବର୍ଣ୍ଣରେଖା' ଓ 'ଲାବଣ୍ୟବତୀ' ପରି 'କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ବିବାହ ପୂର୍ବରୁ ନାୟକ-ନାୟିକାଙ୍କର ସାକ୍ଷାତ ଘଟିଛି । କିନ୍ତୁ ପ୍ରତିଟି ଦର୍ଶନୋତ୍ସବର ପରିବେଶ ପୃଥକ ଓ ରୀତିରେ ଭିନ୍ନ 'ଲାବଣ୍ୟବତୀ'ରେ ପ୍ରେମିକ ପ୍ରେମିକାଙ୍କ ମିଳନ ସ୍ୱପ୍ନ ଓ ଇନ୍ଦ୍ରଜାଲ ମଧ୍ୟରେ ସଂଘଟିତ । 'କୋଟିବ୍ରହ୍ମାଣ୍ଡ



Digitized by PPRACHIN, SOA

ସୁନ୍ଦରୀ'ରେ ତାହା ମାତ୍ରାଦ୍ୱାରା ସମ୍ପାଦିତ । ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ସ୍ୱପ୍ନ ମିଳନରେ ନାୟକ ନାୟିକାଙ୍କୁ ସ୍ପର୍ଶ କରନ୍ତି । କିନ୍ତୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ପ୍ରଣୟୀ ଓ ପ୍ରଣୟିନୀ ପରସ୍ପର ଠାରୁ ଦୂରରେ ରହି ଭାବ ବିନିମୟ କରିଛନ୍ତି । 'ରସିକଲେଖା'ରେ ବିଷ୍ଣାନନ୍ଦ ଦର୍ଶନରେ ଅଭିଭୂତ ମୁକ୍ତା କୁମାରୀଙ୍କୁ ମର୍ଯ୍ୟାଦା ସଚେତନ ସଖୀମାନେ ମାତା ପଚାରିବା ଛଳନାରେ ଦୂରେଇ ନେଇଛନ୍ତି । ଅନୁରୂପ ଭାବେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଭାବାବିଷ୍ଟ ବେଳେ ମାଙ୍ଗଳୀ ଅବଧୂତ ଚନ୍ଦ୍ରପୁଂସାରିଙ୍କ ଆବିର୍ଭାବ ଘଟିଛି । କବି 'ଚନ୍ଦ୍ରଲେଖା' 'ସୁବର୍ଣ୍ଣରେଖା' ଓ 'ଲାବଣ୍ୟବତୀ'ରେ ନାୟକ ନାୟିକାଙ୍କ ପ୍ରଥମ ସାକ୍ଷାତରେ ଗାନ୍ଧର୍ବ ବିବାହ କରାଇଛନ୍ତି । 'ଲାବଣ୍ୟବତୀ'ରେ ଏହି ଉତ୍ସବ ସ୍ୱପ୍ନରେ, ଉଲ୍ଲିଖିତ ଅନ୍ୟ କାବ୍ୟ ଦ୍ୱୟରେ ତାହା ସଖୀମାନଙ୍କ ସମୀପରେ ସମାହିତ କିନ୍ତୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଏହା ସମ୍ମାନପ୍ରଦ ବ୍ୟକ୍ତି-ମାନଙ୍କ ସମକ୍ଷରେ ସମ୍ପାଦିତ ହେବା ଫଳରେ ପରୋକ୍ଷରେ ସାମାଜିକ ସ୍ୱୀକୃତି ମିଳିଛି । କବିଙ୍କ ଆଦି କାବ୍ୟ ଚନ୍ଦ୍ରଲେଖା (ଚନ୍ଦ୍ରକାବ୍ୟ ବନ୍ଦୋଦୟ ଅନୁଯାୟୀ)ରେ ଆନୁଷ୍ଠାନିକ ବିବାହ ପୂର୍ବରୁ ପ୍ରେମିକ ପ୍ରେମିକାଙ୍କ ଦୈହିକ ମିଳନର ବର୍ଣ୍ଣନା ରହିଛି । ଅଥଚ କବି ପରବର୍ତ୍ତୀକାଳରେ ଏ ଦିଗରେ ସଚେତନ ହୋଇଛନ୍ତି ।

ଙ) ବିରହ ଓ ପ୍ରୟତ୍ନ :—

ପ୍ରେମ କାବ୍ୟରେ ପୂର୍ବରାଗର ପରବର୍ତ୍ତୀ ସୋପାନ ପ୍ରୟତ୍ନ । ଶ୍ରବଣ, ଦର୍ଶନ ସ୍ୱପ୍ନ ଆଦି ମାଧ୍ୟମରେ ସୃଷ୍ଟ ଅନୁରାଗ ହେତୁ ନାୟକ ନାୟିକାଙ୍କ ଠାରେ ପ୍ରାପ୍ତିର ଆଶା ଦୃଢ଼ୀଭୂତ ହେଲେ ସେମାନେ ଏ ଦିଗରେ ପ୍ରୟତ୍ନ କରିଥାନ୍ତି । ସ୍ଥଳ ବିଶେଷରେ ଗୁରୁଜନଙ୍କ ପ୍ରଚେଷ୍ଟା, ଦେବାଶୀର୍ବାଦ ଏ ଦିଗରେ ଅନୁକୂଳ ହୋଇ-ଥାଏ । ଉପେନ୍ଦ୍ରଙ୍କ କାଳ୍ପନିକ କାବ୍ୟମାନଙ୍କରେ ତଥା 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଏହି ତ୍ରିବିଧ ପ୍ରୟତ୍ନ ପରିଦୃଷ୍ଟ ହୋଇଥାଏ ।

'ରସିକଲେଖା' ଓ 'ଲାବଣ୍ୟବତୀ' କାବ୍ୟରେ ନାୟକ ନାୟିକାଙ୍କ ପ୍ରଥମ ଦର୍ଶନ ପରେ ବିରହ ବେଦନା ବର୍ଣ୍ଣିତ । କବିଙ୍କ ଅନ୍ୟ କାଳ୍ପନିକ କାବ୍ୟରେ ଏବଂ ଉପର୍ଯ୍ୟୁକ୍ତ କାବ୍ୟ ଦ୍ୱୟରେ ବିବାହୋତ୍ତର ବିଚ୍ଛେଦ ଜନିତ ବିରହ ଅବତାରଣାରେ କବି ଶତମୁଖ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ପରିସମାପ୍ତି ବିବାହ ପରେ ପରେ ଘଟିଥିବାରୁ ବିରହ ମଧ୍ୟରେ ପ୍ରୟତ୍ନର ଚିତ୍ର ଅଙ୍କିତ । ଷୋଡ଼ଶ ଛାନ୍ଦରୁ ଊନତ୍ରିଂଶ ପର୍ଯ୍ୟନ୍ତ ବ୍ୟାପ୍ତ ମଞ୍ଚବେଶରେ ବିରହର ପରିପୂରକ ରୂପେ ପାତ୍ର-ପାତ୍ରୀଙ୍କ ପ୍ରାପ୍ତି ଉଦ୍ୟମ ବର୍ଣ୍ଣିତ ଏହି ବର୍ଣ୍ଣନା କଥାବସ୍ତୁର ସ୍ୱଚ୍ଛନ୍ଦ ଗତିରେ ବାଧକ ନହୋଇ ରସ ସୃଷ୍ଟିରେ ପୂର୍ଣ୍ଣତା ଆଣିଛି ।

॥ ଶହେ ସତାଇଶ ॥

Digitized by PPRACHIN, SOA

ବିରହାର୍ତ୍ତି କୁମାରୀ ବିରହ ଦଶା ମଧ୍ୟରେ କ୍ଷୁତ୍ପିପାସାକୁ ଦୂର କରିଦେଇଛି । ଅନୁରୂପ ଭାବେ କୁମାର କନ୍ଦର୍ପମାରଣରେ ତାପୀ ହୋଇ କୁମାରୀ ଦର୍ଶନ ସ୍ମୃତିକୁ ରୋମନ୍ଥନ କରିଛି । (୧୬ଶ ଓ ୧୭ଶ ଛାନ୍ଦ)

ରାଜକୁମାରୀ ବିରହ ବେଦନାର ରୂପାୟନ ମଧ୍ୟରେ କବି ଘଟଣା ପ୍ରବାହର ଛନ୍ଦାୟିତ ଅବଗତ କରାଇଛନ୍ତି । ସେ ବିରହ ବିଧୁର ଚିତ୍ତକୁ ହୃଦୟବେଦ୍ୟ ଓ ଅନୁକୂଳ କରିବାକୁ ନିଦାଘକୁ ଏହାର ପୃଷ୍ଠ ଭୂମି ରୂପେ ଗ୍ରହଣ କରିଛନ୍ତି । ବାହ୍ୟ ଜ୍ୱଳନରୁ ଅନ୍ତର୍ଜ୍ୱଳନ ବଳିପଡ଼ିଛି । ରାଜକନ୍ୟାଠାରେ ଅଷ୍ଟସାତ୍ତ୍ୱିକ ପ୍ରକଟ ହେବାରୁ ସହଚରୀଙ୍କ ସୃଷ୍ଟ ପଦ୍ମପତ୍ର ଶଯ୍ୟାରେ ମୁହଁମାଡ଼ି ଶୋଇଛି । ନୀରଜାନନା ନେତ୍ରରୁ ବହିଲଚିଛି ଅବାଞ୍ଛିତ ନୀରଧାର । ମନ୍ତ୍ରୀ ଓ ବୈଦ୍ୟାନ୍ତ୍ରୀ କୌଟିକୀଙ୍କୁ ସ୍ନାନ ଉଦ୍ଦେଶ୍ୟରେ ଗଲାବେଳେ ଚାକଚାକ ସଦୃଶ ପଦ୍ମିନୀ ଦଳରେ ଜଳପରି ତରଳ ପଦାର୍ଥ ସମ୍ପୁଟକାକୃତ ଗର୍ତ୍ତ ଦେଖିଛନ୍ତି । ଅଭିଜ୍ଞା ନାରୀ ଦୃଶ୍ୟ ଏହା ବିରହିଣୀ ଶଯ୍ୟା ବୋଲି ଧରିନେଇଛନ୍ତି । ସବିଶେଷ ଜାଣିବା ନିମିତ୍ତ ସନ୍ଦେହନୀ ମନ୍ତ୍ରୀପତ୍ନୀ ଉପାଧ୍ୟାୟୀଙ୍କୁ ରାଜକନ୍ୟାଙ୍କ ନିକଟକୁ ପ୍ରେରଣ କରିଛନ୍ତି । ସଖୀମାନେ ବିରହ ଉପଚାର ଲୁଚାଇବାକୁ ଚେଷ୍ଟା କରିବା ସତ୍ତ୍ୱେ ଉପାଧ୍ୟାୟୀ ତାହା ଜାଣିପାରିଛନ୍ତି । ମନ୍ତ୍ରୀ ପତ୍ନୀଙ୍କ ଠାରୁ ଏ ସମ୍ବାଦ ପାଇ ତାଙ୍କ ବୁଦ୍ଧିରୁ କଥା ଠିକ୍ ଭାବି ନେଇଛନ୍ତି—ବୋଧହୁଏ ରାଜକୁମାରୀ ସ୍ୱପ୍ନରେ କେଉଁ ସୌମ୍ୟ ସୁଦର୍ଶନ ପୁରୁଷକୁ ଦେଖି ବିରହଜର୍ଜର । (୧୮ଶ/୬୨ପ)

ମନ୍ତ୍ରୀ ଚିତ୍ରକରଙ୍କ ଦ୍ୱାରା ସମସ୍ତ ରାଜପୁତ୍ରଙ୍କ ଚିତ୍ର ଅଙ୍କନ କରାଇଛନ୍ତି । ଜେମା କାହାପ୍ରତି ଆସକ୍ତ ତାହା ଜାଣିବା ନିମିତ୍ତ ଚିତ୍ରକରଙ୍କ ପତ୍ନୀ ଚିତ୍ରପଟଟି ନେଇ ଅନ୍ତଃପୁରକୁ ଯାଇଛି । କୁମାର ପୁଷ୍ପକେତୁ ଚିତ୍ରକୁ ରାଜକୁମାରୀ ଅପଲକ ନୟନରେ ଚାହିଁରହିବା ଫଳରେ କାରଣ ସ୍ପଷ୍ଟ ହୋଇଛି ।

ପକ୍ଷାନ୍ତରେ ବିରହ ବିଧୁର ରାଜପୁତ୍ର ସଖାମାନଙ୍କ ପରାମର୍ଶରେ ପୋଷା ଦ୍ୱାରା ରାଜଜେମା ନିକଟକୁ ପତ୍ର ପ୍ରେରଣ କରିଛି । ରାଜକୁମାରୀ ପ୍ରତି ଅନୁରାଗ ସୃଷ୍ଟି କରିବା ଲକ୍ଷ୍ୟରେ ବହିର୍ଗତ ଉପାଧ୍ୟାୟୀ ପୋଷା ସହିତ ମିଳିତ ହୋଇଛନ୍ତି । ସେମାନେ ଶୁକ-ଶାରୀରୂପୀ ଅଦ୍ଭୁତ ପୁରୁଷ ଓ ମାଇଲାଙ୍କ କଥୋପକଥନରୁ କୁମାର କୁମାରୀଙ୍କ ପରସ୍ପର ପ୍ରତି ଥିବା ଆକର୍ଷଣ ସମ୍ପର୍କରେ ଅବଗତ ହୋଇଛନ୍ତି ।

ପୋଷା ରାଜକୁମାରର ପତ୍ରକୁ ପାଟଳି ଫୁଲମାଳରେ ଘୋଡ଼ାଇ ରାଜଜେମା ନିକଟକୁ ପ୍ରେରଣ କରିଛି । ପତ୍ର ପ୍ରାପ୍ତିରେ ନିରାଶା ଦୋଳାରେ ଦୋଳାୟମାନ ରାଜନନ୍ଦିନୀର ମେଘମେଦୁରିତ ଚିଦାକାଶ ହୋଇଛି ଚନ୍ଦ୍ରାଲୋକିତ । ମୁଖରେ



Digitized by PPRACHIN, SOA

ଉକ୍ତି ଉଚିତ୍ତ ଶୁଭ୍ରଜ୍ୟୋତ୍ସ୍ନା । ସଖୀ କାଦମ୍ବିନୀର ପରାମର୍ଶରେ ରାଜଜେମା ଦକ୍ଷିଣ ନାୟକ ନିକଟକୁ ଉତ୍ତର ପତ୍ରିକା ପଠାଇଛି ।

ଉପେନ୍ଦ୍ରଙ୍କ ସମସ୍ତ କାବ୍ୟରେ ପତ୍ର ମାଧ୍ୟମରେ ନାୟକ ନାୟିକାଙ୍କ ଭାବ ବିନିମୟ ଘଟିଛି । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ନାୟକ ନାୟିକା ଦୁଇଟି ଦୁଇଟି ପତ୍ରରେ ନିଜ ନିଜ ବେଦନା ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ପ୍ରେମସ୍ୱୀକୃତି ପ୍ରଦାନ କରିଛନ୍ତି । ଏପରିକି ସ୍ୱୟମ୍ବରରେ ଯୋଗଦାନ ପାଇଁ ଆଗତ ପୁଷ୍ପକେତୁର ସନ୍ଦେହ ତୁଟାଇବା ପାଇଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରେମିକା ରାଜକନ୍ୟା ପତ୍ର ପ୍ରେରଣ କରିଛି ଓ ମାଲ୍ୟାଣୀ ଦ୍ୱାରା କୁମାରର. ଅନୁରାଗ ଜାଣିବାକୁ ଚେଷ୍ଟାକରିଛି । ନାୟକ ନାୟିକାଙ୍କ ପତ୍ରପାଠ ପାଇଁ ବ୍ୟଗ୍ରତା, ପଠନ ସମୟରେ ତନ୍ମୟତା, ସଖା ଓ ସଖୀ ମାନଙ୍କ ରଙ୍ଗରହସ୍ୟର ପ୍ରାଣବନ୍ତ ରୂପ କବି ସାର୍ଥକ ଉପମା ମାଧ୍ୟମରେ ପ୍ରଦାନ କରିପାଇଅଛନ୍ତି । ଉପେନ୍ଦ୍ରଙ୍କ ବିଭିନ୍ନ କାବ୍ୟରେ ପତ୍ରଲିଖନ ପଦ୍ଧତିରେ ଭିନ୍ନତା ପରିଲକ୍ଷିତ । ସାଧାରଣତଃ ଅନୁରାଗ ପୂର୍ଣ୍ଣପତ୍ର ହରିଦ୍ରାରଞ୍ଜିତ 'କାକଜ' ଉପରେ ରକ୍ତବର୍ଣ୍ଣରେ ଲିଖିତ । କିନ୍ତୁ ଯେଉଁଠି କାଗଜ ପ୍ରାପ୍ତିର ଅବକାଶ ନାହିଁ ସେଠାରେ କେତକୀପତ୍ର ବ୍ୟବହୃତ । 'ରସଲେଖା' ନାୟକ ବିଶ୍ୱାନନ୍ଦ କେତକୀଦଳ ଉପରେ କଣ୍ଟକ ଦ୍ୱାରା ପତ୍ର ଲେଖିଛନ୍ତି । ମଧୁଶଯ୍ୟା ରାତ୍ରିରେ କ୍ରୀଡ଼ାବତୀ ସୀତା ଅଙ୍ଗରାଗ ରୂପେ ବ୍ୟବହୃତ କସ୍ତୂରୀ ଦ୍ୱାରା କେତକୀଦଳରେ 'ବର୍ଣ୍ଣି' ଲେଖି ନିଜ ହୃଦୟସ୍ଥ ମନ ଓ ଦେହର ପବିତ୍ରତା ସ୍ୱାମୀଙ୍କ ନିକଟରେ ଜ୍ଞାପନ ପୂର୍ବକ ଶପଥପାଠ କରିଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ସ୍ୱୟମ୍ବର ଉଦ୍ଦେଶ୍ୟରେ ଆଗତ ପୁଷ୍ପକେତୁ ନିକଟକୁ ଏକ ଗୁପ୍ତ ପତ୍ର ପଠାଇଛି । ହରିଦ୍ରାବର୍ଣ୍ଣ 'କାକଜ' ଉପରେ କାଜବସ୍ତୁ ରକ୍ତରେ ଲିଖିତ ଏହି ପତ୍ରର ଅକ୍ଷର ଗୁଡ଼ିକ ଦିବା ଭାଗରେ ଅଦୃଶ୍ୟ । ସନ୍ଧ୍ୟାପରେ କୁମାର ତାହା ପାଠ-କରି ଅଭିଭୂତ ହୋଇଛି । ଅଳଙ୍କାର ଶାସ୍ତ୍ରର ନିର୍ଦ୍ଦେଶ ବୈପରୀତ୍ୟରେ ଉପେନ୍ଦ୍ରଙ୍କ ସମସ୍ତ ନାୟକ ପ୍ରଥମେ ପତ୍ର ଦେଲାପରେ ନାୟିକାମାନେ ଉତ୍ତର ପ୍ରଦାନ କରିଛନ୍ତି । ଲଜ୍ଜାଶୀଳା ନାୟକ ମାନେ ନିଜ ଅଭିଲାଷକୁ ସଖୀନାମରେ ବ୍ୟକ୍ତ କରିଛନ୍ତି । ବସ୍ତୁତଃ ଏହି କାବ୍ୟରେ . ଅନୁରାଗ ଓ ମିଳନ ଚିତ୍ର ପରି ପତ୍ରବିନିମୟ ମୁଖ୍ୟସ୍ଥାନ ଗ୍ରହଣ କରିଥାଏ ।

(ଚ) ମିଳନ ଓ ବିଳାସ

ଓଡ଼ିଆ କାବ୍ୟରେ ପ୍ରଣୟର ନିଶ୍ଚିତ ପରିଣତି ହେଉଛି ମିଳନ । ଉପେନ୍ଦ୍ରଙ୍କ ପୂର୍ବବର୍ତ୍ତୀ କେତେକ କାଳ୍ପନିକ କାବ୍ୟରେ ଏହି ମିଳନ ପରକୀୟା ସମ୍ପର୍କରେ ସାଧିତ ହୋଇଥିଲାବେଳେ କବିଙ୍କ ସୃଷ୍ଟ ସମସ୍ତ ନାୟକ ନାୟିକାଙ୍କ ମିଳନ



Digitized by PPRACHIN, SOA

ବିବାହର ପର୍ଯ୍ୟବସିତ । ଏ କ୍ଷେତ୍ରରେ ବୈଚିତ୍ର୍ୟ ମଧ୍ୟ ପରିଦୃଷ୍ଟ । 'ରସଲେଖା' 'ରସିକ ହାରାବଳୀ', 'ଲାବଣ୍ୟବତୀ' ପ୍ରଭୃତି କାବ୍ୟରେ ଏହା ବର ତଥା କନ୍ୟା-ପିତାର ସମ୍ମତି କ୍ରମେ ଅନୁଷ୍ଠିତ । କିନ୍ତୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ର ନାୟକ ଅସାଧ୍ୟ ସାଧନ ମଧ୍ୟରେ କନ୍ୟାପିତାଙ୍କ ପଣ ରକ୍ଷିବାକୁ ସମର୍ଥ ହୋଇପାରିଛି । କୃଷ୍ଣଦାସଙ୍କ 'ପ୍ରେମଲୋଚନା' ଓ ଧନଞ୍ଜୟଙ୍କ 'ଅନଙ୍ଗରେଖା'ରେ ସ୍ୱୟମ୍ବରର ବର୍ଣ୍ଣନା ରହିଥିଲା-ବେଳେ ଉପେନ୍ଦ୍ର ଅଭିନବ କୌଶଳ ଅବଲମ୍ବନ କରି ଚିତ୍ରମୃଗ ଚାମର ଛେଦନ ଘଟଣାକୁ ସଂଯୋଗ କରିଛନ୍ତି । ଏହି କଳ୍ପିତ ବିଧାନଟି ହୋଇଛି ବୈଶିଷ୍ଟ୍ୟ ନିର୍ଦ୍ଦିଷ୍ଟ । ଏକଦା ଚମ୍ପାନଗରର ରାଜା ବିଶ୍ୱାନନ୍ଦ ମନ୍ତ୍ରୀଙ୍କ ସହ ଏକାନ୍ତରେ ବସି କନ୍ୟାର ବିବାହ ସମ୍ପର୍କରେ ଭାବୁଥିବାବେଳେ ଆକାଶରୁ 'ଦେବର୍ଷି' ନାରଦ ବିରଦାକ୍ଷ ହେଲେ । ତାଙ୍କର ବୀଣାସ୍ୱନ ସହ ଶୁଭିଲା— ଚମ୍ପାନଗରରେ କୁରୁଙ୍ଗଟିଏ ଭ୍ରମଣ କରିବ । ଯେ ଏହି ଅପୂର୍ବ ମୃଗର ଚାମରଟି ଛେଦନ କରିବ ସେ ରାଜକନ୍ୟାର ପାଣି ଗ୍ରହଣ କରିବ । ରାଜା ଏହି ବାର୍ତ୍ତା ଚାରମାନଙ୍କ ଦ୍ୱାରା ପ୍ରଚାର କରି ସ୍ୱୟମ୍ବରର ଆୟୋଜନ କଲେ ।

ସାରଳା ମହାଭାରତର ପ୍ରେମ ଉପାଖ୍ୟାନମାନଙ୍କରେ ବର୍ଣ୍ଣିତ ନାରଦଙ୍କ ଭୂମିକା ଉପେନ୍ଦ୍ରଙ୍କ ଲେଖନୀରେ ପରିବର୍ତ୍ତିତ । ପୂର୍ବର କଳହପ୍ରିୟ ଦେବକାର୍ଯ୍ୟ ସାଧକ ଓ ଘଟକ ଭୂମିକାରେ ଅବତୀର୍ଣ୍ଣ ନାରଦଙ୍କ ଶେଷୋକ୍ତ ଭୂମିକାଟି ଭଞ୍ଜୀୟ କାଳୀନ କାବ୍ୟରେ କେବଳ ଉପଲବ୍ଧ । ନାରଦ 'ରସଲେଖା' କାବ୍ୟରେ ମଧ୍ୟସ୍ଥତା କରିଥିଲାବେଳେ 'ଲାବଣ୍ୟବତୀ'ଓ'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଅନ୍ତରାଳରେ ରହି ନାୟକ ନାୟିକାଙ୍କ ମଧ୍ୟରେ ଯଥାକ୍ରମେ ବିରହ ଓ ମିଳନର ସୂତ୍ରପାତ କରାଇଛନ୍ତି ।

ଚିତ୍ରମୃଗ-ଚାମର ଛେଦନ ଘଟଣା ଷଡ଼ବିଂଶରୁ ଏକତ୍ରିଂଶ ଛାନ୍ଦ ମଧ୍ୟରେ ବର୍ଣ୍ଣିତ । ପ୍ରେମିକା ପ୍ରେରିତ ସମ୍ବାଦ ତଥା ପିତାଦେଶ ପାଇ ପୁଷ୍ପପୁର ରାଜକୁମାର ପୁଷ୍ପକେତୁ ଚମ୍ପାନଗରକୁ ଆସିଛି । ସମାଗତ ରାଜକୁମାରମାନେ ବିଦ୍ୟୁତଗତି ସମ୍ପନ୍ନ ବିଚିତ୍ର ମୃଗର ଚାମର ଛେଦନ ତ ଦୂରର କଥା ତାର ପଶ୍ଚାତ୍ ଧାବନ କରିବାକୁ ସମର୍ଥ ହୋଇପାରିନାହାନ୍ତି । ଅଥଚ ପୁଷ୍ପକେତୁ ଅନାୟାସରେ ତାହା ଛେଦନ କରି ଚମ୍ପାପୁର ରାଜାଙ୍କ ଆଦରର ପାତ୍ର ହୋଇପାରିଛି ।

କବି ରାଜାମାନଙ୍କ ସମ୍ମେଳନ, ଚିତ୍ରମୃଗଲୀଳା ସଂଦର୍ଶନରେ ଆଗତ ଗୋରୀ, କାଳୀ ଓ ଶ୍ୟାମଳୀ ପୁରାଙ୍ଗନାମାନଙ୍କ ସୌନ୍ଦର୍ଯ୍ୟ, ହାବ ଭାବର ବର୍ଣ୍ଣାଢ୍ୟ ଚିତ୍ର ପରିବେଷଣ କରିଯାଇଛନ୍ତି ।

॥ ଶବ୍ଦେନ୍ଦ୍ରିତରଣ ॥

Digitized by PPRACHIN, SOA

କବିଙ୍କ ପୂର୍ବବର୍ତ୍ତୀ କାବ୍ୟ ବନମାଳୀଦାସଙ୍କ 'ଗୃହଛିଦ୍ରାବତୀ'ଓ ସ୍ୱ ରଚିତ କାବ୍ୟ 'ଚନ୍ଦ୍ରଲେଖା' ପରି 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ବିବାହ ହୋଇଛି କାବ୍ୟର ଚରମ ବିନ୍ଦୁ । ଅନ୍ୟ କାଳିକ କାବ୍ୟମାନଙ୍କରେ ବିବାହୋତ୍ତର ପୁନର୍ମିଳନକୁ ଦ୍ୱିତୀୟ ଚରମବିନ୍ଦୁ ଭାବରେ ଗ୍ରହଣ କରାଯାଇପାରେ । ଉକ୍ତବିବାହ ଆୟୋଜନ ପାଣି ଗ୍ରହଣ କନ୍ୟାବେଶ, କେଳିପୁର ମଣ୍ଡନ, ସମ୍ଭୋଗ, କେଳିପୁରରୁ ପ୍ରତ୍ୟାଗମନ ସଖାସଖୀଙ୍କ ରତ୍ୟାନ୍ତ ପରିହାସର ପୁଙ୍ଖାନୁପୁଙ୍ଖ ଚିତ୍ର ପରିବେଷଣ କରିଛନ୍ତି । କବି ରଚିତ ସମସ୍ତ କାବ୍ୟରେ ଏସବୁର ପୁଷ୍କଳ ବର୍ଣ୍ଣନା ପରିଲକ୍ଷିତ ହେଲେ ମଧ୍ୟ ଆଲୋଚ୍ୟ କାବ୍ୟଟିରେ କିଞ୍ଚିତ୍ ବୈଚିତ୍ର୍ୟ ପରିଦୃଷ୍ଟ । ମଧୁଶଯ୍ୟା ଗୃହକୁ ଗମନ ଓ ପ୍ରତ୍ୟାଗମନ କାଳୀନ ସଖା ଓ ସଖୀମାନଙ୍କ ପରିହାସ ରସସିକ୍ତ । ଅନ୍ୟ କାବ୍ୟରେ ବର୍ଣ୍ଣିତ ସମ୍ଭୋଗ ବର୍ଣ୍ଣନା ସୀମାଅତିକ୍ରମ କରିଥିଲାବେଳେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ସେଥିରେ କବି ସଂଯତ ଓ ସଚେତନ ରହିଛନ୍ତି । ବୈଧୀପ୍ରେମର ଉପାସକ ଉପେନ୍ଦ୍ର ବାସର ଗୃହ ଭିତ୍ତିରେ ରାଧାକୃଷ୍ଣଙ୍କ ମିଳନ ଚିତ୍ର ପରିବର୍ତ୍ତେ 'ସୀତାରାମଙ୍କ ପ୍ରଦୀପ ନୟନ' ଆଦି ଆଲେଖ୍ୟ ଅଙ୍କନ କରାଇଛନ୍ତି । ନାୟକ ନାୟିକାଙ୍କ ଚିର ବାଞ୍ଛିତ ମିଳନ ଓ ବିଳାସ ପରେ କାବ୍ୟର ପରିସମାପ୍ତି ଘଟିଛି ।

କଥାନକ ବିନ୍ୟାସରେ ଔଚିତ୍ୟ ଓ ବକ୍ରତା :—

ସଂସ୍କୃତ ଅଳଙ୍କାରତତ୍ତ୍ୱ ଓଡ଼ିଆ କାବ୍ୟର ଅନ୍ୟତମ ଦିଗ୍‌ଦର୍ଶକ ହୋଇଥିଲେ ମଧ୍ୟ କୌଣସି ଓଡ଼ିଆ କବି ନିଷ୍ଠାପର ଭାବେ ଏକ ନିର୍ଦ୍ଦିଷ୍ଟ ଅଳଙ୍କାର ଗ୍ରନ୍ଥର ପୂର୍ଣ୍ଣ ଅନୁସରଣ କରିନଥିଲାପରି ମନେହୁଏ । ଅନୁରୂପଭାବେ ଉପେନ୍ଦ୍ର ବିଭିନ୍ନ ଅଳଙ୍କାରଗ୍ରନ୍ଥ ଆଦର୍ଶରେ କାବ୍ୟ ରଚନା ପ୍ରୟାସ କରିଯାଇଛନ୍ତି ।

ଆଲଙ୍କାରିକମାନେ କାବ୍ୟ ଗଠନ, କାବ୍ୟଶରୀର ଓ ଆତ୍ମା ପ୍ରଭୃତି ସମ୍ପର୍କରେ ଭିନ୍ନ ଭିନ୍ନ ମତ ପ୍ରଦାନ କରିଯାଇଥିଲେ ମଧ୍ୟ ରୁଦ୍ରଟ, ଆନନ୍ଦବର୍ଦ୍ଧନ, ଅଭିନବ ଗୁପ୍ତ କୁନ୍ତକ, କ୍ଷେମେନ୍ଦ୍ର ପ୍ରଭୃତି ତତ୍ତ୍ୱବିଦ୍ ଔଚିତ୍ୟ ଉପରେ ପ୍ରାଧାନ୍ୟ ଆରୋପ କରିଯାଇଛନ୍ତି । ଧ୍ୱନିବାଦର ପ୍ରବକ୍ତା ଆନନ୍ଦବର୍ଦ୍ଧନ ଔଚିତ୍ୟକୁ 'ରସର ପରମ ରହସ୍ୟ ପରିଉପନିଷଦ ସଦୃଶ' ବୋଲି ମନେକରନ୍ତି । (୭) ଔଚିତ୍ୟବାଦର ପ୍ରତିଷ୍ଠାତା କ୍ଷେମେନ୍ଦ୍ର କାବ୍ୟସ୍ଥ ବିଭିନ୍ନ ବସ୍ତୁ ଓ ପଦାର୍ଥ ମଧ୍ୟରେ ଥିବା ସଂଗତିକୁ

(୭) ସଂ. କୁଳମଣି ମିଶ୍ର— ଧ୍ୱନ୍ୟାଲୋକ (୧୯୭୫) ପୃ ୩୭୨,

॥ ଶରହେଏକଢରଣ ॥

Digitized by PPRACHIN, SOA

ଔଚିତ୍ୟ ବୋଲି ଅଭିହିତ କରିଛନ୍ତି । (୮) ଅଗ୍ନିପୁରାଣ ସ୍ୱକୀୟଗ୍ରନ୍ଥ୨୨, ଦଶ୍ଡୀ କାବ୍ୟାଦର୍ଶ୍'ରେ ବକ୍ରୋକ୍ତିକୁ 'ବୈଦଗ୍ଧୀଭଙ୍ଗୀ ଭଣିତଃ' (୧/୧୦ ବୃତ୍ତି), ଅର୍ଥାତ୍ ଅଭିବ୍ୟକ୍ତି କୌଶଳ ବା କବିକର୍ମ କୌଶଳ ଭାବରେ ଗ୍ରହଣ କରିଥିଲେ ମଧ୍ୟ ପ୍ରକରଣ ବକ୍ରତା ଓ ପ୍ରବନ୍ଧ ବକ୍ରତା ପର୍ଯ୍ୟାୟରେ କାହାଣୀ, କଥାବସ୍ତୁ, ଘଟଣା ଓ ବର୍ଣ୍ଣନା ମଧ୍ୟରେ ସଂହତିକୁ ଉଚ୍ଚସ୍ଥାନ ପ୍ରଦାନ କରିଛନ୍ତି । ଆଚାର୍ଯ୍ୟ ପ୍ରବନ୍ଧର ବାକ୍ୟ ସମୂହକୁ ବା ଅଂଶବିଶେଷକୁ ପ୍ରକରଣ ବୋଲି କହିଛନ୍ତି । ସେ ଆଦୃତ ଓ ଉତ୍ପ୍ରେକ୍ଷିତ (କଳ୍ପିତ) କାବ୍ୟର ବିଷୟ ବିନ୍ୟାସ ସମ୍ପର୍କରେ ନାନା ନିର୍ଦ୍ଦେଶ ଦେଇଯାଇଥିଲେ ମଧ୍ୟ ନିମ୍ନୋକ୍ତ ଲକ୍ଷଣ ଗୁଡ଼ିକ ଉନ୍ନତ କାଳ୍ପନିକ କାବ୍ୟକ୍ଷେତ୍ରରେ ପ୍ରଯୋଜ୍ୟ, ଯଥା :— ଉପକାର୍ଯ୍ୟ ଓ ଉପକାର ଭାବକୁ ପ୍ରକରଣ ବା ଘଟଣା ମାଧ୍ୟମରେ ଉପସ୍ଥାପନ, ଉପଯୁକ୍ତ ବର୍ଣ୍ଣନୀୟ ବସ୍ତୁର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ବା ଅତିରଞ୍ଜନ ଏବଂ କବି ଦୃଷ୍ଟିରେ ଅନାବଶ୍ୟକ ପଦାର୍ଥର ସଂକ୍ଷିପ୍ତୀକରଣ, ବା ପରିହାର ନାୟକର ଚରମୋତ୍କର୍ଷ ମଧ୍ୟରେ ଉପସଂହାର,ବ୍ୟଞ୍ଜନାଧର୍ମୀ ନାମକରଣ ଅଭିପ୍ରେତ ଆଦର୍ଶର ବାହକ ରୂପେ କଥାବସ୍ତୁର ଅବତାରଣା/ଉପର୍ଯ୍ୟୁକ୍ତ ଆଧାରରେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ସୂଚନାତ୍ମକ ବିଶ୍ଳେଷଣ କରାଯାଉଛି ।

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଉପେନ୍ଦ୍ରଙ୍କ ଅନ୍ୟ କାଳ୍ପନିକ କାବ୍ୟପରି ଏକ ପ୍ରେମକାବ୍ୟ ହେଲେମଧ୍ୟ ଏଥିରେ 'ମୂଳ କଥା ବକ୍ରତା' ପରିଲକ୍ଷିତ । ଅର୍ଥାତ୍ କବି ତାଙ୍କର ପୂର୍ବବର୍ତ୍ତୀ ସୃଷ୍ଟିର ଗଳ୍ପ ଓ ଘଟଣା ଗୁମ୍ଫନ କୌଶଳକୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ କେତେକାଂଶରେ ପରିହାର କରି କଥାବସ୍ତୁରେ ବୈଚିତ୍ର୍ୟ ସମ୍ପାଦନ କରିପାରିଛନ୍ତି । କବିଙ୍କ ଅନ୍ୟ କାଳ୍ପନିକ କାବ୍ୟସମୂହର ବୈପରୀତ୍ୟରେ ଆଲୋଚ୍ୟ କାବ୍ୟରେ ବହୁ ଚରିତ୍ର,ଘଟଣା ଓ ଦୃଶ୍ୟର ସୁସଂହତ ସମାବେଶ ଘଟିଛି । ଯଥା— ପ୍ରାକ୍‌ଜନ୍ମ ଆଖ୍ୟାନ, ନାୟିକାର ସଖୀପ୍ରାପ୍ତି, ନାରଦଙ୍କ ବରଦାନ ଓ ତାର ଫଳ ସ୍ୱରୂପ ଅଦ୍ଭୁତ ପୁରୁଷର ଆବିର୍ଭାବ, ପୋଟା, ମାଙ୍ଗଳା, ଅବଧୂତ ପ୍ରଭୃତି ଚରିତ୍ରର ନାୟକ-ନାୟିକାଙ୍କ କାର୍ଯ୍ୟ ସାଧନ,ନାୟକ ନାୟିକାଙ୍କ ଉପବନ ବିହାରକୁ ଦୃଷ୍ଟାନ୍ତ ଭାବରେ ଗ୍ରହଣ କରାଯାଇପାରେ । ଏସବୁ ପ୍ରକରଣ ଘଟଣା ପ୍ରବାହ ସହିତ ପ୍ରତ୍ୟକ୍ଷ ଭାବେ ଜଡ଼ିତ/ ତେଣୁ କେହି ଅବାନ୍ତର ମନେ ହୁଅନ୍ତି ନାହିଁ । ଏପରିକି ପରୋକ୍ଷରେ ଆସିଥିବା ଅତି ଗୌଣ ଘଟଣା— ଶୁକଶାରୀ କଥୋପକଥନ, ମାଳୀର ପୁଷ୍ପବାଟିକାରୁ ବୃଷଭବିତାଡ଼ନ, ଅନ୍ତରୀକ୍ଷରେ ଶଚୀ ଓ ଶାରଦାଙ୍କ କଥୋପକଥନ ଆଦି ମୂଳ

---

(୮) ସଂ. ଡକ୍ଟର ମନୋହରଲାଲ ଗୌଡ଼— ଔଚିତ୍ୟ ବିଷ୍ୟର ଚର୍ଚ୍ଚା । ୭/୧୭



Digitized by PPRACHIN, SOA

ଘଟଣା ପ୍ରବାହ ସହିତ ସୁସମ୍ବନ୍ଧାନ୍ୱିତ ହୋଇପାରିଛି । ଶୁକସାରୀ କଥୋପକଥନ ନାୟକ-ନାୟିକାଙ୍କ ଦୂତ ଓ ଦୂତୀଙ୍କ ଠାରେ ପ୍ରତ୍ୟୟ ସୃଷ୍ଟି କରିଛି । ପୁଷ୍ପବାଟିକାରେ ବୃନ୍ଦାଭ ପ୍ରବେଶ ଏହି କ୍ଷୁଦ୍ର ପ୍ରକରଣଟି ନାୟକ ପତ୍ର ପ୍ରେରଣରେ ସହାୟକ ହୋଇଛି ।

ପୂର୍ବ ସୂଚିତ ନାୟିକାର ଜନ୍ମ ଆଖ୍ୟାନଟି ପ୍ରାରମ୍ଭିକୁ ପରିଣତିମୁଖୀ କରି ଉପକାର୍ଯ୍ୟ ଓ ଉପକାର ଭାବକୁ ମନୋଜ୍ଞ ଭାବରେ ସମାହିତ କରିଛି । ଚିତ୍ରମୃଗ ପ୍ରକରଣଟି କବିଙ୍କ ଅଭିନବ ପରିକଳ୍ପନା । ମୃଗ ଚର୍ମର ଛେଦନ ଘଟଣାରେ ନାୟକର ଚରମୋତ୍କର୍ଷ ପ୍ରତିପାଦିତ । ଏଦ୍ୱାରା ପରିପୂରକ ବା ସମାନ୍ତରାଳ ପ୍ରକରଣ ରୂପେ ଜାତକ ଚିତ୍ର ସନ୍ନିବେଶିତ । ନାୟକ-ନାୟିକାର ବିବାହରେ କାର୍ଯ୍ୟର ପରିସମାପ୍ତି ଘଟିଥିଲେ ପୁଣି ଉଲ୍ଲିଖିତ ପ୍ରକରଣ ଦୁଇଟି ପୁଷ୍ପକେତୁର ପରବର୍ତ୍ତୀ ସୁଟକର ଦାମ୍ପତ୍ୟ ଜୀବନ ଓ ସୁଶାସନକୁ ଚିତ୍ରାଙ୍କିତ କରିଥାନ୍ତି । ଅଧୁନିକ କଥା-ତତ୍ତ୍ୱବିଦ୍‌ଙ୍କ ଦୃଷ୍ଟିରେ କଥାନକ ବା ପ୍ଲଟର କୌଣସି ସ୍ୱତନ୍ତ୍ର ସତ୍ତା ନାହିଁ । ଏହା କଥା ବା କାହାଣୀ ମଧ୍ୟରେ ଥିବା କ୍ରିୟାଶୀଳତାର ନାମାନ୍ତର ମାତ୍ର । କଥାର ପ୍ରତିଟି ଉପାଦାନକୁ ଚରିତ୍ର ବିଶେଷତଃ ପ୍ରଧାନ ଚରିତ୍ର ସହିତ ସୁସମ୍ବନ୍ଧାନ୍ୱିତ କରିବା ପ୍ଲଟର କାର୍ଯ୍ୟ । (୯) ଉପର୍ଯ୍ୟୁକ୍ତ ଆଲୋଚନାରୁ ପ୍ରତିପନ୍ନ ଯେ କାବ୍ୟସ୍ଥ ସମସ୍ତ ମୁଖ୍ୟ ଗୌଣ ଘଟଣା ଓ ଚରିତ୍ର ସନ୍ନିବିଷ୍ଟ ଏବଂ ସୁସଂହତ । ଅତଏବ କାବ୍ୟଟି ତତ୍ତ୍ୱବିଚାରରେ ଏକ ସଫଳ ସୃଷ୍ଟି ।

କବି ନାୟିକା ନାମରେ ନାମିତ କାବ୍ୟଟିର ନାମକରଣରେ ଯଥାର୍ଥ୍ୟ ପ୍ରତିପାଦନ ପାଇଁ ସତତ ଯତ୍ନଶୀଳ । ନାୟିକାର ନାମ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ତାତ୍ପର୍ଯ୍ୟ ପ୍ରତିପାଦନ ନିମିତ୍ତ କବି ତାହାକୁ ଯେପରି ସୁନ୍ଦରୀଶ୍ରେଷ୍ଠ ଭାବରେ ଉପ-ସ୍ଥାପନ କରିଛନ୍ତି ସେହିପରି ପ୍ରେମ ମଞ୍ଜରୀ ନାମଟି କାବ୍ୟସ୍ଥ ପ୍ରେମପ୍ଲାବନ ମଧ୍ୟରେ ସାର୍ଥକତା ଲାଭ କରିଛି । ଭଞ୍ଜ ହିଁ କାବ୍ୟ ଅନ୍ୟ ଗୁରୁକାବ୍ୟର ବୈପରୀତ୍ୟରେ ବାଲ୍ୟ, କୈଶୋର ବର୍ଣ୍ଣନାକୁ ଯଥା ସମ୍ଭବ ସଂକ୍ଷିପ୍ତ କରି ସୌନ୍ଦର୍ଯ୍ୟ ପ୍ରକାଶକ ଯୌବନର ବିଶଦ ଚିତ୍ର, ବିଭିନ୍ନ ପରିବେଶ ଓ ପ୍ରକରଣରେ ଅଙ୍କନ କରାଯାଇଛନ୍ତି । କବି ନାଟକୀୟ ରୀତିରେ କବି, ଭାଟ, ଚିତ୍ରପୁଂସ ଓ ନାୟକ ମୁଖରେ ନାୟିକାର ଅନୁପମ ଅଲୌକିକ ରୂପ ବିଭବର ଉତ୍କର୍ଷ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଏହା ଅନବଦ୍ୟ ତେଣୁ କବି କଳ୍ପନାର ସାଧ୍ୟାତୀତ ବୋଲି ବାରମ୍ବାର ଦର୍ଶାଇଛନ୍ତି !

(୯) Cited in Robert liddel : Treaties on the Novel — 1947-p-72

॥ ଦେବେନ୍ଦ୍ରନିବ ॥

Digitized by PPRACHIN, SOA

କବି ସୃଷ୍ଟ ଅନ୍ୟ କାବ୍ୟଗୁଡ଼ିକ ପରି 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ପ୍ରେମ ବା ଶୃଙ୍ଗାର ହୋଇଛି ମୁଖ୍ୟରସ । ତାଙ୍କ ପ୍ରତିଟି କାବ୍ୟରେ ଶୃଙ୍ଗାରର ପରିପୂର୍ଣ୍ଣ ଚିତ୍ର ଅଙ୍କିତ ହୋଇଥିଲେ ସୁଦ୍ଧା ଚିତ୍ର ଭେଦରେ ତାରତମ୍ୟ ଲକ୍ଷଣୀୟ । 'ଲାବଣ୍ୟବତୀ' ଓ ରସିକ ହାରାବଳୀରେ ସମ୍ଭୋଗ ଶୃଙ୍ଗାର ସମ୍ପନ୍ନ ଅଥଚ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଏହା ସଂକ୍ଷିପ୍ତ । 'ସୁବର୍ଣ୍ଣରେଖା' ଓ 'ପ୍ରେମସୁଧାନିଧି'ରେ ପ୍ରବାସଜନିତ ବିପ୍ରଲମ୍ଭ ଶୃଙ୍ଗାର ବିସ୍ତୃତ କିନ୍ତୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ବିପ୍ରଲମ୍ଭ ପୂର୍ବାନୁରାଗ ପରେ ପ୍ରଦର୍ଶିତ । ଅନ୍ୟ କାଳ୍ପନିକ କାବ୍ୟଗୁଡ଼ିକରେ ପ୍ରାୟତଃ ଭାବୋଦୟ ଚିତ୍ର ଲୁପ୍ତ କିନ୍ତୁ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଏହା ପରିବ୍ୟାପ୍ତ । 'ରସଲେଖା' ଓ 'ଲାବଣ୍ୟବତୀ'ରେ ପୂର୍ବାନୁରାଗ ବିଶେଷ ଉପଜୀବ୍ୟ ଅଥଚ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଏହା ସୁସମୃଦ୍ଧ । ବସ୍ତୁତଃ ଉପେନ୍ଦ୍ରଙ୍କ କାଳ୍ପନିକ କାବ୍ୟ ସମୂହ ପ୍ରେମ ବୈଚିତ୍ର୍ୟରେ ସୁଷମାନ୍ୱିତ ।

ବର୍ଣ୍ଣ୍ୟମାନ କାବ୍ୟରେ ନାୟିକା-ମାନସୀ, ପ୍ରେମିକା ଓ ପ୍ରିୟା ରୂପରେ ପ୍ରତିଭାତ । ପ୍ରଥମ ଓ ଶେଷୋକ୍ତ ସ୍ୱରୂପଟି ସୂଚନାତ୍ମକ ହୋଇଥିଲାବେଳେ ପ୍ରେମିକା ସ୍ୱରୂପଟି ଚିତ୍ତାକର୍ଷକ । ପ୍ରକୃତିକୁ ପୃଷ୍ଠଭୂମି ବା ଉଦ୍ଦୀପନ ବିଭାବ ଭାବରେ ଗ୍ରହଣ କରି କବି ନାୟକ ନାୟିକାଙ୍କ ହାବ, ଭାବ, ସ୍ୱପ୍ନ, ସଂଶୟ, ବିରହ ମିଳନର ଯେଉଁ ସୁରୁଚିର ଅଙ୍କନ କରିଛନ୍ତି ତାହା ସ୍ୱକୀୟ କଳାବୈଭବରେ ମହିମାନ୍ୱିତ । କାବ୍ୟର ପ୍ରତିଟି ଅଂଶ ତଥା ସାମଗ୍ରିକ ରୂପ ରୂପପ୍ରାଣ, ଏକନିଷ୍ଠ ପ୍ରେମ ଉପାସକ କବି ଆଦର୍ଶର ବାହକ ହୋଇଛି । କାବ୍ୟର ଅଙ୍ଗୀ ଓ ଅଙ୍ଗମଧ୍ୟରେ ଆନୁପାତିକ ସଙ୍ଗତି ବା ସଂଯୋଜନ କୌଶଳ ଯଦି କାବ୍ୟ-ସୌନ୍ଦର୍ଯ୍ୟର ମୌଳିକ ଭିତ୍ତି ହୁଏ, ତେବେ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ଏକ ଶ୍ରେଷ୍ଠ କାବ୍ୟ । ବ୍ୟାପ୍ତି, ସଂହତି, ରସାପ୍ଳୁତି, ଆଦର୍ଶ ଓ ଔଚିତ୍ୟ-ନିକଷରେ ବିଚାର କଲେ ଏହା ଏକ ସାର୍ଥକ ମହାକାବ୍ୟ ।

କଥନ ଚାତୁରୀର କେତୋଟି ଦିଗନ୍ତ :—

ଉପେନ୍ଦ୍ର ତାଙ୍କର ପ୍ରତିଟି କାବ୍ୟରେ କଥକ ଭୂମିକାରେ ଅବତୀର୍ଣ୍ଣ । ତାଙ୍କ ପୂର୍ବବର୍ତ୍ତୀ ରଚନା 'ଶଶିସେଣା' (ପ୍ରତାପରାୟ) ଓ 'ପ୍ରେମଲୋଚନା'ରେ ଅନୁସୃତ ସମ୍ବାଦଶୈଳୀ ବା ପ୍ରଶ୍ନଶୈଳୀ ପରିବର୍ତ୍ତେ ସେ କେବଳ ପ୍ରକାଶ ଶୈଳୀକୁ ଅନୁସରଣ କରିଛନ୍ତି । ସେ ଆଶୀର୍ନମସ୍କ୍ରିୟା ପରେ 'ସୁବୁଦ୍ଧି' 'ସୁଜନ' 'ରସିକ' 'ଜନ'ଙ୍କୁ ସମ୍ବୋଧନ କରି କଥାବସ୍ତୁର ଅବତାରଣା କରିଛନ୍ତି । ସେ ସ୍ଥଳ-ବିଶେଷରେ କଥାଂଶର ବିଭିନ୍ନ ଭାବ— 'ଏ ଗୀତ ବର ବର୍ଣ୍ଣନା ବିଧି', 'ଚତୁର ବିଧି ଦର୍ଶନ ଚାତୁରୀ' 'ଲକ୍ଷଣ ସହିତ ସାହିତ୍ୟ ଏହି ଚିତ୍ତ ମୋହିତ'ର ସୂଚନା



Digitized by PPRACHIN, SOA

ପ୍ରଦାନ କରିଯାଇଛନ୍ତି । ଯେଉଁପରି ଭାବଗ୍ରହଣର ଆଦର୍ଶ ସମ୍ପର୍କରେ ବେଳେ ବେଳେ ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି— ଯଥା : 'ଘେନି ନୈଷଧ ପରିଏ, 'ଏ ଗ୍ରନ୍ଥେ । ଧ୍ୱନି କାକୁ-ଉକ୍ତି ରୂପକ' ଇତ୍ୟାଦି ।

କବି ସୁଧୀ, ନାନା ଶବ୍ଦ ବିଚକ୍ଷଣ, ପୁରାଣ ଅଭିଧାନବିଦ୍, ରସିକ ପଣ୍ଡିତଙ୍କୁ କାବ୍ୟଭୋକ୍ତା ବା ସହୃଦୟ ରୂପେ ଗ୍ରହଣ କରିଥିବାରୁ ସେମାନଙ୍କ ଚିତ୍ତ-ବିନୋଦନ ନିମିତ୍ତ ପାଣ୍ଡିତ୍ୟ ଓ ପ୍ରୌଢ଼ି ପ୍ରଦର୍ଶନ କରିଯାଇଛନ୍ତି । ଏହାହିଁ ଭଞ୍ଜଙ୍କର ପ୍ରଧାନ ଦୁର୍ବଳତା ରୂପେ ସ୍ୱୀକୃତ । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଏକବିଂଶ ଛାନ୍ଦର ଶୁକ-ସାରୀ ଉକ୍ତି ପ୍ରତ୍ୟୁକ୍ତି, ପଞ୍ଚବିଂଶ ଛାନ୍ଦରେ ଚ୍ୟୁତାକ୍ଷର ଭିତ୍ତିରେ ତିନୋଟି ପ୍ରଶ୍ନ ଓ ତିନୋଟି ଉତ୍ତର ଉପସ୍ଥାପନ, ନାୟକ-ନାୟିକାଙ୍କଠାରେ ପୁରାଣ ଓ ଦଶାବତାରର ଆରୋପ କଷ୍ଟକଳ୍ପନା ବା ପାଣ୍ଡିତ୍ୟ ପ୍ରଦର୍ଶନର ପରିଚାୟକ । ସ୍ଥଳବିଶେଷରେ ଏହି କଷ୍ଟକଳ୍ପନା ଓ ଶବ୍ଦ ବାଜି କଥାର ସ୍ୱଚ୍ଛନ୍ଦ ପ୍ରବାହ ଓ ଭାବବୋଧରେ ଅନ୍ତରାୟ ସୃଷ୍ଟି କରିଛି; ତାହା କହିବା ନିଷ୍ପ୍ରୟୋଜନ । ଏହି ଯୁଗୀୟ ଆଦର୍ଶର ଗଡ୍ଡଳିକା ପ୍ରବାହରେ କେବଳ ଭଞ୍ଜ ନୁହନ୍ତି ଅଭିମନ୍ୟୁ, ଯଦୁମଣି, ବ୍ରଜନାଥ ପ୍ରଭୃତି କବିମାନେ ଆଗେଇଛନ୍ତି । ସେହିପରି ଅତିକଥନ ଓ ଅତିରଞ୍ଜନ ଭଞ୍ଜୀୟ କଥନ ଶୈଳୀର ବୈଭବ ଏବଂ ବୈଫଲ୍ୟ । ମନେହୁଏ ଏହା ଓଡ଼ିଆ କବିର ଜାତୀୟ ବୈଶିଷ୍ଟ୍ୟ ଓ ଦୌର୍ବଲ୍ୟ । ଯେ କୌଣସି ସଚେତନ ପାଠକ ସାରଳା, ବଳରାମ, ଅଭିମନ୍ୟୁ ଏପରିକି ଆଧୁନିକ କଥାକାର ଫକୀରମୋହନ ଓ ଗୋପୀନାଥଙ୍କ ସୃଷ୍ଟିରୁ ଏହା ଉପଲବ୍ଧି କରିପାରେ । ଏଣୁ ଏଥିପାଇଁ ଭଞ୍ଜଙ୍କୁ ଦାୟୀ କରିବା କେତେଦୂର ସମୀଚୀନ ତାହା ବିଚାର୍ଯ୍ୟ ।

କବି ଧର୍ମଭୀରୁ ଓଡ଼ିଆ ପାଠକର ରୁଚି ଅନୁଯାୟୀ ପୌରାଣିକ ଶୈଳୀ ଓ ଅଲୌକିକତାର ଆଶ୍ରୟ ନେଇଛନ୍ତି । ସେ କଥାବସ୍ତୁକୁ ବିଶ୍ୱାସଯୋଗ୍ୟ କରିବାକୁ ସର୍ବଦା ସଚେତନ ଥିଲାପରି ମନେହୁଏ । ଶୁକ-ସାରୀଙ୍କ କଥୋପକଥନ ଏକ ଅସମ୍ଭବ ବ୍ୟାପାର । କବି ଏ ପ୍ରସଙ୍ଗକୁ ବିଶ୍ୱାସଯୋଗ୍ୟ କରିବା ପାଇଁ କହିଛନ୍ତି— ''ପକ୍ଷୀ କଥା କହିବା ପୂର୍ବେ ସମ୍ଭବ ହୋଇଥିଲା ।'' ହଂସ ଦୂତରୂପେ ନଳ-ଦମୟନ୍ତୀ ଓ କାମ-ପ୍ରଭାବତୀ ମଧ୍ୟରେ ମିଳନ ଘଟାଇଥିଲେ । ଅନ୍ୟ ଏକ ଦୃଷ୍ଟାନ୍ତ ରୂପେ ରାଜ-କୁମାର କୁମାରୀଙ୍କ ବିବାହ ପୂର୍ବର ଜ୍ୟୋତିଷ ଚର୍ଚ୍ଚାକୁ ନିଆଯାଇପାରେ । କବି ପାଣ୍ଡିତ୍ୟ ପ୍ରଦର୍ଶନ ପାଇଁ ହେଉ ବା ସାରଳା ପ୍ରବର୍ତ୍ତିତ ପରମ୍ପରାରେ ହେଉ ନାୟକ-ନାୟିକାଙ୍କ ଜାତକ ଆଲୋଚନା କରାଇଛନ୍ତି । ଏହାର ପ୍ରାସଙ୍ଗିକତା ଦର୍ଶାଇବାକୁ ଯାଇ ପୁଷ୍ପକେତୁର ସଖା ଯଶୋବନ୍ତ ପ୍ରଶ୍ନ କରନ୍ତି— ରାଜକୁମାର



Digitized by PPRACHIN, SOA

ଚନ୍ଦ୍ରମୃଗଗ୍ରହମର ଛେଦନ କରି ପଣରକ୍ଷା କରିଛନ୍ତି, ତେଣୁ କାଉକମେଳଙ୍କ ଅବାନ୍ତର। ଏହାର ଉତ୍ତରରେ ଗଣକ କହୁଛନ୍ତି ବିଭ୍ରଯୋଗ ନିର୍ଣ୍ଣୟ ପାଇଁ ଏହାର ଆବଶ୍ୟକତା ରହିଛି।

'ତ୍ରୁଟିଶୂନ୍ୟ କାବ୍ୟ ଏକାନ୍ତ ଅସମ୍ଭବ।' ଦୋଷ ତ୍ରୁଟି ସତ୍ତ୍ୱେ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ଏକ ଶ୍ରେଷ୍ଠ କାବ୍ୟ। କେବଳ ଅଭିବ୍ୟକ୍ତି ଚମତ୍କାରିତା, କମନୀୟ କଳ୍ପନାବିଳାସ ଦୃଷ୍ଟିରୁ ନୁହେଁ; କଥା ଓ କଥାନକର ସୁସଂହତ ବିନ୍ୟାସ ନାଟକୀୟତା, ବିଶ୍ୱାସଯୋଗ୍ୟ ଉପସ୍ଥାପନା, ବିଷୟ ବୈଚିତ୍ର୍ୟ ଓ ଔଚିତ୍ୟବୋଧ ଦୃଷ୍ଟିରୁ ଏହା ଏକ ମହାକାବ୍ୟ ଏବଂ ଉପେନ୍ଦ୍ର ଜଣେ ପ୍ରତିଭାବାନ୍ କବି ତଥା କଥାକାର।



ଅଧ୍ୟାପକ,
ଓଡ଼ିଆ ଭାଷା ସାହିତ୍ୟ ବିଭାଗ
ଖଲ୍ଲିକୋଟ କଲେଜ, ବ୍ରହ୍ମପୁର - ୭୬୦୦୦୧।



Digitized by PPRACHIN, SOA

## ।। କବି-ପ୍ରଜାପତି ଉପେନ୍ଦ୍ର ଓ ପବିତ୍ର ଦାମ୍ପତ୍ୟ ପ୍ରୀତିର ସୁନ୍ଦରୀ ।।

—ଅଧ୍ୟକ୍ଷ ପ୍ରାଧ୍ୟାପକ ଲକ୍ଷ୍ମଣକୁମାର ପରିଡ଼ା

କବିମାନଙ୍କ ସଂପର୍କରେ ଅଗ୍ନିପୁରାଣରେ (୧) କୁହାଯାଇଛି ଯେ କାବ୍ୟ ହେଉଛି ଗୋଟିଏ ଅନନ୍ତ ଅପାର ସଂସାର ଏବଂ ଏକମାତ୍ର କବି ସେଇ ସୁନ୍ଦର ସଂସାରରେ ପ୍ରଜାପତି ବା ସ୍ରଷ୍ଟା । ସୁତରାଂ କବି-ପ୍ରଜାପତିର ମନକୁ ଏ ବିଶ୍ୱ ଯେଭଳି ରୁଚିକର ହୁଏ, ତାହାଦ୍ୱାରା ତାର ସୃଷ୍ଟି ସେପରି ପରିବର୍ତ୍ତିତ ହୋଇଥାଏ । ବିଶ୍ୱସ୍ରଷ୍ଟା ବିଶ୍ୱ ବିଧାତାଙ୍କ ବିଚିତ୍ର ବିଧାନରେ କେବଳ ଗଗନରେ ଚନ୍ଦ୍ର ଅବସ୍ଥାନ କରେ, କିନ୍ତୁ କବି-ପ୍ରଜାପତି ଜଳରେ, ସ୍ଥଳରେ, ଗଗନରେ, ପବନରେ ଏପରିକି ଶୂନ୍ୟରେ ବି ଚନ୍ଦ୍ରର ସ୍ଥାପନା କରିପାରେ । କବି ବିଧାତା ସୃଷ୍ଟିର ସମସ୍ତ ବସ୍ତୁକୁ ଇଚ୍ଛାନୁସାରେ ବର୍ଣ୍ଣନା କରିପାରନ୍ତି । ପ୍ରକୃତିର ଅଧୀନ ହେବାକୁ ସେ ବାଛନ୍ତିନାହିଁ ।

କବି ପ୍ରଜାପତିର ଅଦ୍ଭୁତ ଶକ୍ତି । ସେ ଚେତନକୁ ଅଚେତନ ଓ ଅଚେତନକୁ ଚେତନରୂପେ ବର୍ଣ୍ଣନା କରିପାରେ । ସେ ସ୍ୱୀୟ ଇଚ୍ଛାଶକ୍ତିରେ ପରିଚାଳିତ ହୋଇ ତା ସଂସାରରେ ସବୁକିଛି ସୃଷ୍ଟି କରିପାରେ । ସତକୁ ମିଛ,ମିଛକୁ ସତ, ବାସ୍ତବକୁ ଅବାସ୍ତବ, ଅବାସ୍ତବକୁ ବାସ୍ତବ, ସରସକୁ ନୀରସ ଓ ନୀରସକୁ ସରସ କରି ତୋଳିପାରେ । ତୃଣଶୂନ୍ୟ ମରୁକାନ୍ତାରକୁ ଶସ୍ୟ ସାମଳା କରିପାରେ କବିତ୍ୱର ଚାତୁରୀରେ । (୨)

---

୧) ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ
ଯଥା ବୈ ରୋଚତେ ବିଶ୍ୱଂ ତଥେଦଂ ପରିବର୍ତ୍ତତେ
—ଅଗ୍ନି ପୁରାଣ-କାବ୍ୟଶାସ୍ତ୍ରଭାଗ—୩/୧୦

୨) କବି ସେ ସତ ମିଛ କରି କହନ୍ତି ।
କବିତ୍ୱ ଚାତୁରୀରେ ମନ ମୋହନ୍ତି । (ରସ କଲ୍ଲୋଳ-୨୦/୧୫)

।। ହେମନ୍ତଚରିତ ।।

Digitized by PPRACHIN, SOA

କବି କୁବେରର ପରି କୁତ୍ସିତ ପୁରୁଷକୁ କୋଟି କାମର କାମ, କନ୍ଦର୍ପ ପରି ସୁନ୍ଦର ପୁରୁଷକୁ ମଧ୍ୟ ଅସୁନ୍ଦର ରୂପେ ବର୍ଣ୍ଣନା କରିପାରେ । (୩) ସୌରଭାଦି ଅସାଧାରଣ ଧର୍ମକୁ ଯେ ନିୟମିତ କରେ ସେ ହେଲା ନିୟତି । ତତ୍‌କୃତ ନିୟମ ହେଲା ଯେଉଁଠାରେ ପଦ୍ମ ସେହିଠାରେ ସୌରଭ; କିନ୍ତୁ କବି ସୃଷ୍ଟିରେ କାନ୍ତା ମୁଖ ପଦ୍ମରେ (୪) ସୌରଭ ସଞ୍ଚିତ । ଏଣୁ କବି ରଚନା ହେଉଛି ନିୟତି କୃତ ନିୟମ ରହିତ । (୫) ବାସ୍ତବରେ ନିୟତି କୃତଠାରୁ କବି କୃତ ଅଧିକ ଆନନ୍ଦପ୍ରଦ । ଏଥିରୁ ସ୍ପଷ୍ଟ ହୁଏ ଯେ କବିମାନେ କଣ ବା ନ ଦେଖନ୍ତି, କଣ ବା ବର୍ଣ୍ଣନା ନକରନ୍ତି । (୬) ଏ ସଂସାରରେ ମନୁଷ୍ୟ ଜନ୍ମ ଲାଭ କରିବା ଦୁର୍ଲଭ । ମନୁଷ୍ୟ ଜନ୍ମଲାଭ କରି ବିଦ୍ୱାନ୍ ହେବା ଅତି ଦୁର୍ଲଭ । କବି ହେଲେ ମଧ୍ୟ କବିତା ରଚନାର ଶକ୍ତି ସମସ୍ତଙ୍କର ନଥାଏ । ତେଣୁ କବିତ୍ୱ ପ୍ରତିଭା ଲାଭ କରିବା ବ୍ୟକ୍ତି ଅତି ବିରଳ । (୭)

ଏସବୁ ଦୃଷ୍ଟିରୁ ଭଞ୍ଜଙ୍କ କାବ୍ୟ ସମୂହକୁ ଆଲୋଚନା କରାଯାଉ । ସୁଭଦ୍ରା ପରିଣୟ କାବ୍ୟରେ କବି ସୁଭଦ୍ରାଙ୍କର ମୁଖର ଶୋଭାକୁ ଏକ କାର୍ତ୍ତିନାଶା ରୂପେ ପରିକଳ୍ପନା କରି (ମୁଖର ଉପମା) ଚନ୍ଦ୍ର ଉପରେ କୁଠାରାଘାତ କରିଛନ୍ତି । (୮) କବିଙ୍କର ଏ ସୃଷ୍ଟି ଚନ୍ଦ୍ରକଳଙ୍କର ପୌରାଣିକ ଆଖ୍ୟାନ । ବୈଜ୍ଞାନିକ ସତ୍ୟତାକୁ

---

୩) କବି ବଚନେ କରେ ତାରମେ । କୁବେରକୁ ବୋଲନ୍ତି କୋଟି କାମ ।
କଉଠାରେ କନ୍ଦର୍ପ ହୋଏ ନିନ୍ଦା । କେତେ କହିବି ତାଙ୍କ ମିଛ ଫନ୍ଦା ।
(ରସ କଲ୍ଲୋଳ-୩/୫୫)

୪) ବାସ ଚହଟି ଅଙ୍ଗୁ ଯାଉଥିଲା । ବେଢ଼ିଥିଲେ ରଥେ ଭ୍ରମରମାଳା ।
(ବୈ— ୩୧/୪)

୫) ନିୟତି କୃତ ନିୟମ ରହିତାମ୍ (କାବ୍ୟ ପ୍ରକାଶ ପ୍ରଥମ ଉଲ୍ଲାସ)

୬) କବୟଃ କିଂ ନ ପଶ୍ୟନ୍ତି । (ଶ୍ଳୋକମାଳା ୧ମ ୧୧୪)

୭) ନରତ୍ୱଂ ଦୁର୍ଲଭଂ ଲୋକେ ବିଦ୍ୟା ତତ୍ର ସୁଦୁର୍ଲଭା ।
କବିତ୍ୱଂ ଦୁର୍ଲଭଂ ତତ୍ର ଶକ୍ତିସ୍ତତ୍ର ଚ ଦୁର୍ଲଭା ।
(ଅଗ୍ନି ପୁରାଣ-କାବ୍ୟାଦି ଲକ୍ଷଣ-୧/୪)

୮) ସୁମୁଖୀ ଲପନ ଶୋଭା କାର୍ତ୍ତିନାଶୀ ହେଲା
ସୁମନପୁର ପଙ୍କିଲ ପଥେ ଯାଉଥିଲା ଯେ ।
ସୋପାନ ବିଗ୍ରହ ଶ୍ରେଣୀ ପରେ ପାଦ ଦେଲା
ସେ ପଙ୍କ କଳଙ୍କ ହୋଇ ଅଙ୍କରେ ରହିଲା ଯେ । ୫୮ ।
(ସୁଭଦ୍ରା ପରିଣୟ— ୧/୫୭-୫୮)



Digitized by PPRACHIN, SOA

ବିଫଳୀକୃତ କରି କବି ସୃଷ୍ଟିର ସ୍ଵାତନ୍ତ୍ର୍ୟ ରକ୍ଷା କରିଛୁ । ପୁଣି କବି ସୁଭଦ୍ରାର ସିନ୍ଦୂରବିନ୍ଦୁ ଓ ଚନ୍ଦନ ଚିତାରେ ସୂର୍ଯ୍ୟ ଓ ଚନ୍ଦ୍ରର ସ୍ଥିତି ଏକତ୍ର କଳ୍ପନା କରି ବିଧି ସୃଷ୍ଟିର ବିଡ଼ମ୍ବନା ପ୍ରତିପାଦିତ କରିଛନ୍ତି । (୯) ଫୁଲରୁ ଫୁଲ, ପକ୍ଷୀରୁ ପକ୍ଷୀ, ଏବଂ ଫଳରୁ ଫଳ ସୃଷ୍ଟି କରିବା ଯାହା ବିଧାତାଙ୍କ ପକ୍ଷରେ ସମ୍ଭବ ନୁହେଁ (୧୦) କବି ଉପେନ୍ଦ୍ର ସୁଭଦ୍ରାଙ୍କ ଅଙ୍ଗରେ ମୁଖକୁ ପଦ୍ମ, ହାସକୁ କୁମୁଦ,ନେତ୍ରକୁ ଚକୋର, କଟାକ୍ଷକୁ ଖଞ୍ଜନ, ସ୍ତନକୁ ବିଲ୍ୱ, ଚିବୁକକୁ ଗୁବାକ କଳ୍ପନାରେ ନିଜର ସୃଷ୍ଟି ବୈଚିତ୍ର୍ୟ ପ୍ରତିପାଦନ କରିଛନ୍ତି । ଏହା ବିଧି ସୃଷ୍ଟିର ବାହାରେ । କେବଳ କବି ସୃଷ୍ଟିରେ ସମ୍ଭବପର ହୋଇପାରେ । ପୁଣି ସୁଭଦ୍ରାଙ୍କ ଶରୀରରେ ସାତଜାତି ଫୁଲ(୧୧) ସାତଜାତି ଫଳ ଓ ସାତଜାତି ପକ୍ଷୀର ଏକତ୍ର ସମନ୍ୱୟ ଉପେନ୍ଦ୍ର ସୃଷ୍ଟି ଜଗତର ନିୟମ ଲଙ୍ଘନ କରି, କବି ସୃଷ୍ଟିର ବୈଚିତ୍ର୍ୟ ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ଅସମ୍ଭବ୍ୟରେ ସମ୍ଭବ୍ୟ ପ୍ରତିଷ୍ଠା କରେ ।

ଏହିପରି ସୃଷ୍ଟି ବୈଚିତ୍ର୍ୟ ତାଙ୍କ ଲାବଣ୍ୟବତୀ କାବ୍ୟରେ ଦେଖାଯାଏ । ନବବନିତାରୂପୀ ଯେଉଁ ପୁଷ୍ପଲତା ତାହା ଅପୂର୍ବ । ସେଥିରେ ତିଳଫୁଲ [ନାସା], କୁନ୍ଦକଳି (ଦନ୍ତ), ରକ୍ତପଦ୍ମ (କର), ନୀଳପଦ୍ମ (ନେତ୍ର), ଶ୍ଵେତପଦ୍ମ (ମୁଖ), ସ୍ଥଳପଦ୍ମ (ପାଦ),କୁମୁଦ (ହାସ),ବନ୍ଧୁଳୀ (ଅଧର), ପାଟଳୀ (କଣ୍ଠ), ନିଆଳୀ(ନଖ), ଚମ୍ପା (ଅଙ୍ଗୁଳି), ଶିରୀଷ ଫୁଲ (କୋମଳାଙ୍ଗ), ଉତ୍ପଳ (ଅଙ୍ଗସୌରଭ), ଶୋଣ

---

୯) ସିନ୍ଦୂରବିନ୍ଦୁ ଚନ୍ଦନ ଚିତାରେ । ସୂର୍ଯ୍ୟ ଚନ୍ଦ୍ରଙ୍କୁ ଦେଖି ଏକଠାରେ ।
(ସୁଭଦ୍ରା- ୬/୫)

୧୦) ସୁମନୁ ସୁମନ ପକ୍ଷୀଠାରୁ ପକ୍ଷୀ ଫଳରୁ ଫଳ କରେ ଜାତ ।

୧୧) ସବଂପୁରେ ଯାଇଁ ପବଂତ କହିଲେ ମଣିଜାତ ହେମ ମଞ୍ଜରୀ
ସୁଗନ୍ଧବତୀ ଶ୍ରୀଇଚ୍ଛାରେ ଚକିତ ପତ୍ରାବଳୀରେ କି ମାଧୁରୀ
ମଫୁଲ, ତହିଁ ପୁଣି ଫୁଲ ଏତେକେ
ସରୋରୁହ, ଚମ୍ପା, କୁମୁଦ, ପାଟଳୀ, ନିଆଳୀ, ଶିରସ, ଅଶୋକ
ସଫଳ, ଆମ୍ବ, ଡ଼ାଳିମ୍ବ, ବିମ୍ବ, ଦ୍ରାକ୍ଷା, ରମ୍ଭୀ, ନାରଙ୍ଗ, ମାତରଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ଶୁକ କପୋତ ହଂସ ସଙ୍ଗ
ସ୍ୱରୂପେ, ମହା ଅଦ୍ଭୁତ କଥା ଏହି
ସପତ ଜାତି ଫଳ ଫୁଲ ବିହଙ୍ଗ ଲତାକେ ଥିବା ଶୁଣାନାହିଁ । (ସୁଭଦ୍ରା ୪/୮)

॥ ଶବ୍ଦେଅଣଗୃଳଣ ॥

Digitized by PPRACHIN, SOA

(ପାଦାଙ୍ଗୁଳି) ମନ୍ଦାର (ପାଦତଳପା) ଆଦି ଝୋଲକାଠି ଫୁଲ (୧୨) ସମାବେଶ ବିଶ୍ୱସ୍ରଷ୍ଟାଙ୍କ ନିୟମ ବାହାରେ । ତଥାପି କବି ନିଜ ସୃଷ୍ଟିର ନିପୁଣତା ପ୍ରତିପାଦନ କରି ସ୍ୱୀୟ କଳ୍ପନାବିଳାସର ପରିଚୟ ଦେଇଛନ୍ତି । ପ୍ରେମ ସୁଧାନିଧି କାବ୍ୟ ଏଥିରୁ ବ୍ୟତିକ୍ରମ ନୁହେଁ । କବି ସର୍ବମତ ସମର୍ଥ ଓ କଥାରେ ଅଦ୍ଭୁତୋପମା ମାଧ୍ୟମରେ ବିପରୀତ ଭାବର ସୂଚନା ଦେଇ ନିଜ ସୃଷ୍ଟିର ଚମତ୍କାରିତା ପ୍ରତିପାଦନ କରିଛନ୍ତି । ଏପରି ଚନ୍ଦ୍ରାବଧି ସୃଷ୍ଟିର ବାହାରେ । ପୁଣି ନାୟିକାର ଅଙ୍ଗରେ ପରସ୍ପର ବିରୋଧୀ ଭାବର ପରିକଳ୍ପନା ନିୟତି କୃତ ନିୟମ ରହିତ ଅନୁପମ ଦୃଷ୍ଟାନ୍ତ ବାହାରେ । (୧୩)

ବର୍ତ୍ତମାନ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟକୁ ଆଲୋଚନା କରାଯାଉ । ବ୍ରହ୍ମାଣ୍ଡ ଗୋଟିଏ ତାକୁ କୋଟିଏ କରିବାର ବିଧି ସୃଷ୍ଟିଠାରୁ କବି ସୃଷ୍ଟି ବାହାଦୂରୀ ତାରିଫ ନକରି ରହିହୁଏନାହିଁ । ପୁଣି ବ୍ୟତିରେକ ଅଳଙ୍କାର ମାଧ୍ୟମରେ କବି ସୃଷ୍ଟିର ଯାବତୀୟ ଉପମାନର ଅପକର୍ଷ ସାଧନ କରେ । ରତ୍ନଦୀପ୍ତ ପାଟଳିପୁତ୍ର ନଗରୀ ପ୍ରଭାରେ ସୂର୍ଯ୍ୟ ହୀନ ପ୍ରଭ ହୋଇଉଠେ । ଅତ୍ୟୁଚ୍ଚ ପ୍ରାସାଦୋପରି ଉପବେଶନ କରିଥିବା ନାରୀମାନଙ୍କର ମୁଖ ସହିତ ଚନ୍ଦ୍ର ତୁଳନାରେ ସମକକ୍ଷ ନହୋଇ ପାରଦହୀନ ଦର୍ପଣପରି ଶୋଭାପାଏ । ୧୪ ।

---

୧୨) ନବବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଝୋଲକାଠି ଫୁଲ
ଥଳପୁଷ୍ପ କୁନ୍ଦ ଗୃହ କମଳ ।
କୁମୁଦ ବଧୂଲୀ ପାଟଳୀ ନିଅଳୀ ଚମ୍ପା ଶିରୀଷ ଉତ୍ପଳରେ ।
ସୁନ୍ଦରି ! ଶୋଣ କୁସୁମ ଅଶୋକ ମନ୍ଦାର
ଭୋଷି ଭୃଙ୍ଗ ମୁଁ ଚୁମ୍ବନେ ଆତୁର । (ଲାବଣ୍ୟବତୀ—୧୩/୧୪)
୧୩) ସର୍ବ ମତରେ ଜନମତ ଏମନ୍ତ ପର୍ବତ ପରେ, ଜାତ ଲତା
ଲତାରୁ ଏବେ ପର୍ବତ ଜାତ ହେଲା ଗୃହି କର୍ମିବେ ଉର୍ଦ୍ଧ୍ୱରେତ
ତାହା ଶୋଭତା । ଦେଖି କେ ନୋହିବ ଲୋଭତା ।
କଣ୍ଠପରେ ହରି ହରି ପରେ କରୀ ଚଢ଼ାଇଲା ଏବେ ବନିତା ।
୧୪) କୁଚ ଗୃହି କଚ କମ୍ପନ ହେଉଛୁ କଚ ଗୃହି କୁଚ କମ୍ପନ
ନୟନ ଲୋକନେ କରି ଭୟବଶ ତ୍ରରେ କଟି ଦେଖି ନୟନ
ଅଛୁ ଆତୁର । ସେ ଅଙ୍ଗେ ଆଶ୍ଚର୍ଯ୍ୟ ଅନେକ ।
ଭୁଜ ଗୃହି ଚଟକୋତର ହେଉଛୁ ଚଟ ଗୃହି ଭୁଜ କାତର ।
ଚନ୍ଦ୍ରରେ କଳେବର ନିଷ୍ଟେ ନର୍ମିତ,
ଦ୍ୱିତୀୟା, ଚତୁର୍ଥୀ, ଅଷ୍ଟମୀ, ପୂର୍ଣ୍ଣମୀ ଚନ୍ଦ୍ର ଏକାବେଳେ ଉଦିତ ।
[କୋଟି— ୨୩/୧୧]

॥ ହେଉଳିଶ ॥

Digitized by PPRACHIN, SOA

ବିଧାତା ସୃଷ୍ଟିରେ ଦ୍ୱିତୀୟ ଚନ୍ଦ୍ର [ଚିବୁକରେ], ଚତୁର୍ଥୀ ଚନ୍ଦ୍ର [ଗଣ୍ଡରେ], ଅଷ୍ଟମୀ ଚନ୍ଦ୍ର [ଭାଲରେ] ଓ ପୂର୍ଣ୍ଣିମାଚନ୍ଦ୍ର [ମୁଖରେ] ବିଭିନ୍ନ ତିଥିରେ ଭିନ୍ନ ଭିନ୍ନ ସମୟରେ ଉଦିତ ହୋଇଥାନ୍ତି । ମାତ୍ର କବି ସୃଷ୍ଟିରେ ତାହା ନାୟିକାର ଚିବୁକ, ଗଣ୍ଡ, ଭାଲ ଓ ମୁଖରେ ଏକତ୍ର ସମ୍ଭବପର ହୋଇପାରିଛି । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଅଙ୍ଗକୁ ମଙ୍ଗଳପ୍ରଦ ଭାବେ ପରିକଳ୍ପନା କରି ବିଭିନ୍ନ ଅବୟବରେ ଯେଉଁ ମଙ୍ଗଳ ବସ୍ତୁର ଆରୋପ କରିଛନ୍ତି, ତାହା ଅନୁପମ । ହାସରେ [ଦଧି],ନୟନରେ [ମତ୍ସ୍ୟ] ଗତିରେ [ହଂସ], କଣ୍ଠରେ [ପାରାବତ], ଊରୁ ଦ୍ୱୟରେ [ଓଲଟା କଦଳୀ ବୃକ୍ଷଦ୍ୱୟ ,ସ୍ତନରେ [କୁମ୍ଭ], ଚୂଚୁକରେ [ଗୁଆ], ଅଧରରେ [ପଲ୍ଲବ], ଉଚ୍ଛନ୍ନତାରେ [ବ୍ରାହ୍ମଣ], ଦନ୍ତରେ [ତଣ୍ଡୁଳ] ଓ ସ୍ୱର୍ଣ୍ଣାଳଙ୍କାରରେ [ଦୁର୍ବାଙ୍କୁର]ର ଆରୋପ କରି ସମସ୍ତେ ମଙ୍ଗଳକାରୀ ବସ୍ତୁର ସମନ୍ୱୟରେ ନାୟିକାକୁ ଏକ ମଙ୍ଗଳମୟୀ ନାରୀ ରୂପେ କଳ୍ପନା କରିଛନ୍ତି । ୧୫ ।

ପୁଣି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଠାରେ ନର୍ମଦା, ଗଙ୍ଗା, କାଳିନ୍ଦୀ, କୃଷ୍ଣାବେଣୀ, ଚନ୍ଦ୍ରଭାଗା, ସରସ୍ୱତୀ ଓ ବାହୁଦା ନଦୀର ପରିକଳ୍ପନା କବି ସୃଷ୍ଟିର କଳ୍ପନା ରକ୍ଷାକରେ । ୧୬ ।

---

୧୫) ଜ୍ୟୋତିଷ ଗ୍ରନ୍ଥେ ଯେ ସଙ୍ଗେ ଥିଲି ହୋଇଲି ଅନୁକୂଳ ବୋଇଲି
ସୁନ୍ଦରୀ ଅଙ୍ଗମାନ ଧାର୍ଯ୍ୟିଲି ଶୁଭ ପ୍ରଧାନ ଯେ
ହାସ ନୟନ ଶୁଣିଲି କ୍ଷଣି ଗୋପୀ ଧୀବରୀ ଡାକିଲେ ପୁଣି
ପାରାବତ ସମତ୍ୱ ହଂସ ଗୃକବା ଯେ,ଦଣିଯାଉ ପୁଲକ ମନ୍ଦ ସେ ଯୁବା ଯେ
ସୁମରୁଁ ଊରୁ କଦଳୀ ତରୁ ଦିଶେ ଦିଶେ ଯାମଳ ଓଲଟା ଊରୁ
ଦଶା ପାଲଟି ହେଲି ବିଗୁରୁ ମହା ଉତ୍ସବ । ଯେ ।
ଲକ୍ଷିତ ଉଚ୍ଚ ଶୋଭଏ ଦେଖା ସ୍ତନ ଚୂଚୁକ ଅଧର ଯୋଖା ।
କୁମ୍ଭେ କି ପୂଗ ପଲ୍ଲବ ଶାଖା ସ୍ଥାପି ତତ୍କାଳେ ସେ
ଉଚ୍ଛନ ଦ୍ୱିପ ବରଣ ଯେଣୁ ହେଲା ମଙ୍ଗଳା ରୋପଣ ତେଣୁ
କୋମଳ ନବନୀତ ପ୍ରମାଣୁ ଦନ୍ତ ତଣ୍ଡୁଳ ଯେ,
ଦୂର୍ବାଙ୍କୁର । ସୁବର୍ଣ୍ଣାଲଙ୍କାର ଦୃଷ୍ଟ୍ୟ ଯେ । ହୁଏ ସୁକର୍ମ
ମୁଖେ ଦର୍ପଣ ଦୃଷ୍ଟି ରଚନା , ଶୋଭିଲି ଅତିଶୟେ ପ୍ରକାଶ ଗୋ ।
ବାଣୀ ମଙ୍ଗଳାଷ୍ଟକ ଭାବନା କରେ ମାନସ ଯେ ।

[କୋଟି— ୧୬/୧୧-୧୨]

॥ ଶବ୍ଦେଏକସ୍ଥଳଶ ॥

Digitized by PPRACHIN, SOA

କୌଶିକୀ ନଦୀ ତଟବର୍ତ୍ତୀ ଅରଣ୍ୟରେ ବିଭିନ୍ନ ବୃକ୍ଷ ଓ ବ୍ରଜଲୀଳାର ଆରୋପ କରି କବି ନିଜର ପ୍ରତିଭା ଓ ରୀତି ଭଣ୍ଡାର ଉପରେ ଦଖଲ ଥିବା ବିଷୟ ଦର୍ଶାଇଛନ୍ତି । ବ୍ରଜଲୀଳାରେ, ଶ୍ରୀକୃଷ୍ଣ, ରାଧା, ଲଳିତା, ବିଶାଖା ପ୍ରଭୃତି ଅଷ୍ଟସଖୀ ଓ ବାର ମଞ୍ଜରୀ ଉପସ୍ଥିତ ଥାଆନ୍ତି । ଏଠାରେ କବି ଅତି ସୁନ୍ଦରରେ [ରୁଚି ରାଧିକା], ଚନ୍ଦନ ବୃକ୍ଷରେ [ଚନ୍ଦ୍ରାବଳୀ], କାଞ୍ଚି ବୃକ୍ଷରେ [ଇନ୍ଦୁରେଖା], ଚିତା ବୃକ୍ଷରେ [ଚିତ୍ରା], ଫଣିକଣା ବୃକ୍ଷରେ [ସୁଦେବୀ], ପୁନ୍ନାଗ ବୃକ୍ଷରେ [ତୁଙ୍ଗ]' ଅପରାଜିତାରେ [ବିଦ୍ୟା], ଗଙ୍ଗଶିଉଳୀରେ [ରଙ୍ଗଦେବୀ], ଚମ୍ପକରେ [ଚମ୍ପକଲତା], ମଧୁସଦନରେ [ଭ୍ରମର], ଲତା ସମୂହରେ [ମଞ୍ଜରୀବର]. କୁଆମହୁଆରେ [ଗୋପୀ], ଧନୁରାରେ [ମଦନ], ରନ୍ଧ୍ରଯୁକ୍ତ ବାଉଁଶରେ [ବେଣୁ], ପୁଷ୍ପର ସୁନ୍ଦର ମାଳାରେ [ସୁଦାମ] ପ୍ରଭୃତି ଆରୋପ କରି ବ୍ରଜଲୀଳା ପରିକଳ୍ପନା କବି ମସ୍ତିଷ୍କର ଭିନ୍ନତା ପରିପ୍ରକାଶ କରିବା ସଙ୍ଗେ ସଙ୍ଗେ ତାର ସୃଷ୍ଟି ସୌନ୍ଦର୍ଯ୍ୟର ପରିଚୟ ଦିଏ । ୧୭ । ପୁଣି ନାୟିକାଠାରେ ବିଷ୍ଣୁଲୀଳା, ରାମଲୀଳା ଓ ସ୍ତବରେ ମହାଭାରତ ଯୁଦ୍ଧର ଉତ୍ପାତାଦି

---

୧୬) କରି ଯାଉଅଛୁ ସେ ନାଗର ଏହି ସ୍ତବ
ହେ କାଳେ ନର୍ମଦା ସୁର ତରଙ୍ଗିଣୀ ଭାବଯେ
କାଳିନ୍ଦୀ ରୁଚିର କୃଷ୍ଣବେଣୀ ପୁଣି ଲକ୍ଷି
ଚନ୍ଦ୍ରଭାଗା କି ଶୋଭି ଚିତ୍ର ଉତ୍ପଳାକ୍ଷୀ ଯେ
ହୋଇଥିବ ଯୁକ୍ତ ତେସ ସରସ୍ୱତୀ ସଦା
କରତ ପବିତ୍ର ହୋଇ ବାରେ ବାହୁଦା ଯେ
ତୀର୍ଥମୟ କଳପନା ମୋ ଆନ ନକରେ
ବୋଲି ଆଉ ଗୃହୁଁ କହିବାକୁ ଯୋଡ଼ୁଁ କର । [କୋଟି— ୧୫,୯-୧୬]

୧୭) ଶୁଣରେ ରୁଚି ରାଧିକା ଚନ୍ଦ୍ରବଳି ବିରାଜିତ ଅନୁପମରେ
କୁଞ୍ଜରେ ଲଳିତା ବିଶାଖା କ୍ରୀଡ଼ିତ ଇନ୍ଦୁରେଖା ଚିତ୍ରାରମ୍ୟରେ ।
ଅଛୁ ସୁ ଦେବୀ । ପୁଣି ତୁଙ୍ଗ ବିଦ୍ୟା ନିପୁଣେ
ଭାବନ୍ତି ରଙ୍ଗଦେବୀ ଚମ୍ପକଲତା ମଧୁସୂଦନର ଭ୍ରମଣେ ।
ମଞ୍ଜରୀ–ବାର ଯେବତ ନିରନ୍ତର ଅଶେଷ ଗୋପରେ ସେ ଶୋଭେ
ମଦନ ତହିଁ ମୂର୍ତ୍ତିମନ୍ତ ହୋଇଛୁ ଦଇବେ ବେଣୁ ଧ୍ୱନି ଶୁଭେ
ଆତ୍ମ ପ୍ରବେଶେ । ସୁମନ ସୁଦାମ ହୋଇବ
କଙ୍କଣୀ ପ୍ରବଳ ବଳ ହୋଇ କରି ନାନା ବିଳାସ ପ୍ରକଟିବ ।
(କୋଟି— ୧୦/୭-୮)

॥ ଶବ୍ଦ ବିଦ୍ୟାଳଣ ॥

Digitized by PPRACHIN, SOA

ବର୍ଣ୍ଣନାରେ କବିର ସୃଷ୍ଟି ବିଧି ସୃଷ୍ଟିକୁ ବିଡ଼ମ୍ବିତ କରି କବିର କଳ୍ପନା ନୈପୁଣ୍ୟର ପରିଚୟ ଦିଏ । ୧୮ ।

ବନ ଓ ନଗର ସାମ୍ୟ ପ୍ରଦର୍ଶନରେ କବିଙ୍କର ସୂକ୍ଷ୍ମ ଦୃଷ୍ଟିଭଙ୍ଗୀ ଓ ଅନ୍ତରଣ ଜନିତ ମୌଳିକତା ପରିଲକ୍ଷିତ ହୁଏ । ବନରେ କଳକଣ୍ଠ (ମୟୂରମାନେ) ଖେଳୁଛନ୍ତି । କେଉଁଠରେ କୁମୁଦ (ଝଣ୍ଟିରି ବା ଧାତକୀ ବୃକ୍ଷ) ଗନ୍ଧସାର (ଚନ୍ଦନ-ବୃକ୍ଷ) ସୁସ୍ୱାଦାନ କରୁଛନ୍ତି । ବନ ଭ୍ରମନରେ ରଞ୍ଜିତ ହୋଇଅଛି । ବନରେ ନଗରେ ନୀଳକଣ୍ଠ (ହଂସମାନେ) ଚଳୁଛନ୍ତି ଓ ନଗରେ କେଉଁଠାରେ କୁମୁଦର (କର୍ପୂର) ବାସନା ସାର ହୋଇଅଛି । ନଗର ଭ୍ରମରେ (ତାଳ ଭଉଁରୀରେ) ଶୋଭିତ ଓ ମଧୁର (ଡାକର) ବାସସ୍ଥାନ ରୂପେ ବିଦିତ । ଉଭୟେ ମଧୁର (ସୌନ୍ଦର୍ଯ୍ୟର ବାସ-ସ୍ଥାନ) ଏପରି ସାଦୃଶ୍ୟ ପରିକଳ୍ପନାରେ କବି ଉପେନ୍ଦ୍ରଙ୍କର ନବୀନ କୌଶଳ ପରୀକ୍ଷେଳ ଓ ବର୍ଷାକାଳର ସାମ୍ୟ ପରିଦର୍ଶନରେ ଦେଖାଯାଏ । ୧୯ ।

ବର୍ଷାକାଳ ମିଥୁନ (ଆଷାଢ଼ମାସ) ହେଲେ ପ୍ରକାଶ ପାଏ । କଠିନରେ ନିଷ୍ଠୁର ଭାବରେ ପାଣି ଡାକିବାକୁ ଦ୍ୱିଜର (ପକ୍ଷୀମାନଙ୍କର) ଆନନ୍ଦ ଦାନ (ଛେଦନ) କରେ । ସୁମନା (ମାଳତୀକୁ) ଉତ୍ଫୁଲ୍ଲ କରେ ଓ ପୁନଃ ପୁନଃ ବିଦ୍ୟୁତ୍ ପ୍ରସ୍ଫୁର ହୁଏ । ଘନସାର (ବଡ଼ ବଡ଼ ମେଘଖଣ୍ଡମାନ) ଚଳ ପ୍ରଚଳିତ ହୁଏ । ପୁଣି କେତେବେଳେ ସେମାନେ ଅଚଳ ହୁଅନ୍ତି । ମାର (କାମ) ପ୍ରତାପ ଏବଂ ଘୋଷ (ମେଘ ଗର୍ଜନ) ଅଧିକ ପ୍ରକାଶ ପାଏ ।

---

(୧୮) କଳି କି ସୃଷ୍ଟି କିଛି ନ ହୁଡ଼ିଲି ହରିଲିଲା ଏ ରୂପେ କି ବାଢ଼ିଲା ।
ସୁଗ୍ରୀବରେ ଯେ ଚନ୍ଦନ ମିଶ୍ରିତ । ରାମ-ଲକ୍ଷ୍ମଣ ମୁଖେ ପ୍ରଶଂସିତ
ପ୍ରକାଶିତ ଚନ୍ଦ୍ର ହାସ-ତିଳକ । ମନ୍ଦୋଦରୀ-ବର ଶକ୍ର ଦଳକ
ମେଘନାଦ ଶିଖା ଲକ୍ଷ ତିଳକ । ଦକ୍ଷଧରି ସେ ସୁମନା ବଳୀଙ୍କ
ସଦା ଅଙ୍ଗଦ ବାହୁରେ ବିହରେ । କୁଚ କୁମ୍ଭ ଉନ୍ନତ ଚଉହରେ
ଏଣୁକରି ପୁଷ୍ପ ଲଙ୍କା କମ୍ପନ । ଏତ କଳିକ କଥା ଉଦ୍ଦୀପନ ।
ନେତ୍ର ସୁଭାରତ ହେବା କହୁଛି । କୃଷ୍ଣ ଅର୍ଜୁନ ରଙ୍ଗ କରିଅଛି
ଗୁଣ ଅଞ୍ଜନ କପାଳ କମାଣ । ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ
କର୍ଣ୍ଣ ବୃଜ ମଲ୍ଲୀକଢ଼ୀ ବହିଲି । ସୁତାଙ୍କ ଆଡ଼ଣୀରେ ମୋହିଲି
ଦ୍ରୋଣ ସୁତ ଉତ୍ତର ହିଁ ବିଖ୍ୟାତ । କଳି କି ଉପଲକ୍ଷଣ ସାକ୍ଷାତ ।
( କୋଟିବ୍ରହ୍ମାଣ୍ଡ ସୁନ୍ଦରୀ— ୩/୧୮-୧୯)

॥ ଶହେତେସ୍ତାଳିଶ ॥

Digitized by PPRACHIN, SOA

ପଶାଖେଳ ମିଥୁନ (ଦୁଇଜଣ) ହେଲେ ପ୍ରକାଶ ପାଏ । ସେଥିରେ ନରେ କଣ୍ଠ ଦ୍ୱିଜରେ (ହାତଦାନ୍ତ) କାଠିପର ପାଣି (ହସ୍ତ) ଢାଳିବାରେ ଦାନ ପକାଇ ଆନନ୍ଦିତ ହୁଅନ୍ତି । ଖେଳ ଦେଖି ସୁମନା (ବିଳାସୀ) ମାନେ ଆନନ୍ଦିତ ହୁଅନ୍ତି, ବିଦ୍ୟୁ ପ୍ରଭୃତି ଦାନ ମଧ୍ୟ ଏଥିରେ ପ୍ରଚୁର କରେ । ସାର ସବୁ ଘନ ଘନ ଚଳପ୍ରଚଳ ହୁଅନ୍ତି କେତେବେଳେ ବା ଅଚଳ ହୁଅନ୍ତି । ମାର ମାର ଏହି ଶବ୍ଦ ଅଧିକ ଭାବରେ ପ୍ରକାଶ ପାଏ ।

ଅନ୍ୟ ପକ୍ଷରେ ରତିକ୍ରିଡ଼ାକୁ ମଧ୍ୟ ଏହା ବୁଝାଏ । ନାରୀର ହୃଦସ୍ଥ ହେଲା ଗୋଟିଏ ପଶାପାଲି । ତନ୍ମଧ୍ୟସ୍ଥ ସ୍ତନ ସମୂହ ଗୋଟି । ନାରୀ ପୁରୁଷ ଉଭୟେ ମିଥୁନ ହେଲେ ଏ ଖେଳ ଖେଳାଯାଏ । ସ୍ତନରେ ହସ୍ତ ଚାଳନା ଓ ଦନ୍ତ ଚାଳନାରେ ଆନନ୍ଦ ଜାତ ହୁଏ । ତରୁମମନା ବ୍ୟକ୍ତିମାନେ ଉତ୍‌ଫୁଲ୍ଲିତ ହୁଅନ୍ତି । ଶରୀରରେ ବାରମ୍ବାର ଶିହରଣ ରୂପୀ ବିଦ୍ୟୁତ୍ ପ୍ରସୃତ ହୁଏ । କେତେବେଳେ ସେମାନେ ରତିକ୍ଲାନ୍ତ ହୋଇ ଅଚଳ ହୁଅନ୍ତି । କେତେବେଳେ ସ୍ତନ ଘନ ଘନ ଚାଳିତ ହୁଏ । ଫଳରେ କନ୍ଦର୍ପର ପ୍ରତାପ ଅଧିକ ହୁଏ ।

କବି ଉପେନ୍ଦ୍ର ପୁଣି ବସନ୍ତ ଋତୁ ଓ ସତରଞ୍ଚ (ନ୍ୟାସ୍ତବଳ) ଖେଳର ଏକତ୍ର ଆରୋପରେ ତାଙ୍କର ଜ୍ଞାନର ସୁଦୂର ପ୍ରସାରୀ ଦୃଷ୍ଟିକୋଣ ଓ ଅପୂର୍ବ କଳ୍ପନା ବିଳାସିତାର ପରିଚୟ ଦେଇଛନ୍ତି ।୨୦। ବସନ୍ତ କାଳରେ ସମସ୍ତ ରୂପୀ ରାଜା ଜାତ ହୁଏ । ମନୋଭବ ପାଞ୍ଚ (ବାସକେଳି ବସ୍ତୁର) ଅଧିକ ହୁଏ । ସେ କାଳ ଶଚିବରେ (ଇନ୍ଦ୍ରରେ) ପ୍ରଶଂସିତ ହୁଏ, ଗନ୍ଧର୍ବ (କୋକିଳ) ଲୀଳାମାନ ରଚନା କରେ । ସେ ସମସ୍ତ ତରଣୀ (ସୂର୍ଯ୍ୟ) ପ୍ରଭା ଓ ନାଗେଶ୍ୱର ବୃକ୍ଷର ଶୋଭାକୁ ବଢ଼ାଏ । ପବନରେ (ପାଦଗୃଷ୍ଟ ହେବା ବିଷୟରେ) ରୁଚି ବଢ଼ାଏ ।

---

୧୯) ଏକାକାର ସେ, ବଦତ ମିଥୁନ ହେବାରେ
କଣ୍ଠ ଦ୍ୱିଜର କାଠିନରେ ଆନନ୍ଦ ଦାନତ ପାଣି ଢାଳିବାରେ [କୋଟି୧୦-୨]
ଦେଖୁ ଦେଖୁ କରେ ସୁମନା ଉତ୍‌ଫୁଲ୍ଲ ପୁନଃ ପୁନଃ ବିଦ୍ୟୁ ପ୍ରଚୁର
କେତେବେଳେ ସେହି ଅଚଳ ଭଜଇ ଚଳପ୍ରଚଳ ଘନସାର
ମାର ପ୍ରତାପ, ଘୋଷ ଅଧିକରେ ପ୍ରକାଶ [କୋଟି - ୧୦-୩]

୨୦) ବସନ୍ତେ ହୁଏ ଦ୍ୱିଖଣ୍ଡ ଏକ ପ୍ରାସ୍ତେ ସମସ୍ତେ ରାଜା ହୋଇ ଜାତ
ପାଞ୍ଚ ମନୋଭବ ଅଧିକ ହୁଅଇ ଶଚୀବରେ ସେ ପ୍ରଶଂସିତ
ଏତେ ସୁଖଦ, ଗନ୍ଧର୍ବ ଲୀଳାମାନ ରଚି
ତରଣୀ ପ୍ରଭା ନାଗେଶ୍ୱର ଶୋଭାକୁ ବଢ଼ାଇ ପଦଗରେ ରୁଚି ।
[କୋଟି - ୧୦-୪]

॥ ଶବ୍ଦେର୍ଚୌରଳଣ ॥

Digitized by PPRACHIN, SOA

ନ୍ୟାୟବଳ (ସତରଞ୍ଜି ଖେଳରେ) ଏକ ସ୍ୱର ରାଜା ହୁଏ । ମାନସିକ ବିସ୍ତୃର ଅଧିକ ହୁଏ । ସଚିବରେ (ମନ୍ତ୍ରୀବାମା ସାରରେ) ଖେଳ ପ୍ରଶଂସିତ ହୁଏ । ତହିଁରେ ଗନ୍ଧର୍ବ (ଘୋଡ଼ସାର) ବକ୍ରଗତରେ ଲୀଳା ରଚନା କରେ । ଯେ ଖେଳ ତରଣୀ (ନୌକାର) ଭ୍ରମ ଓ ନାଗେଶ୍ୱର (ହସ୍ତୀସାର) ଶୋଭାକୁ ଓ ପବନରେ (ପାଇକ ସାରରେ) ରୁଚି (ଅନୁରାଗକୁ) ବଢ଼ାଏ । ଏ ଖେଳ ବସନ୍ତଋତୁ ପରି ସୁଖଦ ଅଟେ ।

ଏକ ରାଶିରେ ଷଡ଼ଗ୍ରହ ମିଳିତ ହେଲେ ପୃଥିବୀରେ ଘୋର ଯୁଦ୍ଧ ହୁଏ । କବି ଜ୍ୟୋତିଷ ଶାସ୍ତ୍ରର ଜ୍ଞାନ ଆହରଣ କରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଶରୀରରେ ସେ ସମସ୍ତ ଆରୋପ କରି ନିଜର ସୂକ୍ଷ୍ମ ଦୃଷ୍ଟିର ପରିଚୟ ଦେଇଛନ୍ତି । (୨୧)

ସ୍ତନ ଗୁରୁଭାର (ବୃହତ୍) ଅଙ୍ଗୀକାର କରିବାରୁ ଗୁରୁ (ବୃହସ୍ପତି) ହେଲା, ପୁଣି ନୀଳାମ୍ବର (ନୀଳବସ୍ତ୍ର) ଆବୃତ୍ତ ହୋଇଥିବାରୁ ନୀଳାମ୍ବର (ଶନି) ହେଲା କବି ବର୍ଣ୍ଣନାରେ ସେ ସ୍ତନ ମଙ୍ଗଳାକର ଅଟେ । ଅତଏବ କବି ଶୁକ୍ର ଓ ମଙ୍ଗଳ । ସ୍ତନର ଅଗ୍ରଭାଗ ସତମସ (କାଳିମାଯୁକ୍ତ) ତେଣୁ ସେ ସତମସ (ରାହୁ) ପୁଣି ତହିଁରେ ସୁବର୍ଣ୍ଣ ହାର ବିରାଜୁ ଥିବାରୁ ତାହା ଚନ୍ଦ୍ର ହେଲା । ଏହିପରି ଷଡ଼ଗ୍ରହ ସ୍ତନ କୁମ୍ଭ (କୁମ୍ଭରାଶିରେ) ଏକତ୍ରିତ ହୋଇଥିବାରୁ ମହା ବିଗ୍ରହ ସୃଷ୍ଟି କରିଛନ୍ତି ।

ନବରସ ସୃଷ୍ଟି ଏକ ସମୟରେ କୌଣସି ପାତ୍ର-ପାତ୍ରୀଙ୍କ ଠାରେ ସମ୍ଭବ ହୋଇ ପାରି ନ ଥାଏ । ପୁଣି ଏହା ମଧ୍ୟରେ ପରସ୍ପର ବିରୋଧୀ ରସ ମଧ୍ୟ ଥାଏ । ମାତ୍ର କବି କଳ୍ପନା ପାତ୍ରରେ ତାର ସଂଗଠନ କରେ ।

ଦଶାବତାର ବିଭିନ୍ନ ସମୟରେ ଘଟିଛି । କିନ୍ତୁ କବି ପରିକଳ୍ପନା ସମୟର ବ୍ୟବଧାନରୁ ଏତି ଦଶାବତାରଙ୍କୁ ପୁଷ୍ପକେତୁ ଠାରେ ସଂଘଟିତ କରିଛି । ଏହାଦ୍ୱାରା

---

(୨୧) ସ୍ତନଭାବେ ଗୁରୁଭାବ ଅଙ୍ଗୀକାରି । ନୀଳାମ୍ବର ଲୀଳା ଦେଖି ବିସ୍ତାରି କବି ମଙ୍ଗଳ ସେ ଦେନ ଉପୁଜେ, ସତମସ ତ ଚନ୍ଦ୍ରରେ ବିରାଜେ ଆସି ଯେ କୁମ୍ଭ-ରାଶିରେ ଏବେ । ଷଡ଼ଗ୍ରହ ମହା ବିଗ୍ରହ ଭବେ ।

(କୋଟି ୮।୧୧)

॥ ଶହେପଞ୍ଚରୂଳଣ ॥

Digitized by PPRACHIN, SOA

କବି ସୃଷ୍ଟିର ମହନୀୟତା ଓ ସ୍ୱାତନ୍ତ୍ୟ ପ୍ରତିପାଦିତ ହୋଇଛି । (୧୨) ପୃଷ୍ଠକେତ୍ରୂର ଶଂଙ୍କିତ କଣ୍ଠରେ ଶଂଖ ସୂଚକୁ ଜିତିବା, ମୀନ ଅବତାର, ମନ୍ଦର ତାଡ଼ନ (ଦୁଷ୍ଟ ଲୋକଙ୍କୁ ତାଡ଼ନ ଓ କଚ୍ଛପାବତାର), ବରାହବତାରରେ (ବହୁତ ଶ୍ରେଷ୍ଠ ଓ ବରାହାବତାର) ନରକେଶରୀରେ (ନରସିଂହ, ନୃସିଂହାବତାର) ବଳୀଧ୍ୱଂସୀରେ (ବଳବାନଙ୍କୁ ଧ୍ୱଂସ କରିବା ଓ ବାମନାବତାର), ସହସ୍ରକର (ସୂର୍ଯ୍ୟପରି ତେଜସ୍ୱୀ ଓ ପର୍ଶୁରାମାବତାର), ରାମମୂର୍ତ୍ତିରେ (ରମଣୀୟ ମୂର୍ତ୍ତି ଓ ବଳରାମାବତାର) ବୁଧ-ତ୍ୱରେ (ପାଣ୍ଡିତ୍ୟ ଓ ବୌଦ୍ଧାବତାର), ଚନ୍ଦ୍ରହାସରେ (ଚନ୍ଦ୍ରହାସ ଖଡ୍ଗ ଓ କଳ୍କୀ ଅବତାର) ଆରୋପ କରି ଦଶାବତାର ସୁନ୍ଦର ପରିକଳ୍ପନା କରିଛନ୍ତି । ଅଷ୍ଟଦିଗପାଳ ହସ୍ତୀ ଅଷ୍ଟଦିଗରେ ଅବସ୍ଥାନ କରିଥାନ୍ତି । ମାତ୍ର କବି ସୃଷ୍ଟି ଏ ନିୟମକୁ ଲଂଘନ କରିଛି ଓ ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଠାରେ ତାହା ଏକତ୍ର ସମାବେଶ କରିଛନ୍ତି । ଏହା କବିର ଧୀଶକ୍ତି ଓ କଳ୍ପନା ଶଲାଘିତାର ପରିଚୟ ଦିଏ । ଐରା-ବତକୁ (ପୂର୍ବଦିଗ ହସ୍ତୀ ଓ ନାରଙ୍ଗୀ ଚୁବୁକ), ପୁଣ୍ଡରୀକକୁ (ଅଗ୍ନିକୋଣ ହସ୍ତୀ, ପଦ୍ମନାୟକ) ବାମନ (ଦକ୍ଷିଣ ଦିଗ ହସ୍ତୀ, ସୁନ୍ଦରୀର ଅନୁପମ ଗମନ ଠାଣି) ହାସରେ (ନୈଋତ କୋଣ, ହସ୍ତୀ କୁମୁଦ, କଇଁଫୁଲ) ଅଞ୍ଜନ (ପଶ୍ଚିମ ଦିଗ ହସ୍ତୀ, କଜ୍ଜଳ ) ପୁଷ୍ପଦନ୍ତ ( ବାୟୁ କୋଣର ହସ୍ତୀ ଓ କୁନ୍ଦପୁଷ୍ପତୁଲ୍ୟ ) ଦନ୍ତ ସାର୍ବ-ଭୌମ (ଉତ୍ତର ଦିଗ ହସ୍ତୀ ଏବଂ ଚକ୍ରବର୍ତ୍ତୀ ) ସୁପ୍ରତୀକରେ ଐଶାନ୍ୟ ଦିଗ ହସ୍ତୀ ଏବଂ ସୁନ୍ଦର ଦେହରେ ) ଆରୋପ କରି ନିଜର ଅପୂର୍ବ ସମନ୍ୱୟ ଶକ୍ତିର ପରିଚୟ ଦେଇଛନ୍ତି । [୧୩]

---

(୧୨) କଣ୍ଠ ଶଙ୍କିତ ମନ୍ଦର ତାଡ଼ନ ବରାହବର ଅଭୀତ
ଯେ ନର କେଶରୀ ବଳୀ ଧ୍ୱଂସୀ ତେଜେ ସହସ୍ରକର ବଜିତ
ରେ ସହ, ମୂର୍ତ୍ତିରାମବଳ ଖ୍ୟାତ ମହୀ
ବୁଧ ଗୁଣେ ଚନ୍ଦ୍ର ହାସେ ମୋହ, ବିଷ୍ଣୁଦଶରୂପ ଏକେ ବହି । (କୋ-୧୭-୧୮)

(୧୩) ନୃପ ନନ୍ଦନା କୁମର ବରେ କେବଳ ଦଶେ ଅଷ୍ଟ ଦିଗରେ
ଏହି କଳ୍ପନା ବୁଦ୍ଧି ବଳରେ କରି ନିଷ୍ଟୟ ଯେ ।
ଅଇରାବତ ଚବୁକ ଜାଣି ପୁଣ୍ଡରୀକଙ୍କୁ ନୟନେ ଆ
ଘେନ ବାମନ ଗମନ ଠାଣି ଅନୁପମେୟ ଯେ ।
ପୁଣି କୁମୁଦ ହାସେ ପ୍ରକାଶମାନ ଯେ । କରେ ଅଞ୍ଜନ କେଶ
ଚରମେ ସ୍ଥାନ ଯେ ।
ଭୂଷିତ ପୁଷ୍ପଦନ୍ତ ଶୋଭିତ ସୌନ୍ଦର୍ଯ୍ୟ ସାର୍ବଭୌମ
ସୁପ୍ରତୀ କରେ ସାର ଜଗତ ଚିତ୍ତ ରଞ୍ଜନ ଯେ ।''
(କୋଠି - ସୁନ୍ଦରୀ-୧୭-୧୪)

॥ ଶବ୍ଦଚ୍ଛଟ୍ଯାଳଣ ॥

Digitized by PPRACHIN, SOA

ଏ ସମସ୍ତରୁ ପରିଜ୍ଞାତ ହୁଏ ଯେ ଉପେନ୍ଦ୍ରଙ୍କ ସୃଷ୍ଟି ଏକ ସ୍ୱତନ୍ତ୍ର ସର୍ଜନା । ତାହା ନିୟତି କୃତ ନିୟମ ରହିତ ଓ ପ୍ରଜାପତିଙ୍କ ସୃଷ୍ଟି ଠାରୁ ବି ସ୍ୱତନ୍ତ୍ର । ତାଙ୍କ ଅପାର କାବ୍ୟ ସଂସାରରେ ସେ କେବଳ ଜଣେ ମାତ୍ର ପ୍ରଜାପତି ।

## କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ପବିତ୍ର ଦାମ୍ପତ୍ୟ ପ୍ରୀତି

"ଗୋପୀ କୃଷ୍ଣଲୀଳା ଚିତ୍ର ନାହିଁ ଯହିଁ ଦେଖା
ସୀତାରାମ ପ୍ରଦୀପ ନିୟମ ଆଦି ଲେଖା ଯେ"

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏକ କାଳ୍ପନିକ କାବ୍ୟ । ଏହା ରାମ କୈନ୍ଦ୍ରିକ ପୌରାଣିକ କାବ୍ୟ ନୁହେଁ । ତଥାପି ରାମତାରକ ମନ୍ତ୍ରସିଦ୍ଧ କବିସମ୍ରାଟ ଉପେନ୍ଦ୍ରଭଞ୍ଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ପ୍ରାୟ ପ୍ରତ୍ୟେକ ଛାନ୍ଦର ଶେଷାଂଶରେ ଇଷ୍ଟଦେବ ରୂପେ ମର୍ଯ୍ୟାଦାପୁରୁଷୋତ୍ତମ ଶ୍ରୀରାମଙ୍କୁ ସ୍ମରଣ କରି ନିଜର ଭକ୍ତିମତ୍ତା ତଥା ଜୀବନା-ଦର୍ଶର ପରିଚୟ ଦେଇଛନ୍ତି । ମନରେ ପ୍ରଶ୍ନ ଉଠେ ଭଞ୍ଜ ନାୟକ ନାୟିକାଙ୍କ ମଧୁଶଯ୍ୟା ଗୃହରେ ଗୋପୀକୃଷ୍ଣ ଲୀଳାର ବସ୍ତ୍ରହରଣ, ନାବକେଳି ଓ ଭୂତକେଳି ପ୍ରଭୃତି ଚିତ୍ରକୁ ଗୁରୁତ୍ୱ ନଦେଇ ସୀତା ରାମ ପ୍ରଦୀପ ନିୟମ ବା ଲେଖିଲେ କାହିଁକି ? ଯେତେଦୂର ମନେହୁଏ କବିସମ୍ରାଟ ଥିଲେ ରାମ ସୀତାଙ୍କର ପରମ ଭକ୍ତ ଓ ରାମ-ତାରକ ମନ୍ତ୍ରସିଦ୍ଧ ଏକପତ୍ନୀ ବ୍ରତର ଶ୍ରେଷ୍ଠ ସାଧକ । ଆଦର୍ଶ ଦାମ୍ପତ୍ୟ ଜୀବନ ସମ୍ପର୍କରେ ସେ ଥିଲେ ଅତ୍ୟନ୍ତ ସଚେତନ । ପତ୍ନୀବ୍ରତ ଓ ପାତିବ୍ରତ୍ୟ ପ୍ରସଙ୍ଗରେ ବାଲ୍ମୀକି ରାମାୟଣ କହେ "ନାରୀ ନିମିତ୍ତ ପତି ହିଁ ଦେବତା, ପତି ହିଁ ବନ୍ଧୁ ଓ ପତି ହିଁ ଗୁରୁ ।୧। ମହାଭାରତ କହେ "ଯେଉଁ ନାରୀ ପତିକୁ ଶ୍ରେଷ୍ଠ ବୋଲି ଜାଣେ ସେ କଲ୍ୟାଣୀ ସତୀ ଓ ପତିବ୍ରତା । ଯେଉଁ ନାରୀ ପତିଠାରେ ଚିତ୍ତ ରଖେ ତା ପାଇଁ ପତି ସେବା ପୂଣ୍ୟ, ପତିସେବା ତପସ୍ୟା ଓ ସନାତନ ସ୍ୱର୍ଗ । ସ୍ତ୍ରୀ ପାଇଁ ପତି ହିଁ ଦେବତା ଓ ପତି ହିଁ ବନ୍ଧୁ । ନାରୀଙ୍କ ନିମିତ୍ତ ସ୍ୱାମୀ ବିନା ଅନ୍ୟ କୌଣସି ଆଶ୍ରୟ ନାହିଁ ବା ଅନ୍ୟ କୌଣସି ଦେବତା ନାହିଁ । ।୨। ପୁଣି ଭାର୍ଯ୍ୟା ହେଉଛନ୍ତି କାର୍ଯ୍ୟରେ ମନ୍ତ୍ରୀ,

---

୧) ପତିର୍ହି ଦେବତା ନାର୍ଯ୍ୟାଃ ପତିବନ୍ଧୁ ପତିର୍ଗୁରୁଃ
ପ୍ରାଣୈରପି ପ୍ରିୟଂ ତସ୍ମାଦ୍ ଭର୍ତ୍ତୁଃ କାର୍ଯ୍ୟଂ ବିଶେଷତଃ
(ବାଲ୍ମୀକି ୮୪ / ୧୭)

।। ବ୍ରହ୍ମବୈବର୍ତ୍ତପୁରାଣ ।।

Digitized by PPRACHIN, SOA

ସେବାରେ ଦାସୀ, ଭୋଜନ ପ୍ରଦାନରେ ମାତା, ଶୟନରେ ରମ୍ଭା । ସେ ଧର୍ମାନୁକୂଳା ଓ କ୍ଷମାରେ ଧରଣୀ ସମା ।୩। ଏମିତି ଅନୁପମଗୁଣବତୀ ସ୍ତ୍ରୀମତୀ ଦୁର୍ଲ୍ଲଭ ।

ମାତ୍ର ଦାମ୍ପତ୍ୟ ପ୍ରେମର ପବିତ୍ର ପ୍ରବାହ ଚୈତନ୍ୟଙ୍କର ବୈଷ୍ଣବଧର୍ମ ପ୍ରଚାର ହେତୁ ବାଧାପ୍ରାପ୍ତ ହେଲା । ୧୫୧୦ ଖ୍ରୀଷ୍ଟାବ୍ଦରେ ଚୈତନ୍ୟଙ୍କ ଓଡ଼ିଶା ଆଗମନ ଫଳରେ ନୂତନ ପରକୀୟା ପ୍ରେମମୂଳକ ବୈଷ୍ଣବ ଧର୍ମ ପ୍ରଚାର ଏ ଦେଶର ନୈତିକତାର ଭିତ୍ତି ଦୋହଲାଇ ଦେଇଛୁ । ପ୍ରତାପରୁଦ୍ରଦେବ ତାଙ୍କ ରୁଦ୍ର ପ୍ରତାପକୁ ଭୁଲି, କରବାଳ ପରିତ୍ୟାଗ କରି କରତାଳ ଧରିଛନ୍ତି । "ଯୁବତୀ ନାରୀର କୋଳରେ ରୁହ, ଖକୁର ମାଛ ଝୋଳ ଖାଅ । ତଥାପି ହରି ହରି ବୋଲୁଥାଅ" ।୪। ନୂତନ ବୈଷ୍ଣବ ଧର୍ମ ରାଜଧର୍ମରେ ପରିଣତ ହୋଇଯାଇଛି । ସହଜମାର୍ଗ ପୁଣି ରାଜା

---

୨) ପୁଣ୍ୟମେତତ୍ତପଶ୍ଚୈବ ସ୍ୱର୍ଗଶ୍ଚୈ ସନାତନଃ
ଯା ନାରୀ ଭର୍ତ୍ତିପରମା ଭବେଦ୍ଭର୍ତ୍ତୃବ୍ରତା ଶିବା
ପତିର୍ହି ଦେବୋ ନାରୀଣାଂ ପତିର୍ବନ୍ଧୁଃ ପତିର୍ଗତିଃ
ପତ୍ୟା ସମା ଗତିର୍ନାସ୍ତି ଦୈବତଂ ବା ଯଥା ପତି ।
(ମହା. ଅନୁଶାସନ ୧୩୪/୫୦—୫୧)

୩) କାର୍ଯ୍ୟେଷୁ ମନ୍ତ୍ରୀ, କରଣେଷୁ ଦାସୀ ଭୋଜ୍ୟେଷୁ ମାତା
ଧର୍ମାନୁକୂଳା କ୍ଷମୟା ଧରିତ୍ରୀ ଶୟନେଷୁ ରମ୍ଭା ଭାର୍ଯ୍ୟା ଚ ଷଡ଼ଗୁଣାବତିଃ
କାର୍ଯ୍ୟେ ଦାସୀ ରତୌ ବେଶ୍ୟା ଭୋଜନେ ଜନନୀ ସମା
ବିପତ୍ତୌ ବୁଦ୍ଧି ଦାତ୍ରୀ ଚ ସା ଭାର୍ଯ୍ୟା ସର୍ବଦୁର୍ଲ୍ଲଭା ।

୪) ଯୁବତୀ ନାରୀର କୋଳ୍, ଖକୁରମାଛେର ଝୋଲ , ବେଟା ହରିସ୍ବା ହରିସ୍ବା ବୋଲ୍ ।

"Suddenly, from the beginning of the 16th century a decline set in the power and prestige of Orissa with a corresponding decline in the military spirit of the people. This decline is intimately connected with the long residence of the Bengali Vaishnava saint Chaitanya in the country. If we accept only one-tenth of what the Sanskrit and



Digitized by PPRACHIN, SOA

ପ୍ରତାପରୁଦ୍ରଙ୍କର ସେଥିପ୍ରତି ଅନୁରାଗ, ଏମିତି ସୁବିଧା ଲୋକମାନେ ଗ୍ରହଣ କଲେ. କେମିତି ? ପ୍ରଜାରକ୍ଷାରେ ପ୍ରଧାନ ଭୂମିକା ଗ୍ରହଣ କରୁଥିବା ସୈନ୍ୟସାମନ୍ତଗଣ ଆଚରଣ ବିସର୍ଜନ କରି ଭକ୍ତି ରସରେ ବିହ୍ୱଳିତ ହୋଇ ଉଠିଛନ୍ତି । ପ୍ରତିରକ୍ଷା କ୍ଷେତ୍ର ଦୁର୍ବଳ ହୋଇ ପଡ଼ିଛି । R·D. Banerjee ଲେଖିଛନ୍ତି "ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରୁ ହିଁ ହଠାତ୍ ଓଡ଼ିଶାର ଶକ୍ତି ଓ ମର୍ଯ୍ୟାଦା ସହିତ ଦେଶର ପ୍ରତିରକ୍ଷା ଶକ୍ତିର ପତନ ଘଟିଛି । ଏ ପତନ ଚୈତନ୍ୟଙ୍କର ଦୀର୍ଘଦିନ ଓଡ଼ିଶାରେ ରହିବା ସହିତ ସଂପୃକ୍ତ ।" ସଂସ୍କୃତ ଓ ବଙ୍ଗଳା ପୁସ୍ତକ ଶ୍ରୀ ଚୈତନ୍ୟଙ୍କ ପ୍ରତାପରୁଦ୍ର ଦେବଙ୍କ ଓ ଦେଶବାସୀଙ୍କ ଉପରେ ପଡ଼ିଥିବା ପ୍ରଭାବର ଯଦି ଏକଦଶମାଂଶ ଗ୍ରହଣ କରାଯାଏ, ତେବେ ଜଣାଯାଏ ଯେ ଶ୍ରୀ ଚୈତନ୍ୟ ଓଡ଼ିଶା ସାମ୍ରାଜ୍ୟର ରାଜନୈତିକ ଓ ଲୋକମାନଙ୍କର ନୈତିକ ପତନ ନିମିତ୍ତ ଏକାନ୍ତ ଦାୟୀ । ଚୈତନ୍ୟଙ୍କ ପ୍ରଚାରିତ ରାଧାକୃଷ୍ଣ ଭକ୍ତିମୂଳକ ଧର୍ମ ପ୍ରଚାରରେ ପରକୀୟା ।୫। ପ୍ରୀତି ଉପରେ ବେଶୀ ଗୁରୁତ୍ୱ

---

Bengali biographies of the saint state about his influence over Prataparudra and the people of the country, even then, we must admit that Chaitanya was one of the pricipal causes of the political decline of the empire and the people of Orissa. Not only that; the acceptance of Vaishnavism or rather Neo-Vaishnavism was the real cause of the Musalman conquest of Orissa twenty-eight years after the death of Prataparudra.

*(Page 330 of History of Orissa, Volume I)*

*By*

R D. Banerjee

୫) ଅତଏବ ମାଧୁର୍ଯ୍ୟ ରସ କହି ତାର ନାମ
ସ୍ୱକୀୟା ପରକୀୟା ଭାବେ ଦ୍ୱିବିଧ ସସ୍ଥାନ
ପରକୀୟା ଭାବେ ଅତି ରସେର ଉଲ୍ଲାସ
ବ୍ରଜବିନା ଇହାର ଅନ୍ୟତ୍ର ନାହିଁ ବାସ
ବେଦଧର୍ମ ଲୋକଧର୍ମ ଦେହଧର୍ମ କର୍ମ
ଲଜ୍ଜା ଧୈର୍ଯ୍ୟ ଦେହ ସୁଖ ଆତ୍ମାସୁଖ ମର୍ମ ·

॥ ଶବ୍ଦେ ଅଣସ୍ତ୍ରୂଣ ॥

Digitized by PPRACHIN, SOA

ଆରୋପିତ ହେଲା । ଏହାର ଆଭିମୁଖ୍ୟ ଡାଣ୍ଡ୍ରିକତା ଦୃଷ୍ଟିରୁ ଯାହା ହେଉନା କାହିଁକି ସାଧାରଣ ଜନତା ଉପରେ ଏହା କୁପ୍ରଭାବ ପକାଇଲା । ଲୋକମାନଙ୍କ ପାରିବାରିକ ସଂପର୍କ ଆହତ ହେଲା । ଏକନିଷ୍ଠ ଦାମ୍ପତ୍ୟ ପ୍ରେମ ବ୍ୟାହତ ହେଲା । ଏହି ପରକୀୟା ପ୍ରେମ ଦିନାଇ ଦାସଙ୍କ ଗୋପୀଭାଷାରେ ଅତି ବିଭତ୍ସରୂପ ନେଲା ।

ଦୀପ ଧରିଣ ଜଣାଣ କରୁଛୁ । ସାନ ଭଉଣୀ ମୋ ପାଶରେ ଅଛୁ
ନୂଆ ବୟସ ହୋଇଛୁ ତାହାର । ଅନୁକ୍ଷଣେ ଚିନ୍ତା ପତି ସଙ୍ଗର
କୃଷ୍ଣଙ୍କୁ ଦେଖି ଉଲୁସିଲା ଦେହ । ଅନଳ ଦେଖି ପତଙ୍ଗ ସେନେହ
ନାଆଁକୁ ଦେଖି ଜଉ ତରଳିଲା । ସେହି ରୂପେ ଭଉଣୀ ମୋର ହେଲା ।
ତାର ଅସମ୍ଭାଳ ଦେଖିଲି ଯହୁଁ । ଅଙ୍ଗୁଷ୍ଠି ଦେଖାଇ ଠାରିଲି ତହୁଁ ।
ଅନ୍ତର ହୋଇଣ ସେଠାରୁ ଗଲା । ଆର ଘରେ ଯାଇ ଚୂଲି ଜାଳିଲା ।
ମୁହିଁ ସିବାର ଦେଖିଣ ଶ୍ରୀହରି । ସାନ ଭଉଣୀ ସଙ୍ଗେ ପ୍ରୀତି କରି ।
ପହରେ କାଳ ନେଇଗଲା ପୁଣ । ମୁଁ ଯାଇ ମିଳିଲି ତାଙ୍କ ପାଖେଣ
ଦେଖିଲି ନିବବନ୍ଧ ବଡ଼ ଗାଢ । ଅଣ ଆସ୍ୱତ ଭଉଣୀ ମୋହର
ଠାରିଦେଲା ମୋତେ ମିଇବ ପାଣି । ବେଗେ ଜଳ ଦେଲି ଝରୀରେ ଆଣି
ସୁରତି ସରିଲା ପିଇଲା ଜଳ । ମୋତେ ଧଇଲେ ମଦନ ଗୋପାଳ ।
ନାନା ରସରେ ଲୀଳା ରତି କଲେ । ଅର୍ଦ୍ଧ ରଜନୀ ଅନ୍ତର ହୋଇଲେ
ଭଉଣୀ ମୋତେ ପରଶଂସା କଲା । ତୁମ ସକାଶୁ ମନ ତୋଷ ହେଲା ।

× × ×

ପୁଣି

ନାନା ରସରେ କରିଲେ ରମଣ । ପହରକେ ଦେହ ହୋଇଲା ଖିନ ।
ତେଜ କରିଗଲେ ପରାଣ ଧନ । ଗୃହଁ ନ ପାରିଲି ମୁଁ ଗୃହବଦନ
(ଗୋପୀଭାଷା, ପ୍ରାଚୀ: ସଂ)

---

ଦୁସ୍ତ୍ୟଜ ଆର୍ଯ୍ୟପଥ ନିଜ ପରିଜନ
ସ୍ୱଜନେ କରଯେ୍ୱ ଯତ ତାଡ଼ନ ଭର୍ତ୍ସନ
ସର୍ବତ୍ୟାଗ କରି କରେ କୃଷ୍ଣେର ଭଜନ (ଚୈତନ୍ୟ ଚରିତାମୃତ: ଆଦି)
ସା ଭକ୍ତିଂ ପରମ ପ୍ରେମରୂପା (ନାରଦ ଭକ୍ତି ସୂତ୍ର)

॥ ଶବ୍ଦେ ପସ୍ୱଣ ॥

Digitized by PPRACHIN, SOA

କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଥିଲେ ଜଣେ ଯୋଗଜନ୍ମା ଓ ଯୁଗଜନ୍ମା କବି । ଭାଷା ଓ ସାହିତ୍ୟର ଅଭିବୃଦ୍ଧି ଘଟାଇବା ସଙ୍ଗେ ସଙ୍ଗେ ଦୁର୍ବଳ ସାମାଜିକ ଓ ରାଜନୈତିକ ସଂହତିକୁ ସୁଦୃଢ଼ କରିବା ନିମିତ୍ତ ସେ ଲେଖନୀ ଚାଳନା କଲେ । ଭାରତର ପରଂପରା ଓ ସଂସ୍କୃତି ରକ୍ଷା କରିବାକୁ ସେ ଚେଷ୍ଟା କଲେ । କାରଣ ଆଚାରରେ ମନୁଷ୍ୟର ଆୟୁ ବର୍ଦ୍ଧିତ ହୁଏ, ଆଚାର ଦ୍ୱାରା ସେ ଲକ୍ଷ୍ମୀଯୁକ୍ତ ହୁଏ, ଆଚାର ଦ୍ୱାରା ଇହଲୋକ ଓ ପରଲୋକରେ କୀର୍ତ୍ତି ଲାଭହୁଏ । ଆଚାର କହେ ଯେ ପତିଠାରେ ଚିତ୍ତ ରଖେ, ପତିର ହିତକାରିଣୀ ହୁଏ, ସେ ପ୍ରତିବ୍ରତଭାଗିନୀ ହୁଏ ।୬। ଯେ ଗୃହ କାର୍ଯ୍ୟରେ ଦକ୍ଷା ସେ ହିଁ ଭାର୍ଯ୍ୟା, ଯେ ପୁତ୍ର ପ୍ରସବ କରେ ସେ ହିଁ ଭାର୍ଯ୍ୟା, ଯାହା ନିମିତ୍ତ ପତି ହିଁ ପ୍ରାଣ ସେ ହିଁ ଭାର୍ଯ୍ୟା, ଯେ ପତିବ୍ରତା ସେହିଁ ଭାର୍ଯ୍ୟା । ମନୁଷ୍ୟର ସ୍ତ୍ରୀ ଅର୍ଦ୍ଧ ଅଙ୍ଗ । ଭାର୍ଯ୍ୟା ସବୁଠାରୁ ବଡ଼ ମିତ୍ର । ଭାର୍ଯ୍ୟା ହିଁ ଧର୍ମ, ଅର୍ଥ ଓ କାମ ତ୍ରିବର୍ଗ ସହିତ ଜଡ଼ିତ ଓ ଭାର୍ଯ୍ୟା ପରିବାରର ମିତ୍ର ।୭। ଗୃହିଣୀ ବିହୀନ ଗୃହ ଗୃହ ନୁହେଁ । ଗୃହିଣୀ ହିଁ ଗୃହ ।୮। ପତିପତ୍ନୀ ଭିନ୍ନ ନୁହଁନ୍ତି । ସେ ଦୁହେଁ ଦେହରେ ଭିନ୍ନ ହେଲେହେଁ ଏକାତ୍ମା ଯେଉଁ ସମାଜରେ ନାରୀ ପ୍ରତି ସମାଦର ଅଛି,ସେଠାରେ ଦେବତାମାନେ ପ୍ରସନ୍ନ ରୁହନ୍ତି ।୯। ଆଉ ଯେଉଁ କୁଳରେ ସ୍ତ୍ରୀ ପ୍ରତି ପୂଜା ଓ ସତ୍କାର ନାହିଁ ସେଠାରେ ଯଜ୍ଞାଦି ସମସ୍ତ କର୍ମ ନିଷ୍ଫଳ । ଯେଉଁ ପରିବାରରେ ପତିପତ୍ନୀ ଉଭୟେ ପରସ୍ପର ପ୍ରତି ସନ୍ତୁଷ୍ଟ ସେହି ପରିବାରରେ ମଙ୍ଗଳ ସୁନିଶ୍ଚିତ ।୧୦। ଚନ୍ଦ୍ର ଶୋଭିତ ମେଘମୁକ୍ତ ରାତ୍ରି ହିଁ ରାତ୍ରି । ଯେଉଁ ସ୍ତ୍ରୀ ସୌନ୍ଦର୍ଯ୍ୟ ଗୁଣାନ୍ୱିତା ସେ ହିଁ

---

୬) ଆଚାରାଲ୍ଲଭତେ ହ୍ୟାୟୁରାଚାରାଲ୍ଲଭତେ ଶ୍ରିୟମ୍
ଆଚାରାତ୍କୀର୍ତ୍ତିମାପ୍ନୋତି ପୁରୁଷଃ ପ୍ରେତ୍ୟ ଚେହ ଚ
(ମହାଭାରତେ ଅନୁଶାସନ ପର୍ବ ୧୦୩/୬)
(ମହାଭାରତ ଅନୁଶାସନ ପର୍ବ ୧୩୦/୪୯)

୭) ସା ଭାର୍ଯ୍ୟା ଯା ଗୃହେ ଦକ୍ଷା ସା ଭାର୍ଯ୍ୟା ଯା ପ୍ରଜାବତୀ
ସା ଭାର୍ଯ୍ୟା ପତିବ୍ରତା ସା ଭାର୍ଯ୍ୟା ଯା ପତିବ୍ରତା
ଅର୍ଦ୍ଧଂ ଭାର୍ଯ୍ୟା ମନୁଷ୍ୟସ୍ୟ ଭାର୍ଯ୍ୟା ଶ୍ରେଷ୍ଠତମ ସଖା
ଭାର୍ଯ୍ୟା ମୂଳଂ ତ୍ରିବର୍ଗସ୍ୟ ଭାର୍ଯ୍ୟା ମିତ୍ରଂ ମରିଷ୍ୟତ ।
(ମହାଭାରତ ଆଦି ୨୮/୩୯-୪୦)

୮) ନ ଗୃହ ଗୃହମିତ୍ୟାହୁର୍ଗୃହିଣୀ ଗୃହମୁଚ୍ୟତେ ।

୯) ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ (ମନୁ ୩/୫)

୧୦) ସନ୍ତୁଷ୍ଟୋ ଭାର୍ଯ୍ୟାୟା ଭର୍ତ୍ତା ଭର୍ତ୍ତା ଭାର୍ଯ୍ୟା ତଥୈବ ଚ
ଯସ୍ମିନ୍ନେବ କୁଳେ ନିତ୍ୟ କଲ୍ୟାଣଂ ତତ୍ରବୈ ଧ୍ରୁବଂ



Digitized by PPRACHIN, SOA

ପ୍ରକୃତ ସ୍ତ୍ରୀ । ୧୧ । ପୁଣି ବୈଦିକ ପରମ୍ପରା କହେ "ହେ ପତିପତ୍ନୀ ତୁମ୍ଭେ ଦୁହେଁ ଏକଅ ନିବାସ କର । କେବେ ହେଁ ପୃଥକ୍ ହୁଅନାହିଁ । ଏକଶତ ବର୍ଷ ଧାର୍ମିକ ଜୀବନ ଯାପନ କରି ପୁତ୍ର ପୌତ୍ରାଦି ପ୍ରାପ୍ତ ହୁଅ । ନିଜ ଗୃହରେ ଆନନ୍ଦ ଉପଭୋଗ କର । ୧୨ । ପୁଣି ଭାରତୀୟ ସଂସ୍କୃତି କହେ ଅନ୍ୟ ସ୍ତ୍ରୀକୁ ମାତୃ ସମାନ ଜ୍ଞାନ କରିବ । ୧୩ । ମାତ୍ର ପରକୀୟା ପ୍ରେମର ପ୍ରାବଲ୍ୟରେ, ଦାମ୍ପତ୍ୟ ଜୀବନ ଯେତେ-ବେଳେ ନଷ୍ଟ ହେଲା, ଗାର୍ହସ୍ଥ୍ୟ ଜୀବନ ଭ୍ରଷ୍ଟ ହେଲା ସେତେବେଳେ ଉପେନ୍ଦ୍ର ଭଞ୍ଜଙ୍କ ମନ ବିଦ୍ରୋହ କରି ଉଠିଲା । ପାରିବାରିକ ଜୀବନରେ ସୁସ୍ଥତା, ନିଷ୍ଠାରକ୍ଷା କରିବାକୁ ଏକ ଆଦର୍ଶ ଜୀବନର ଆବଶ୍ୟକତା ସେ ମର୍ମେ ମର୍ମେ ଅନୁଭବ କଲେ । ସେ ଜୀବନ ନାରୀଭଦ୍ର, ମର୍ଯ୍ୟାଦା ପୁରୁଷୋତ୍ତମ ଓ ଲକ୍ଷ୍ମୀରୂପା ସୀତାଙ୍କର ନିବିଡ଼ ଦାମ୍ପତ୍ୟ ପ୍ରେମ ବ୍ୟତୀତ ଅନ୍ୟକିଛି ନୁହେଁ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ ବାଲ୍ମୀକି ରାମାୟଣର ।୧୪। ଅନୁସରଣରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଏକ ପୌରାଣିକ କାବ୍ୟ ନ ହେଲେହେଁ ନାୟକ ନାୟିକାଙ୍କ ମଧ୍ୟରେ ଦାମ୍ପତ୍ୟ ପ୍ରେମର ନିଷ୍ଠା ଆଣିବାକୁ ଅଧିକାଂଶ ଗ୍ରନ୍ଥର ଶେଷରେ ରାମସୀତାଙ୍କୁ ସ୍ତୁତି କରିବା ସଙ୍ଗେ ସଙ୍ଗେ ଅନ୍ତର୍ଜଗତର ପରିଚୟ ଦେଇ

---

୧୧) ଯା ରାକା ଶଶୀ ଶୋଭନା ଗତଘନା ସା ଯାମିନୀ ଯାମିନୀ
ଯା ସୌନ୍ଦର୍ଯ୍ୟ ଗୁଣାନ୍ୱିତା ପତିରତା ସା କାମିନୀ କାମିନୀ—ରାଜଶେଖର

୧୨) ଇହୈବ ସ୍ତଂ ମା ବିଯୌଷ୍ଟଂ ବିଶ୍ୱମ୍ ଆୟୁର୍ବ୍ୟଶ୍ନୁତମ୍
କ୍ରୀଡ଼ନ୍ତୌ ପୁତ୍ରୈର୍ନପ୍ତୃଭିର୍ମୋଦମାନୌ ସ୍ୱଗୃହେ । (ଋଗ୍ବେଦ)

୧୩) ମାତୃବତ୍ ପରଦାରେଷୁ (ସୂକ୍ତିସଂଗ୍ରହ) ଶ୍ରୀବତ୍ସ ପଣ୍ଡା

୧୪ (କ) ଅନ୍ୟ ସ୍ତ୍ରୀ ଦେଖିଣ ମୁଁ ନ କରିବି ପ୍ରୀତି
ମୋହର ଏ ବଚନ ଗୋ ସତ୍ୟ ସତ୍ୟ ସତି
କୁଳଦୀପ ଛୁଇଁଣ ମୁଁ କରଇ ନିୟମ
ପ୍ରତ୍ୟକ୍ଷରେ ବୈଶ୍ୱାନର ବ୍ରହ୍ମାଙ୍କ ନନ୍ଦନ (ବାଲ୍ମୀକି ରାମାୟଣ ଆଦିକାଣ୍ଡ)

(ଖ) ଶ୍ରୀରାମ ନିୟମ କଲେ କୁଳଦୀପ ଛୁଇଁ
ନିଶ୍ଚେ ସପତ୍ନୀ ତୋତେ ନ କରିବ ମୁହିଁ ।

। ଶବ୍ଦେ ବାଦନ ।।

Digitized by PPRACHIN, SOA

ଏକନିଷ୍ଠ ଦାମ୍ପତ୍ୟ ପ୍ରେମର ଜୟଗାନ କରିଛନ୍ତି । ୧୫ । ବୈଦେହୀଶ ବିଳାସରେ ମଧ୍ୟ ମଧୁଶଯ୍ୟା ଗୃହରେ ପ୍ରଦୀପ ଛୁଇଁ ଶପଥ କରିବା କଥା ଲେଖିଛନ୍ତି । ମନେହୁଏ ପ୍ରଦୀପ ଛୁଇଁ ଶପଥ କରିବା, ଏକ ବୈଦିକ ପରମ୍ପରା । ନାରୀ ପୁରୁଷ ହେଉଛନ୍ତି ଜୀବନ ଜୀବନର ଦୋସର । ସତୀତ୍ୱ ହେଉଛି ଚରିତ୍ରର ଅନବଦ୍ୟ ପରାକାଷ୍ଠା । •

ସତୀ ଶିରୋମଣି ରାଜନନ୍ଦିନୀ ବିଶ୍ୱବନ୍ଦିତା ସୀତା ଥିଲେ ରାମଙ୍କର ଏକ ଆଦର୍ଶ ପତ୍ନୀ । ଆଦର୍ଶ ପୁରୁଷ ରାମ ଓ ସୀତାଙ୍କର ଏକପତ୍ନୀ ବ୍ରତର ପ୍ରଭାବ ନାୟକ ନାୟିକାଙ୍କ ଉପରେ ପକାଇବା ପାଇଁ କବିସମ୍ରାଟ ରାମସୀତାଙ୍କର ପ୍ରଦୀପନିୟମ ଚିତ୍ର ଦେଇଛନ୍ତି ଓ ସେହି ମହନୀୟ ଦାମ୍ପତ୍ୟ ପ୍ରେମର ପ୍ରଭାବ ସାଧାରଣ ଜନତା ଉପରେ ପକାଇବା ପାଇଁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଲେଖିଛନ୍ତି । "ରାମ ବିଭା ଅଭିଷେକ । ରାମ ମୋହେ ସର୍ବଦୃକ ।" ପରିବାରର ପରିଧି ମଧ୍ୟରେ ଆତ୍ମୀୟତାର ଆୟତନ ମଧ୍ୟରେ ଦିବ୍ୟଭାବନା ଆନୟନରେ ଉପେନ୍ଦ୍ର ଭଞ୍ଜଙ୍କର ସଂସ୍କୃତ ସଚେତନ ମନ କପର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା, ତଦୀୟ ମହନୀୟ ବାଙ୍ମୟ ତାର ଅନୁପମ ନିଦର୍ଶନ ।

---

୧୫ (କ) ରାମ ନାମକୁ ଜପ କରୁଥାଇ । ମୋକ୍ଷରେ ଆଉ ସେ ସଂଶୟ ନାହିଁ । (କୋ.ବ୍ର.ସୁ: ୨/୨)

(ଖ) ସୁଗ୍ରୀବରେ ଯେ ଚନ୍ଦନ ଚର୍ଚ୍ଚିତ । ରାମ ଲକ୍ଷ୍ମଣ ମୁଖେ ପ୍ରଶଂସିତ ଯେ (କୋଟି ୩/୪୭)

(ଗ) ହଂସ ବଂଶରେ ଯେ ଠାକୁର । ପରମହଂସ ଅବତାର । (କୋଟି୫/୪୦)

(ଘ) ଯେହୁ ତାରକ ପ୍ରବର୍ତ୍ତିକ ଜଗତେ ତାରକ ସ୍ୱଭାବେ ସେହି ତ (କୋଟି ୬/୩୦)

(ଙ) ରାମଭଦ୍ର ପଦ ବିପଦ ଘନ (କୋଟି ୮/୨୨)

(ଚ) ଯେଉଁ ଅଭିରାମ ବାମନ ମୂର୍ତ୍ତି । ଉପଇନ୍ଦ୍ର ଭଞ୍ଜର ସକଳ ସମ୍ପତ୍ତି [କୋଟି ୯/୪୫]

(ଛ) ଯେତୁ ହେତୁରେ ବିଚିତ୍ରକର୍ମା ରଘୁନାଥ ତାଙ୍କ ଧ୍ୟାନରେ [କୋଟି୧୦/୩୧]

ଜ) ଯାହାର ଚରିତ ରସ କବି ବାଣୀରେ ଶେଷ ନୋହେଁ [କୋଟି୧୩/୨୮]

ଝ) ତରଣୀ କୁଳର ସାର ଆଶ୍ରୟରୁ ନିରନ୍ତର [କୋଟି. ୧୪.୩୯]

ଞ) ଭବ ରାମ ପଦ କହେ ଉପଇନ୍ଦ୍ର ଭଞ୍ଜ [କୋଟି ୦.୫/୫୯]

ଟ) କହେ ଉପଇନ୍ଦ୍ର ମୋ ପ୍ରଭୁ ଶ୍ରୀରାମ ବୈକୁଣ୍ଠନାଥ ସାକ୍ଷାତ [କୋଟି ୧୬/୩୦]

॥ ଶହେତେପନ ॥

Digitized by PPRACHIN, SOA

ଠ) ଦାଶରଥିରେ ଦାଶରଥି ଭକ୍ତ ଉପେନ୍ଦ୍ର ଧାର୍ମ୍ମି [କୋଟି ୧୬/୩୪]
ଡ଼) ଶ୍ରୀରାମ ସାର୍ଥ କରିବେ ଏ ମନୋରଥକୁ [କୋଟି ୧୯/୬୨]
ଢ଼) କହେ ଉପଇନ୍ଦ୍ର ଭଞ୍ଜ ଶ୍ରୀରାମ ସୁମର [କୋଟି ୨୧/୫]
ଣ) ରାମମଧୁର ମୂର୍ତ୍ତି ଧାର୍ମ୍ମି ଚଉ [କୋଟି ୨୨/୬୪]
ତ) ସୀତାପତି କୀର୍ତ୍ତି ସାର [କୋଟି ୩୬/୫]
ଥ) ରାମଭଦ୍ର [କୋଟି ୩୩/୯୬]
ଦ) ରାମବଭ୍ର ଅଭିଷେକ [କୋଟି ୩୨/୫୧]
ଧ) ଗୋପିକୃଷ୍ଣ ଲୀଳା [କୋଟି ୩୪/୨]



ଅଧ୍ୟକ୍ଷ:

କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମହାବିଦ୍ୟାଳୟ
ଭଞ୍ଜନଗର, ଗଞ୍ଜାମ ।

। ଶବ୍ଦେର୍ଶୀବନ ॥

Digitized by PPRACHIN, SOA

# ।। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଉପେନ୍ଦ୍ରୀୟ କାବ୍ୟ ଲକ୍ଷଣ ।।

—ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର

●

'ରସଲେଖା' କାବ୍ୟରେ କବି ଉପେନ୍ଦ୍ର ଭଞ୍ଜ ଉଲ୍ଲେଖ କରିଛନ୍ତି ଯେ ଓଡ଼ିଶାର ଗଜପତି ଶାସକ ଦିବ୍ୟସିଂହ ଦେବଙ୍କ ୧୭ ଅଙ୍କରେ ସେ ତାଙ୍କର ସେହି କାବ୍ୟ ରଚନା ସମ୍ପାଦନ କରିଥିଲେ ।

> "ଦିବ୍ୟସିଂହ ଗଜପତି ଅଙ୍କ ସପତ ବିଂଶତି
> ଶେଷ ଦିନେ ଶେଷ ଏହି ଗୀତ ।"

ଏଥିରୁ ଉପେନ୍ଦ୍ର ଭଞ୍ଜ ସପ୍ତଦଶ ଏବଂ ଅଷ୍ଟାଦଶ ଶତାବ୍ଦୀରେ ଓଡ଼ିଆ କାବ୍ୟ ସାହିତ୍ୟର ପ୍ରବର୍ତ୍ତକ ରୂପେ ଆବିର୍ଭୂତ ହୋଇଥିବାର ସ୍ପଷ୍ଟ ପ୍ରମାଣିତ ହୁଏ । ସଂଖ୍ୟାଧିକ କାବ୍ୟ କବିତାର ଜଣେ ରସିକ ସ୍ରଷ୍ଟା ଏବଂ ସମସାମୟିକ ସମାଜର ଜଣେ ପର୍ଯ୍ୟବେକ୍ଷକ ଭାବରେ କବି ଆଜି ଓଡ଼ିଆ ସାହିତ୍ୟରେ ଅସପନ୍ନ ଗୌରବ ତଥା ସିଦ୍ଧିର ଅଧିକାରୀ, କେବଳ ପରିମାଣ ଦୃଷ୍ଟିରୁ ନୁହେଁ, ଭାବ ବିଦଗ୍ଧତା ତଥା, ରସ ପରିବେଷଣ ଏବଂ ସମାଜରେ ତରୁଣ ତରୁଣୀ ଚରିତ୍ର ଉପସ୍ଥାପନ ବିସ୍ତୃତରେ କବିଙ୍କର ସାଧନା ଉଲ୍ଲେଖଯୋଗ୍ୟ । ଉପେନ୍ଦ୍ର କାବ୍ୟ-ଜଗତର ରସୋତ୍ତୀର୍ଣ୍ଣ ପରିପ୍ରକାଶ, ଏବଂ ତାର ସାନ୍ଦ୍ର ଭାବ ପ୍ରବଣତା ଆଜି ପାଠକମାନଙ୍କୁ ପ୍ରଭାବିତ ଏବଂ ଉଦ୍‌ବେଳିତ କରି ପାରିଛି । ତେବେ ତାଙ୍କ କାବ୍ୟ-କୃତିର ସଫଳତା ଏବଂ ଅପରିସୀମ ପ୍ରଭାବର ହେତୁ କ'ଣ ? ଉପେନ୍ଦ୍ର କାବ୍ୟ ଗୌରବର ପ୍ରକୃତ ଭିତ୍ତି ଭୂମି କ'ଣ ? ଏହି ପ୍ରଶ୍ନ ସାଧାରଣତଃ ଗବେଷକ ମାନଙ୍କୁ ଆକୃଷ୍ଟ କରିବାର କଥା । ସର୍ବାଦୌ ଉପେନ୍ଦ୍ର ଭଞ୍ଜ ତାଙ୍କର ମାନସ ସନ୍ତାନ କାବ୍ୟକୃତି ସମ୍ପର୍କରେ ବହୁ ସ୍ଥାନରେ ବହୁ ପ୍ରସଙ୍ଗରେ ବହୁ ଗୂଢ଼ ନିୟମ ଏବଂ କାବ୍ୟାଦର୍ଶ କଥା ଉଲ୍ଲେଖ କରିଥିଲେ । ତାଙ୍କର ପ୍ରତ୍ୟେକ କାବ୍ୟରେ ଏହିପରି କାବ୍ୟିକ ବ୍ୟାଖ୍ୟା ପରିଲକ୍ଷିତ ହୋଇଥାଏ । 'ଲାବଣ୍ୟବତୀ' କାବ୍ୟରେ କବି ଲେଖିଲେ ଯେ "ନାରିକେଳ ଯେ ରସପୂର । ଭକ୍ଷି ନ ପାରଇ ବାନର" କବିଙ୍କର ଏପରି ସର୍ତ୍ତିଆରୋପର ଉଦ୍ଦେଶ୍ୟ ବେଶ୍ ଅନୁମେୟ । କାବ୍ୟ ଶବ୍ଦ ଏବଂ ଅର୍ଥର ଗୌରବରେ ଅଧିଷ୍ଠିତ । ବିଶିଷ୍ଟ ପଦଚୟନ ଏବଂ ରଚନା ପୁଣି



Digitized by PPRACHIN, SOA

କାବ୍ୟର ମୁଖ୍ୟ ଗୁଣ ରୂପେ ଅବଲମ୍ବନ ଯୋଗ୍ୟ । "ଶବ୍ଦାର୍ଥୌ ସହିତୌ କାବ୍ୟମ୍" ଭାମହଙ୍କର ଏହି ଉକ୍ତି କାବ୍ୟ ଆଲୋଚନା ପ୍ରସଙ୍ଗରେ ସ୍ମରଣୀୟ, କାବ୍ୟ ରଚନାରେ ଶବ୍ଦ ଏବଂ ଅର୍ଥ ପରସ୍ପର ସହିତ ଶ୍ରଦ୍ଧାପୂର୍ଣ୍ଣ ଆସକ୍ତିରେ ବଦ୍ଧ୍ୟମାନ । ରସବୋଧ କାବ୍ୟର ମର୍ଯ୍ୟାଦାକୁ ବୃଦ୍ଧି କରେ ଏବଂ ଅଳଙ୍କାର ଯୋଜନା କବି କର୍ମର ଆହୁରି ଏକ ମୌଳିକ ଦିଗ । କାବ୍ୟର ସୌନ୍ଦର୍ଯ୍ୟ ତାର ଅଳଙ୍କାର ଏବଂ ଆଭ୍ୟନ୍ତରୀଣ ମୂଲ୍ୟବୋଧ ଉପରେ ଆଧାରିତ । ଦଣ୍ଡୀ ଅଳଙ୍କାରକୁ କାବ୍ୟର ଶୋଭା ବର୍ଦ୍ଧନକାରୀ ଧର୍ମ ରୂପେ ଗ୍ରହଣ କରିଥିଲେ । ତାଙ୍କ ପୂର୍ବରୁ ଭାମହ ଶବ୍ଦ ଏବଂ ଅର୍ଥର ବିଚ୍ଛିନ୍ନତାରେ ଅଳଙ୍କାର ସୃଷ୍ଟି ହୋଇଥିବାର ଘୋଷଣା କରିଥିଲେ । ଉପେନ୍ଦ୍ର ଭଞ୍ଜ ସମ୍ଭବତଃ କାବ୍ୟରେ ଆଲଙ୍କାରିକ ପ୍ରୟୋଗର ମର୍ଯ୍ୟାଦା ସମ୍ପର୍କରେ ଅବହିତ ଥିଲେ । ତାହା ହୋଇ ନ ଥିଲେ ଉପେନ୍ଦ୍ର ଭଞ୍ଜ କାହିଁକି 'ଲାବଣ୍ୟବତୀ' କାବ୍ୟରେ ଲେଖିଥାନ୍ତେ—

"ମୂର୍ତ୍ତିମନ୍ତ କରି ମୃଦୁଗୀତ ବିସ୍ତରଇ
ଏଣୁ କରିଥିବ ଅଳଙ୍କାର ଯୁକ୍ତ ହୋଇ ହେ
ପଦ ସରଳ ଧ୍ୱନିରେ ମାନସ ମୋହିବ
ଅର୍ଥୀ ଜନ ପ୍ରବରକୁ ଆନନ୍ଦ କରିବ ହେ ।

ଠିକ୍ ଏହି ସର୍ତ୍ତି କବି ତାଙ୍କର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଆରୋପ କରିଥିବାର ଜଣାଯାଏ ।

" ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ଯେହି ଯେନ ମୋ ଗ୍ରନ୍ଥ ।
ବ୍ୟସ୍ତ ଅଳଙ୍କାର
ମଣ୍ଡନ ବିଧି ନର୍ଦ୍ଦୋଷ ବିସ୍ତର
ଉତ୍ପ୍ରେକ୍ଷା ଉପମା ରୂପକ ଦିନ
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଯେନ
ଦର୍ଭି ଚ୍ୟୁତାକ୍ଷର ଉଦୟ କାହିଁ
ବୃଦ୍ଧ ସଂଖ୍ୟାବାନ ଆସ୍ୱତ୍ତି ନାହିଁ ।" (ଦ୍ୱାଦଶ ଗ୍ରନ୍ଥ)

× × ×

ପୁନଶ୍ଚ ସେହି କାବ୍ୟରେ କବି ଆଉ ଏକ କାବ୍ୟାଦର୍ଶର ସୂଚନା ଦେଇଛନ୍ତି । ତାଙ୍କ କାବ୍ୟର ପ୍ରଭାବ, ପରିସର ଓ ଲକ୍ଷଣ ଏହିପରି—

॥ ଶବ୍ଦୋଚ୍ଚାରନ ॥

Digitized by PPRACHIN, SOA

ଏ ତ ପରିକୃତ କାବ୍ୟ ଗ୍ରନ୍ଥ ପ୍ରାନ୍ତସ୍ଥ
ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛି ବିଶେଷତ
ଯେନ ନୈଷଧ ପରିସ୍ତେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରିଏ ।

ଚଳିତ ଓଡ଼ିଆ ଭାଷାରେ ଉପେନ୍ଦ୍ରଭଞ୍ଜ କାବ୍ୟ ଲେଖି ତାହାର ଆକାର ପ୍ରକାର ପ୍ରବୃତ୍ତି ଓ ଅଭିବ୍ୟକ୍ତି ସଂପର୍କରେ ଏହିପରି ବ୍ୟାଖ୍ୟା ପ୍ରଦାନ କରିଥିଲେ । କାବ୍ୟର ଶକ୍ତି ତଥା ସିଦ୍ଧି ଶବ୍ଦ ଚୟନ ସାପେକ୍ଷ ଏବଂ ଅର୍ଥଗତ ସୌନ୍ଦର୍ଯ୍ୟ ନିର୍ଭରଶୀଳ ।

"ନହେ ଉପେନ୍ଦ୍ରଭଞ୍ଜ ଉତ୍ତମ କବି ପୁଞ୍ଜ
ଦୁର୍ଲ୍ଲଭ ମାର୍ଗେ ମୋ ସଂଗୃର ।" (ଦ୍ୱାଦଶ ଗ୍ରନ୍ଥ-କୋ.ବ୍ର.ସୁ.)

ଶାବ୍ଦିକ ପାଣ୍ଡିତ୍ୟ ଏବଂ ଅଭିଧାନ ଗତ-ଶବ୍ଦ ଜ୍ଞାନ ଉତ୍ତମ କାବ୍ୟ ନିର୍ମାଣର ଏକ ବଳିଷ୍ଠ ଦିଗ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଏହି ଶାବ୍ଦିକ ଦକ୍ଷତା କଥା ବାରମ୍ବାର ଉଲ୍ଲେଖ କରାଯାଇଛି । କାବ୍ୟ ରଚନା କରିବା ପାଇଁ କବି ପକ୍ଷରେ ଯେଉଁ ଯେଉଁ ଶକ୍ତି ସାମର୍ଥ୍ୟ ରହିବା ଦରକାର । ସେଥିମଧ୍ୟରେ କବିର ଶବ୍ଦ ଜ୍ଞାନ ସର୍ବାପେକ୍ଷା ଅଧିକ ଏବଂ ଉପେନ୍ଦ୍ରଭଞ୍ଜ ଏହି ଶବ୍ଦ ଜ୍ଞାନରେ ଧୁରୀଣ ଥିବାର ଜଣାଯାଏ । କବିଙ୍କର ସ୍ୱୀକାରୋକ୍ତି ହେଉଛି—

'ତରଣିକୁଳର ସାର । ଆଶ୍ରୟକୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି ଶବଦ ସମୁଦ୍ର ପାର ।' (କୋ. ବ୍ର. ସୁ.)

କେବଳ ସେତିକି ନୁହେଁ କବି ତାଙ୍କର କାବ୍ୟ ଗ୍ରାହକ ଏବଂ ପାଠକ ମାନଙ୍କୁ ମଧ୍ୟ ସତର୍କ କରାଇ ଦେଇଛନ୍ତି; କବି କହନ୍ତି ଯେ ତାଙ୍କର କାବ୍ୟ କୃତିରେ ଅବଗାହନ କରି ରସାନୁପଯୋଗ କରିବାକୁ ହେଲେ ପାଠକର ତାଦୃଶ ଯୋଗ୍ୟତା ଥିବା ଆବଶ୍ୟକ ।

ଯଥା — "ନାନା ଶବଦରେ ଯେ ବିଚକ୍ଷଣ, ଯେହୁ ଜାଣେ ଅଲଙ୍କାର ଲକ୍ଷଣ
ସେହି କରୁ ଏ ଗ୍ରନ୍ଥ ବିବେଚନା । ବାଲ୍ୟ ପୌଗଣ୍ଡ ଯୌବନ ରଚନା ।"
(କୋ. ବ୍ର. ସୁ.)

ରୀତିବାଦର ପ୍ରବର୍ତ୍ତକ ବାମନାଚାର୍ଯ୍ୟ କାବ୍ୟରେ ଶବ୍ଦ ଏବଂ ଅର୍ଥର କମନୀୟତା ଉପରେ ଗୁରୁତ୍ୱ ଦେଇଥିଲେ । ଏହି ଶବ୍ଦ ଏବଂ ଅର୍ଥ ପ୍ରଖ୍ୟାପକ ରୀତି ହେଉଛି କାବ୍ୟର ଆତ୍ମା । ଉପେନ୍ଦ୍ରଭଞ୍ଜ କାବ୍ୟର ଶରୀର ଗଠନ ଗତ ଚମତ୍କାରିତା ପ୍ରତି ଯେତିକି ଅବହିତ ଥିଲେ । କାବ୍ୟର ଆତ୍ମାପ୍ରତି ସେତିକି ସଚେତନ ଥିଲେ କି ନାହିଁ ତାହା ବିଚାର କରିବାର କଥା, ତଥାପି "ବିଚାର କବିତ୍ୱମାର୍ଗେ ପ୍ରସରିଲା ବୁଦ୍ଧି


Digitized by PPRACHIN, SOA

ବରଚଲ ଗ୍ରମାସ୍ତଣ ଏ ମୋ ବଡ଼ ସିଦ୍ଧି ଯେ ।" ବୋଲି ଉପେନ୍ଦ୍ରଭଞ୍ଜ ଘୋଷଣା କରିଥିଲେ । ଉପେନ୍ଦ୍ରଭଞ୍ଜ ଯୁଗର ପ୍ରଭାବ ବଶତଃ ହେଉ କମ୍ବା ସ୍ୱକୀୟ କବିତ୍ୱର ବ୍ୟାଖ୍ୟା କରିବା ବାହାନାରେ ହେଉ ବରାବର କାବ୍ୟ ନିର୍ମାଣ କୌଶଳ ସମ୍ପର୍କରେ ନିଜର କୃତି ସମୂହରେ ବିବିଧ ପଙ୍କ୍ତି ଅଂଶ୍ରେପ କରିଥିଲେ । ବିଭିନ୍ନ କାବ୍ୟରେ ପ୍ରଦତ୍ତ ପଙ୍କ୍ତିଭିନ୍ନ ହେଲେହେଁ କାବ୍ୟର ପରିପାଟୀ ଉତ୍କର୍ଷ । ସୌନ୍ଦର୍ଯ୍ୟ ଏବଂ ସଫଳତା ପାଇଁ ତାହା ଉଦ୍ଦିଷ୍ଟ । କବି ସାରସ୍ୱତ ସାଧନାରେ ନିମଗ୍ନ ହେଲେହେଁ ପୂର୍ବସୂରୀମାନଙ୍କୁ ବରାବର ସ୍ମରଣ କରିଥିଲେ । ତାଙ୍କ କାବ୍ୟର ନକ୍ସା ପଦ୍ଧତି ଉପରି ପରମ୍ପରାଶ୍ରିତ ତାହା ସହଜରେ ଅନୁମେୟ ।

"ବାଲ୍ମୀକି ବ୍ୟାସ କବି ସନ୍ଧିରେ ମହାକାବ୍ୟକେ ପୁରାଣ କଲେ
ମହା ନାଟକ ବାତ ସୁତରେ ହେଲେ ରଚତା ଯେ,
ବହିଲେ କାବ୍ୟ ଯେ କାଳିଦାସ ଚମ୍ପୂ ରଚନା ଭୋଜ ନରେନ୍ଦ
କୃପାସିନ୍ଧୁ ଏ ଗୀତେ ପ୍ରକାଶ ଗ୍ରନ୍ଥିଲି ଚିନ୍ତା ଯେ ।"

ଉପେନ୍ଦ୍ରଭଞ୍ଜଙ୍କ କାବ୍ୟ ସାଧନାର ପୃଷ୍ଠ ଭୂମିରେ କି କି ପ୍ରେରଣା ନିହିତ ତାହାର ସୂଚନା ଅନ୍ତତଃ ଏହି ପଂକ୍ତିରୁ ଅନୁମେୟ—

"ତାରକ ମନ୍ତ୍ର ପରମାଦେ ମୋହର କବିପଣ ଉଦେ" କହିବା ଦାଗ୍ରୀ କବି ତାଙ୍କ ପ୍ରତିଭା ଓ କବିତ୍ୱର ବିକାଶ ପାଇଁ ଦୈବୀ ଶକ୍ତିର ଆଶୀର୍ବାଦ କଥା କହିଛନ୍ତି । 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ କବି ସାନ୍ଦ୍ର ରୂପ କାବ୍ୟଶୈଳୀ ହିଁ ଅନୁସରଣ କରିଛନ୍ତି । ପଞ୍ଚତିରିଶ ଛାନ୍ଦରେ ସମ୍ପୂର୍ଣ୍ଣ ଏହି କାବ୍ୟ ମୁଖ୍ୟତଃ ନାୟିକା-ପ୍ରଧାନ, ଅର୍ଥାତ୍ ଶୃଙ୍ଗାର ରସପ୍ରଧାନ ରଚନା, ଏବଂ କବିଙ୍କର ବିଭିନ୍ନ କାବ୍ୟରେ ଅନୁସୂତ ନାୟକ ନାୟିକା ପ୍ରସଙ୍ଗ ହିଁ ସନ୍ନିବିଷ୍ଟ, କାବ୍ୟରେ ନାୟିକା ଚମ୍ପାନଗରୀର କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ ଏବଂ ନାୟକ ପୁଷ୍ପପୁର ରାଜକୁମାର ପୁଷ୍ପକେତୁଙ୍କର ପ୍ରଧାନତଃ ପ୍ରେମ ପ୍ରସଙ୍ଗ ହିଁ ପ୍ରତିପାଦିତ । ନାରଦ ସବ ବିଦ୍ୟା ନିପୁଣ ପୁଷ୍ପକେତୁଙ୍କୁ ଆଶୀର୍ବାଦ କରି କହିଛନ୍ତି "ବୀଣା ଶ୍ରବଣେ ନାରଦ, ସନ୍ତୋଷ ହେଲେ ବରଦ । ହେଉ ତବ ମନୋ-ହାରୀ । ଦିବ୍ୟ ସୁନ୍ଦରୀ ଯେ ।" [୪ର୍ଥ ଛାନ୍ଦ ୩୯ ପଦ]

ଲାବଣ୍ୟବତୀ ଏବଂ ଚନ୍ଦ୍ରଭାନୁର ଯେଉଁ ପ୍ରକାର ରୂପ, ବୟସ ଏବଂ କାର୍ଯ୍ୟ କଳାପ ବର୍ଣ୍ଣିତ ଆଲୋଚ୍ୟ କାବ୍ୟରେ ସେହି ଶୈଳୀ ହିଁ କବି ଅନୁସରଣ କରିଛନ୍ତି । ଉଭୟ ନାୟକ ନାୟିକାଙ୍କର ପୂର୍ବଜନ୍ମ ବୃତ୍ତାନ୍ତ, ବୟସ ବୃଦ୍ଧି, ଯୌବନାଗମ, ତାର ବର୍ଣ୍ଣନା ଏବଂ କାବ୍ୟ କଥନର କେନ୍ଦ୍ର ଭୂମିରେ ଶୃଙ୍ଗାର ରସକୁ ଗର୍ଭିତ କରି କବି ପ୍ରସଙ୍ଗର ବିଳମ୍ବିତା ପାଇଁ ପ୍ରକୃତର କାଳିନକ ରସାଳ ବର୍ଣ୍ଣନା କରିଛନ୍ତି । କବିଙ୍କ ପ୍ରକୃତି ବର୍ଣ୍ଣନାର ଏକମାତ୍ର ଉଦ୍ଦେଶ୍ୟ ନାୟିକା ଏବଂ ନାୟକଙ୍କର ରୂପଜ



Digitized by PPRACHIN, SOA

ଉତ୍କର୍ଷ ଉପସ୍ଥାପନ କରିବା । ଏହି ବର୍ଣ୍ଣନା ସାଧାରଣତଃ ଶୃଙ୍ଗାର ଭାବ ଉଦ୍ରେକ କାରୀ ବର୍ଣ୍ଣନା । ଏହି ବର୍ଣ୍ଣନା ବିଶେଷତଃ ଶାବ୍ଦିକ ଗୁରୁତ୍ୱ ଓ ପଦ ଯୋଜନାର କାରୁକାର୍ଯ୍ୟ ଉପରେ ଆଧାରିତ । କବି ଯେ ବୈଦେହୀଶ ବିଳାସରେ ଲେଖିଥିଲେ "ବୁଦ୍ଧି ପ୍ରସରିଲା" ଏଥିରୁ ପ୍ରମାଣିତ ଯେ ବୌଦ୍ଧିକତା ହିଁ ତାଙ୍କର କାବ୍ୟ ବିବେଚନାର ମୂଳ ହେତୁ । ଏଥିରୁ ଅବଶ୍ୟ ଆବେଗ ପ୍ରବଣତା, ରସବୋଧ ବାଦ ପଡ଼ିନଥିଲା । "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟର ବିଭିନ୍ନ ଛାନ୍ଦରେ ଯଥା ନଗର ବର୍ଣ୍ଣନା, ନାୟକ ନାୟିକାଙ୍କର ରୂପଗୁଣ ବର୍ଣ୍ଣନା, ବସନ୍ତ ବର୍ଣ୍ଣନା, ନାୟିକାର ଯୌବନ ପ୍ରାପ୍ତି ବର୍ଣ୍ଣନା, ସୁନ୍ଦରୀର ବନ ବିହାର ବର୍ଣ୍ଣନା, ସୁନ୍ଦରୀର ବେଶ ବର୍ଣ୍ଣନା ସାକ୍ଷାତ ବର୍ଣ୍ଣନା, କ୍ରମଶଃ ବିରହ ମିଳନ ବର୍ଣ୍ଣନା ପ୍ରଭୃତି କାବ୍ୟକାରଙ୍କର କାବ୍ୟ ନିର୍ମାଣ କୌଶଳର ଅନୁରୂପ ପ୍ରତୀକ, କଳ୍ପନା, ଶବ୍ଦ ଯୋଜନା ଏବଂ ରସ ଲେଖ୍ୟ ହିଁ ତାଙ୍କ ବର୍ଣ୍ଣନା ପଦ୍ଧତିର ଏକ ଏକ ପାଦଚ୍ଛ । ବର୍ଣ୍ଣନାର ଅତିରଞ୍ଜନ କଳ୍ପନା ବିଳାସରେ ମାତ୍ରାଧିକ୍ୟ, ଉପେନ୍ଦ୍ରଙ୍କ ପ୍ରତ୍ୟେକ କାବ୍ୟରେ ପରିଲକ୍ଷିତ କୌଶଳ । ଏକ ଏକ ଶବ୍ଦର ବିଭିନ୍ନ ଅର୍ଥ ଏବଂ ବିଭିନ୍ନ ଅର୍ଥର ପୃଷ୍ଠଭୂମିରେ ପ୍ରସଙ୍ଗର ଅପୂର୍ବ ଅବତାରଣା, କବିଙ୍କ କାବ୍ୟ-ଗୁରୁତ୍ୱର ଲକ୍ଷଣ । ଉଦାହରଣ ସ୍ୱରୂପ ହାଟକ, ପୁନ୍ନାଗ, ସୁନାସୀ, କନକ, ଉଦ୍ଦୀପନ, ଆଲମ୍ବନ, ବିପ୍ରଲବ୍ଧା, ସମ୍ଭୋଗ, ସୁରଭି, ରମ୍ଭା, ମୁଦ୍ଗର, ଆଖିଚକୋର, ପ୍ରଭୃତି ପଦର ଲାକ୍ଷଣିକ ପ୍ରୟୋଗ କାବ୍ୟରେ ସର୍ବତ୍ର ପରିଦୃଷ୍ଟ ହୋଇଥାଏ । ଏତଦ୍ ବ୍ୟତୀତ ନାୟିକାର ବେଣୀ, କେଶ,ଶ୍ରବଣ,ନାସିକା କପୋଳ, ଅଧର,ନେତ୍ରଭ୍ରୂ, କଣ୍ଠ, ବାହୁ, ଉରଜ, ନାଭି, ତ୍ରିବଳୀ, କଟାକ୍ଷ, ଦଶନ, ଜଘନ, ଉରୁ, ନଖ, ରୋମାଳୀ, ଶ୍ରୋଣୀ, ଭାଲ, ସୀମନ୍ତ, ମଧ୍ୟଦେଶ, ପ୍ରଭୃତିର ବର୍ଣ୍ଣନା ମଧ୍ୟ ଯୁଗୀୟ କାବ୍ୟ ସମୂହର ଲକ୍ଷଣ, ଉପେନ୍ଦ୍ରଭଞ୍ଜ ମଧ୍ୟ ଏହି ଲକ୍ଷଣ ତାଙ୍କ କାବ୍ୟରେ ପାରମ୍ପରିକ ରୀତିରେ ପ୍ରୟୋଗ କରିପାରିଛନ୍ତି । ଏହାର ଉଦାହରଣ ସ୍ୱରୂପ "କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ"ରୁ କେତେକ ପଦ ଉଦାହୃତ ହୋଇପାରେ ।

ସୁଷମାକୁ ଉରରୁ କରଧିକ । ସୁଷମାକୁ ବଢ଼ାଇଲା ଅଧିକ ।
ପୁନ୍ନାଗ ପୂଗ ପରିୟେ ରଞ୍ଜନ । ପୁନ୍ନାଗ-ପୁଙ୍ଗ ଧୈର୍ଯ୍ୟ ବିଭଞ୍ଜନ ।
ହେଲା ସେ ସୁମନାଳୟ ଉଦୟ । ରସ—ବାସ କରି କଲା ହୃଦୟ ।
ବଳୀସଦନ ହୋଇଲା ଉଦର । ତ୍ରିଭୁବନ କରଞ୍ଜନ ଆଦର ।
ଅଙ୍କୁରିଇଲା ନୂତନ ରୋମାଳୀ । ସ୍ୱତ ପ୍ରଥମ-ରସ ବର୍ଣ୍ଣାବଳୀ ।
ଅତି ଶୋଭି ନାଭି ଏହି ପ୍ରକାର । ଧାତା ପ୍ରାନ୍ତେ ରଖିଅଛୁ ଠକାର ।
ଆଉ ବର୍ଣ୍ଣ ଚୂର୍ଣ୍ଣ କେଣେ ରଖିଲା । ଥିଲା ଅସ୍ତବ୍ୟସ୍ତ ସମେ ଲେଖିଲା ।
ହ୍ରସ୍ୱ ଦୀର୍ଘ ପ୍ଲୁତ କରି ଭ୍ରୂରୁରେ । କଲା ପ୍ରସ୍ତାର ଦେଖାଇ ଭ୍ରୂରେ ।
କଲା ନମ୍ରେ ପୃଥ୍ୱୀ ଚକ୍ରବର୍ତ୍ତୀ । ବେଗେ ଅବିବେକ ଗଲା ନିବର୍ତ୍ତି ।
କଲା ନୂପୁର ଭୂରକୁ ବାଜଣୀ । ଟିକାଡ଼ମ୍ବୁରୁରେ ଘଣ୍ଟି ସାଜଣୀ ।

॥ ଶହେ ଅଣଷଠି ॥

Digitized by PPRACHIN, SOA

ସଂସ୍କୃତ ଆଲଙ୍କାରିକ ଶାସ୍ତ୍ରରେ ନାୟିକାର ରୂପ ବର୍ଣ୍ଣନା ପାଇଁ ଏତାଦୃଶ ସୂଚନା ମଧ୍ୟ ପ୍ରଦତ୍ତ ।

"ବେଣୀ ଅଷ୍ମିଲ୍ଲ ସୀମନ୍ତ ଭାଲ ଶ୍ରବଣ ନାସିକା
କପୋଳାଧର ନେତ୍ର ଭ୍ରୂକଟାକ୍ଷ ଦଶନେତ୍ରସ୍ମିତ
କଣ୍ଠ ବାହୁ କରୋରଜନାଭ୍ୟୋ ମଧ୍ୟଂ ବଳୀତ୍ରୟଂ
ରୋମାଳି ଶ୍ରୋଣି ଜଂଘୋରୁ ଗତିକ୍ରମ ନଖଃ କ୍ରମାତ୍ ।"

ମଧ୍ୟଯୁଗୀୟ କାବ୍ୟରେ ଶୃଙ୍ଗାର ରସ ହିଁ ମୁଖ୍ୟ ଉପଜୀବ୍ୟ ରସ ଭାବରେ ସ୍ୱୀକୃତ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ଏହି ନିୟମର ବ୍ୟତିକ୍ରମ ନୁହେଁ । ଭଞ୍ଜଙ୍କ ସମସ୍ତ କାବ୍ୟ କବିତାରେ ଶୃଙ୍ଗାର ରସର ଏକ ସାର୍ବଜନୀନ ଆବେଦନ ତଥା ମାନ୍ୟତା ପ୍ରତିଫଳିତ ହୋଇପାରିଛି ଏବଂ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ମୁଖ୍ୟତଃ ଶୃଙ୍ଗାର ରସାତ୍ମକ । କାବ୍ୟର ପ୍ରାରମ୍ଭ ବିଚ୍ଛେଦତଃ ପରିସମାପ୍ତି ଏହି ରସ ଚର୍ଚ୍ଚାରେ ପରିକଳ୍ପିତ ।

"ଶୃଙ୍ଗହି ମନ୍ମଥୋ ଭେଦସ୍ତଦା ଗମନ ହେତୁକଃ
ଉତ୍ତମ ପ୍ରକୃତି ପ୍ରାୟୋ ରସଃ ଶୃଙ୍ଗାର ଇଷ୍ୟତେ ।"

ନାୟିକା କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଏବଂ ନାୟକ ପୁଷ୍ପକେତୁ ଏହାର ଆଲମ୍ବନ ବିଭାବ,ମେଘ, ଜୋତ୍ସ୍ନା, ମଳୟ,ଭ୍ରମର,କୋକିଳ, ଗ୍ରୀଷ୍ମ,ବର୍ଷା, ଏହାର ଉଦ୍ଦୀପନ ବିଭାବ ଏବଂ କାବ୍ୟର ଚଉତିରିଶ ଏବଂ ପଞ୍ଚତିରିଶ ଛାନ୍ଦରେ ବର୍ଣ୍ଣିତ ନାୟିକାର କଟାକ୍ଷ, ବିଷାଦ, ଅଙ୍ଗଗ୍ଲାନି ଗ୍ଲାନି ପ୍ରଭୃତି ଏହାର ଅନୁଭାବ । ଏତଦ୍ ବ୍ୟତୀତ ଉଗ୍ରତା, ଲଜ୍ଜା, ପ୍ରଭୃତି ଶୃଙ୍ଗାର ରସର ବ୍ୟଭିଚାରୀ ଭାବ । ରତି ଏହି କାବ୍ୟରେ ସ୍ଥାୟୀ ଭାବ । କବି ଉପେନ୍ଦ୍ର ଲାବଣ୍ୟବତୀ କାବ୍ୟରେ ଶୃଙ୍ଗାର ରସର ବର୍ଣ୍ଣନା କ୍ରମରେ ଯେପରି ସୂଚନା ଦେଇଛନ୍ତି ତାହା ଉଦାହରଣ ଯୋଗ୍ୟ ।

"ମୃଦୁଅଙ୍ଗୀ ଅଙ୍ଗିକାର ଏ ଭଙ୍ଗୀରୁ ଜାଣି
ନେଇ ଚନ୍ଦ୍ରକେ ପୂରନ୍ତ୍ୟ ନବେନ୍ଦ୍ରିୟ ପାଣି
ଖେଳ ହୋଇ କୋଳ କରି ଶ୍ରୀମୁଖ ଟେକିଲା
ଯୋଗ ଭଙ୍ଗୀ ଭଙ୍ଗୀସ୍ଥାନ ଅସ୍ତ ନ ରଖିଲା ।"

ଉପେନ୍ଦ୍ର ଭଞ୍ଜ ଯେ ତାଙ୍କ କାବ୍ୟ ସମୂହରେ ଶୃଙ୍ଗାର ରସକୁ ଏକ ପବିତ୍ର ସାମାଜିକ ଭୂମିକା ତଥା ଗୌରବ ପ୍ରଦାନ କରିଛନ୍ତି । ଏହା କବିଙ୍କର ସ୍ୱୀକାରୋକ୍ତିରୁ ସ୍ପଷ୍ଟ ପ୍ରତୀତ ହୋଇଥାଏ । ଯଥା —

।। ଶବ୍ଦେଷ୍ଟାଟିଏ ।।

Digitized by PPRACHIN, SOA

"ବିସ୍ତରଇ କରିବି ଉତ୍ତମ ଶୁଦ୍ଧ ଗୀତ
ରସସାର ଶୃଙ୍ଗାର ତହିଁରେ ହେବ ବ୍ୟକ୍ତ" (ର- ହାରାବଳୀ)

ପୂର୍ବାଚାର୍ଯ୍ୟମାନଙ୍କର 'ଶୃଙ୍ଗାରୀଚେତ୍ କବିଃ' ଏହି ନିର୍ଦ୍ଦେଶ ଉପେନ୍ଦ୍ରଙ୍କର କାବ୍ୟିକ ମନୋରଞ୍ଜନରେ ଯେପରି ସ୍ଥାନ ପାଇଛି । ସେଥିରେ ନାୟକ ନାୟିକାଙ୍କର ରତି ରସ ବର୍ଣ୍ଣନା ଏକ ଗମ୍ଭୀର ଦାୟିତ୍ୱବୋଧ ସୃଷ୍ଟି କରିପାରନ୍ତି । ଏହି ଦାୟିତ୍ୱ-ବୋଧ ସାମାଜିକ ସଚେତନାର ପ୍ରତୀକ ମାତ୍ର ଏବଂ ତାହା ପରକାଷ୍ଠା କବିଙ୍କର ବିଭିନ୍ନ କାବ୍ୟରେ ପରିଲକ୍ଷିତ ।

"ବିଦଗ୍ଧ ଶ୍ରୀରାମଚନ୍ଦ୍ର କହେ
ବନ୍ଧୁ ଜୀବନ ଥିବାର ଏ ଦେଖି
ବିଳାସିନୀ ନ କରିବି ଆନକୁ
ବୋଲି ଛୁଇଁ ଦୀପ-ହୁତାଶନକୁ
ବଇଦେହୀ କେଶୁ କାଢ଼ି କେତକୀ
ବର୍ଣ୍ଣି ଲିଖିତ ପୋଛି କସ୍ତୁରୀକି
ବଳନାହିଁ ଆନ ଆଜି ଯାଏ ତ
ବଳାଇବି ଜନ୍ମେ ଜନ୍ମେ ମୋ ଚିତ୍ତ
ବର ମଣ୍ଡପରୁ ଯିବ ବାହୁଡ଼ି
ବାଣ୍ଡୀବନ୍ଧେ ତୁମ୍ଭଙ୍କୁ ଥିବ ଲୋଡ଼ି ।"
(ବୈ. ବିଳାସ-୧୫ଛାନ୍ଦ)

କାମାତୁରା ସୂର୍ପଣଖା ପତ୍ନୀପ୍ରାଣ ରାମଚନ୍ଦ୍ରଙ୍କ ବ୍ରତ ଭ୍ରଷ୍ଟ କରିବା ପାଇଁ ଯେଉଁ ହାବଭାବ ପ୍ରଦର୍ଶନ କରିଥିଲା, ତାହା କବିଙ୍କ ଦୃଷ୍ଟିରେ ନିନ୍ଦନୀୟ । ଯଥା—

"ବସାଣି ଟେକି ଦେବାର କି ମନୋରମ
ବସଣି କରିବ ଯୁବ ଚିତ୍ତରେ ପ୍ରେମ
ବନ୍ଧକୀ ଜଙ୍ଘରୁ ଚେଳ ସ୍ଖଳିବାରଙ୍ଗ
ବନ୍ଧନରେ ଯତ୍ନେ ଇଚ୍ଛେ ମନ ମାତଙ୍ଗ
ବିଶିଷ୍ଟ ଭ୍ରୂରୁ କମ୍ପାଇ ଡୋଳା ଖେଳାଇ
ବିଶିଖ କମାଣେ ସିନ୍ଧି ବିନ୍ଧ ନ ଦେଇ
ବହୁରଙ୍ଗ ତାମ୍ବୂଳ ପଡ଼ଇ ଅଧରେ
ବହୁରଙ୍ଗ ରୂପା ମିଳେ ରାମ ପାଶରେ ।"

॥ ଛନ୍ଦେ ଏକଷଠି ॥

Digitized by PPRACHIN, SOA

ଏକ ପତ୍ନୀ ବ୍ରତାନୁଷ୍ଠ ରାମଚନ୍ଦ୍ରଙ୍କର ଉତ୍ତରରୁ ସମାଜରେ ସ୍ୱକୀୟ ପ୍ରେମର ଗୌରବ ଓ ପ୍ରତିଷ୍ଠା ଅନୁମେୟ ।

"ବୋଇଲେ ରଘୁନନ୍ଦନ ହେ ରମାବର
ବ୍ରତ ଆଚରଣ କେ ପତ୍ନୀ ମୋହର
ବିଶେଷେ ରତିରେ କେ ହୋଇବ ବଗ୍ଗର
ବଣିକ ଭାବରେ ତହିଁ ବଣିଜ କର
ବିଷ୍ଣୁପଦୀ ଜଳ କେତେ ନିର୍ମଳ ଘୋଷା
ବାରିଦ ଆବିଳ କଲେ ଗୃଡକ ଆଶା ।"

କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ଶବ୍ଦ, ଅର୍ଥ ଏବଂ ଅଳଙ୍କାରର ପ୍ରାଚୁର୍ଯ୍ୟ ଏବଂ ପ୍ରାବଲ୍ୟ ମଧ୍ୟରେ ଯେତିକି ଭାରାକ୍ରାନ୍ତ, ନାୟକ ନାୟିକାଙ୍କର ପ୍ରସଙ୍ଗ ବର୍ଣ୍ଣନା ସେହି ପରିମାଣରେ ଶୃଙ୍ଗାର କଳ୍ପନା ମଧ୍ୟରେ ବର୍ଣ୍ଣାଢ୍ୟ । ଏହାକୁ କିଛି କୁକ ଆଦି ରସାତ୍ମକ ଏବଂ ଅଶ୍ଳୀଳ ବୋଲି କୁହାଯାଇ ନପାରେ । ଭଞ୍ଜ କବିଙ୍କର ଆଦିରସ ବର୍ଣ୍ଣନାର ଏହାହିଁ ହେଉଛି କୌଶଳ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ଚଉତିରିଶ ଗୀତ ଅନୁଶୀଳନ କଲେ କବିଙ୍କର କାବ୍ୟରେ ଶୃଙ୍ଗାର ରସ ବର୍ଣ୍ଣନାର ସତର୍କତା ଏବଂ ସହୃଦୟତା ସ୍ପଷ୍ଟ ହୋଇଥାଏ ।

"କମଳିନୀ ବାସ ତହିଁ ହେଲା ଅନ୍ତରିତ
ଭାଜେ କୋଳ ଆଚରଣ ହୋଇଲି ଭୃଶିତ ଯେ
ଉନ୍ନତି ବିଶେଷ ପ୍ରସନ୍ନତା ଭଜେ ଯହୁଁ
କପୋତ କଣ୍ଠରୁ ଜାତ ହେଲା ହୁଁ ହୁଁ ହୁଁ ଯେ ।"

ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପଦ୍ମିନୀ ଜାତୀୟା, ତାର ଅଙ୍ଗରୁ ବସ୍ତ୍ର ଦୂର ହେଲା । ରତିଭାବ ଜାତ ହେବାରୁ ଆଲିଙ୍ଗନ ଅବସ୍ଥା ପ୍ରାପ୍ତ ହେଲା ଏବଂ ଏହାପରେ କପୋତ ପରି ହୁଁ ହୁଁ ହୁଁ ଶବ୍ଦ ଜାତ ହେଲା । କବି ଉପେନ୍ଦ୍ର ଭଞ୍ଜ ତାଙ୍କ କାବ୍ୟରେ ଯେଉଁ ଯେଉଁ ଲକ୍ଷଣ ଅନୁସରଣ କରିଛନ୍ତି, ସେଥି ମଧ୍ୟରେ ଆଦିରସ ବର୍ଣ୍ଣନା ଅନ୍ୟତମ । ମାତ୍ର ଏହା ସାମାଜିକ ଦାୟିତ୍ୱବୋଧ ଏବଂ ପାରିବାରିକ ଦାମ୍ପତ୍ୟ ଜୀବନର ଆଦର୍ଶ ପରିକଳ୍ପନା ଦ୍ୱାରା ସଂଯୋଜିତ ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଉପେନ୍ଦ୍ରଙ୍କ କାବ୍ୟ ପ୍ରତିଭାର ସମସ୍ତ ସଂକେତ ବହନ କରିଥିବାର ଜଣାଯାଏ ।

ମଧୁପାଟଣା,
କଟକ - ୧୩ ।

।।ଶହେ ବାଷଠି।।

Digitized by PPRACHIN, SOA

## ।। କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଶ୍ରୀ ଜଗନ୍ନାଥ ପ୍ରଶସ୍ତି ।।

ଶ୍ରୀଯୁକ୍ତ କ୍ଷୀରୋଦପ୍ରସାଦ ମହାନ୍ତି

●

ସ୍ମରଣାତୀତ କାଳରୁ ଆର୍ଯ୍ୟ ଭୂମିରେ ଯେଉଁ ଧାର୍ମିକ ଓ ସାଂସ୍କୃତିକ ଭାବଧାରାର ସ୍ରୋତ ପ୍ରବାହିତ ହୋଇ ଆସୁଛି , ତାହାର ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଆଲୋଚନା କଲେ; ସବୁର ମୂଳରେ ଜଗନ୍ନାଥ ଧର୍ମର ଉତ୍କର୍ଷତା ଉତ୍ତମ ରୂପେ ପରିଲକ୍ଷିତ ହୁଏ । ସେହି ପରମ୍ପରାରେ ଭାରତର ପ୍ରତ୍ୟେକ ପ୍ରାଚୀନ ସାହିତ୍ୟ, ଅଲ୍ପାଧିକେ ପୁରୁଷୋତ୍ତମ ଜଗନ୍ନିଧି ଶ୍ରୀ ଜଗନ୍ନାଥଙ୍କର ପ୍ରଶସ୍ତିଗାନ କରିବାକୁ ଭୁଲି ନାହାନ୍ତି । ପ୍ରାଚୀନତମ ପୁରାଣ ଶାସ୍ତ୍ର ମାନଙ୍କରୁ ମଧ୍ୟ ଏହି ପରମ୍ପରା ବାଦ୍ ଯାଇନ । ଏହି ଦୃଷ୍ଟିରୁ ପ୍ରାଚୀନ ସଂସ୍କୃତ ସାହିତ୍ୟକୁ ଆଲୋଚନା ପ୍ରସଙ୍ଗକୁ ଆଣିଲେ ପୁରୁଷୋତ୍ତମ କ୍ଷେତ୍ର ବହୁ ସ୍ଥାନରେ ଭୂସ୍ୱର୍ଗ, ମୁକ୍ତିଧାମ ବୋଲି ବର୍ଣ୍ଣିତ ହୋଇଥିବା ଜଣାଯାଏ । 'କପିଳ ସଂହିତା' ରଚନା କାଳକୁ ପୁରୁଷୋତ୍ତମ ଜଗନ୍ନାଥ ଓ ପୁରୁଷୋତ୍ତମ କ୍ଷେତ୍ର ପୁଣି ସମଗ୍ର ଭାରତ ବର୍ଷରେ ଶ୍ରେଷ୍ଠ ସ୍ଥାନ ଲାଭ କରିଥିଲା ।

''ସର୍ବେଷାଂ ସର୍ବ କ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମଃ
ସର୍ବେଷାଂ ସର୍ବ ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ ।''

କେବଳ ସେତିକି ନୁହେଁ, ଶ୍ରୀହର୍ଷଙ୍କର 'ନୈଷଧ ଚରିତ' ପ୍ରଭୃତି କାବ୍ୟାଲଂକାର ଗ୍ରନ୍ଥରେ ମଧ୍ୟ ପୁରୁଷୋତ୍ତମ ପ୍ରଶସ୍ତି ବହୁପରିମାଣରେ ଦେଖାଯାଏ । ସେହି ପରମ୍ପରାକୁ ଉଜ୍ଜୀବିତ ରଖି ପ୍ରାଚୀନ ଉତ୍କଳୀୟ କବିଗଣଙ୍କ ମଧ୍ୟରୁ ସଜନୀ ଚଉତିଶାକାର, ଶୂଦ୍ରମୁନି ସାରଳା ଦାସ, ପଞ୍ଚସଖା ପ୍ରଭୃତି ସମସ୍ତ ପ୍ରତିଷ୍ଠିତ କବି ମଣ୍ଡଳୀ ଜଗନ୍ନାଥଙ୍କ ପ୍ରଶସ୍ତିକୁ ଗୁରୁତ୍ୱପୂର୍ଣ୍ଣ ଭାବେ ବର୍ଣ୍ଣନା କରିଅଛନ୍ତି । ଯଦ୍ୱାରା; ସେମାନଙ୍କର କାବ୍ୟ ବିଭବ ଜଗନ୍ନାଥ ପ୍ରଶସ୍ତିରେ ଗୌରବ ମଣ୍ଡିତ ହୋଇ ପାରିଛି । ଅର୍ଜ୍ଜୁନ ଦାସଙ୍କ' ରାମ ବିଭା', ନରସିଂହ ସେଣଙ୍କ 'ପରିମଳା', ଶିଶୁ ଶଙ୍କରଙ୍କ'ଉଷାଭିଳାଷ',ପ୍ରତାପରାୟଙ୍କ'ଶଶିସେଣା', କାର୍ତ୍ତିକ ଦାସଙ୍କ 'ରୁକ୍ମିଣୀବିଭା',

।। ଶରେ ରେଳପଟି ।।

Digitized by PPRACHIN, SOA

ପ୍ରାର୍ଥୀ ଶ୍ରୀଚନ୍ଦନଙ୍କ 'କଳାବତୀ', ବିଷ୍ଣୁଦାସଙ୍କ 'ପ୍ରେମଲୋଚନା', ଦେବ ଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ', ଗୋବିନ୍ଦଦାସଙ୍କ 'ଗୋପୀଚନ୍ଦନ' ଧନଞ୍ଜୟ ଭଞ୍ଜଙ୍କ 'ଅନଙ୍ଗ ରେଖା', 'ରଘୁନାଥ ବିଳାସ', ଦନେଇ ଦାସଙ୍କ 'ଗୋପୀଭାଷା', କହ୍ନାଇ ଖୁଣ୍ଟିଆ, ମାଧବୀ ଦାସୀ, ନରସିଂହ ପଟ୍ଟନାୟକ, ଈଶ୍ୱର ଦାସ, ରଘୁ ଦାସ, କବିସୂର୍ଯ୍ୟ ବଳଦେବ ରଥ ପ୍ରମୁଖଙ୍କ ସାହିତ୍ୟରେ ନାନା ଭାବରେ ଶ୍ରୀଜଗନ୍ନାଥଙ୍କ ପ୍ରଶସ୍ତି ପ୍ରକାଶିତ ହୋଇଥିଲେହେଁ, ସେମାନଙ୍କ ମଧ୍ୟରୁ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଜଗନ୍ନାଥ ପ୍ରଶସ୍ତି ଓ ମୁସଲମାନ୍ କବିଭକ୍ତ ଶ୍ରେଷ୍ଠ ସାଲବେଗଙ୍କର, ରଚନା ସମୂହ ଉତ୍କୃଷ୍ଟ ପରି ମନେହୁଏ । ସେଥିରେ ପୁଣି ଯବନ କବି ସାଲବେଗଙ୍କ ଭକ୍ତି ମୂଳକ ଜଗନ୍ନାଥ ପ୍ରଶସ୍ତିଠାରୁ ଭଞ୍ଜକବିଙ୍କର ରଚନା ଅଧିକ ତତ୍ତ୍ୱମୂଳକ ହୋଇଅଛି । ଉପେନ୍ଦ୍ର ଭଞ୍ଜଙ୍କର ଜଗନ୍ନାଥ ପ୍ରଶସ୍ତି ଅଧିକ ତତ୍ତ୍ୱମୂଳକ ହେବାରେ ଗବେଷକ ତଥା ଶ୍ରୀମନ୍ଦିରର ପୁରାଣ ମୁଖ୍ୟପଣ୍ଡିତ ସଦାଶିବରଥ ଶର୍ମା ଦୁଇଗୋଟି କାରଣ ଦର୍ଶାଇଛନ୍ତି । ତାହା ହେଉଛି, ପ୍ରଥମତଃ ଉପେନ୍ଦ୍ରଙ୍କର ସଂସ୍କୃତ ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଲାଭ । ସେଥିପାଇଁ ପୌରାଣିକ ଆଖ୍ୟାୟିକା ମାନଙ୍କର ନିର୍ଯ୍ୟାସ ତାଙ୍କର ଉକ୍ତି ବୈଚିତ୍ର୍ୟ ମୂଳକ ରଚନାରେ ପ୍ରବେଶ କରିଥିଲା । ଦ୍ୱିତୀୟତଃ, ଭଞ୍ଜ ବଂଶର ପ୍ରତୀକ ରଘୁକୁଳ ତିଳକ ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କର ପ୍ରତିମୂର୍ତ୍ତି ସ୍ଥାପିତ ହୋଇ-ଥିବାରୁ ଓ ଜଗନ୍ନାଥ ମନ୍ଦିର ସେବା ପୂଜା ସଙ୍ଗେ ନାନା ଭାବରେ ସଂପୃକ୍ତ ହୋଇଥିବା ହେତୁ ପୁନଶ୍ଚ ଉପେନ୍ଦ୍ର ଭଞ୍ଜ ପୁରୀର ରଘୁନାଥ ମଠରେ ବିଖ୍ୟାତ ତତ୍ତ୍ୱଜ୍ଞ ବିଶ୍ୱନାଥ ମହାସୁଆରଙ୍କ ସଙ୍ଗତରେ ବହୁକାଳ ଅତିବାହିତ କରିଥିବାରୁ ତାହାଙ୍କର ଜଗନ୍ନାଥ ମନ୍ଦିରର ବ୍ୟାବହାରିକ ରୀତିନୀତି ସମ୍ବନ୍ଧୀୟ ଅଭିଜ୍ଞତା ମଧ୍ୟ ଆସିଯାଇଥିଲା । ସଂସ୍କୃତ ପୁରାଣ ଓ କାବ୍ୟମାନଙ୍କରେ ନୀଳାଦ୍ରିନାଥ ଓ ପୁରୁଷୋତ୍ତମ କ୍ଷେତ୍ରର ଉତ୍ପତ୍ତି ବ୍ୟାପକତା ଓ ତାଙ୍କର ସେବା, ପୂଜାବିଧି, ବିବିଧ ଯାତ୍ରା ସମ୍ବନ୍ଧରେ ଯେ ବର୍ଣ୍ଣନା ରହିଛି, ସେ ସେଥିର ମଧ୍ୟ ଉପେନ୍ଦ୍ର ସମ୍ୟକ୍ ଜ୍ଞାନ ଲାଭ କରିପାରିଥିଲେ ।

ଆଲୋଚ୍ୟ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ପ୍ରଣୟ କାବ୍ୟର ପ୍ରଥମ ଛାନ୍ଦରେ କବି ଶ୍ରୀ ଜଗନ୍ନାଥଙ୍କର ପଦ ବନ୍ଦନା କରିଛନ୍ତି । ସେ କେବଳ ଜଣେ ସାଧାରଣ ଭକ୍ତ ଭାବରେ ନୁହେଁ ବରଂ ଜଣେ ପ୍ରକୃତ ଓଡ଼ିଆ କବି ହିସାବରେ ଓଡ଼ିଶାର ଚିର ଆରାଧ୍ୟ ଦେବ ଶ୍ରୀ ଜଗନ୍ନାଥଙ୍କୁ ଭାରତୀୟ ଧର୍ମ ଚେତନାର ଊର୍ଦ୍ଧ୍ୱରେ ଅବସ୍ଥାପିତ କରିବାର ପରିକଳ୍ପନା କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ଈଶ୍ୱର ଭକ୍ତିର ଅଭାବ ନାହିଁ । ସମସ୍ତ ଦୃଷ୍ଟାନ୍ତ ଦର୍ଶାଇବାକୁ ଗଲେ ଭଞ୍ଜ-ସାହିତ୍ୟର ବହୁଳାଂଶ ଏ ଦିଗରେ ବ୍ୟୟିତ ହେବ । କବିଙ୍କ ବିଖ୍ୟାତ କାବ୍ୟ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ'ରେ



Digitized by PPRACHIN, SOA

ଶ୍ରୀ ଜଗନ୍ନାଥଙ୍କ ପ୍ରଶସ୍ତି ବହୁ ବ୍ୟାପକ । କବିଙ୍କର ସାହିତ୍ୟ ସାଧନା ପନ୍ଥରେ ଯେଉଁ ଅର୍ଥପୂର୍ଣ୍ଣ ଭୂମିକା ରହିଛି, ସେଥିପାଇଁ କାବ୍ୟ ସାଧନାର ମାର୍ଗ ରୂପେ ସେ ପାଣ୍ଡିତ୍ୟକୁ ବରଣ କରିଦେଇଥିଲେ ହେଁ ଅନେକ ସମୟରେ ତାଙ୍କ କାବ୍ୟ ଅତ୍ୟନ୍ତ ଉଚ୍ଛ୍ୱଳ-ଭକ୍ତି ରସର ତରଙ୍ଗରେ ଉଦ୍‌ବେଳିତ ହୋଇ ଉଠିଛି ।

କବି 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଶ୍ରୀକ୍ଷେତ୍ରର ଏକ ଆଲଙ୍କାରିକ ବର୍ଣ୍ଣନା ପ୍ରଦାନ କରି ଜଗନ୍ନାଥଙ୍କ ପ୍ରଶସ୍ତି ଗାନ କରିଛନ୍ତି ।

"ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣ ଦେଖି ତେଣୁ ସେହି ନାମ ହେ ।

× × ×

ଶ୍ରୀ ମହାପ୍ରସାଦ ଗଦ ପଦ ଘଣ୍ଟ ଘୋଷ ।
ଭକ୍ଷଣେ ଶ୍ରବଣେ ଯେ କଲ୍‌ବିଷ ବଟନାଶ ହେ ॥
ଉନ୍ନତ ପ୍ରାସାଦ ରାଜ ପତାକା ଉଡ଼ାଇ ।
ଏ ପ୍ରଦେଶେ ସମବର୍ତ୍ତୀ ଗଠଣ ନାହିଁ ନାହିଁହେ । ୧ ।

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଆଦ୍ୟ ଛାନ୍ଦରେ ଶ୍ରୀ ଜଗନ୍ନାଥ କ୍ଷେତ୍ରର ମାହାତ୍ମ୍ୟ ଠାରୁ ଆରମ୍ଭ କରି ଶ୍ରୀଜଗନ୍ନାଥଙ୍କ ଦେବସ୍ନାନ ପୂର୍ଣ୍ଣିମା ଦିନ ସ୍ନାନ ମଣ୍ଡପକୁ ପହଣ୍ଡି ବିଜେ, ସ୍ନାନ ଯାତ୍ରା, ହାତୀବେଶ ପର୍ଯ୍ୟନ୍ତ ଅତ୍ୟନ୍ତ ଚିତ୍ତାକର୍ଷକ ଭାବେ ବର୍ଣ୍ଣିତ ହୋଇଅଛି; ତାହାକୁ 'ବୃହତ୍ ସ୍କନ୍ଦ ପୁରାଣୋକ୍ତ' ପୁରୁଷୋତ୍ତମ ପ୍ରଶସ୍ତିର ଗୋଟିଏ ସଂକ୍ଷେପ ସଂସ୍କରଣ କୁହାଯାଇପାରେ । ସେହି ସ୍ଥାନରେ ସ୍ୱଳ୍ପତା ମଧ୍ୟରେ ଭକ୍ତକବି ପୁରୁଷୋତ୍ତମ ମହାତ୍ମ୍ୟ, ଜଗନ୍ନାଥ ତତ୍ତ୍ୱ ଅର୍ଥ ରହସ୍ୟ ତଥା ଜ୍ୟେଷ୍ଠ ଯାତ୍ରା ସ୍ନାନ ଯାତ୍ରାର ଯେଉଁ ବର୍ଣ୍ଣନା ଦେଇଛନ୍ତି,/ ତାହା ବାସ୍ତବିକ ଲକ୍ଷ୍ୟ କରିବାର କଥା ।୨।

ସ୍ନାନଯାତ୍ରା, ଶ୍ରୀ ଗୁଣ୍ଡିଚା ଯାତ୍ରାର ଅଧିବାସ ସମ୍ବନ୍ଧୀୟ ଯାତ୍ରା । ଗୁଣ୍ଡିଚା ବା ରଥଯାତ୍ରାରେ ଉଦ୍ଦିଷ୍ଟ ଦେବବିଗ୍ରହଙ୍କର ନାମ 'ବାମନ' ହୋଇଥାଏ । ଏହା

---

୧ । କୋ: ବ୍ର: ସୁ: ୧ମ ଛାନ୍ଦ : ୧ମ/୭ମ/୮ମ ପଦ ।
୨ । ଉପେନ୍ଦ୍ର ଭଞ୍ଜ ଓ ଶ୍ରୀ ଜଗନ୍ନାଥ ପ୍ରଶସ୍ତି ; ଶ୍ରୀ ସଦାଶିବ ରଥଶର୍ମା
(ଭକ୍ତ-ପ୍ରଭା—୧୯୬୩)



Digitized by PPRACHIN, SOA

ଶାସ୍ତ୍ର ସମ୍ମତ । ଏହି ଶାସ୍ତ୍ରୋଚିତ ରହସ୍ୟଭେଦ କରିବାକୁ ଯାଇ ନୈଷଧକାର ଶ୍ରୀହର୍ଷ ସ୍ନାନଯାତ୍ରା କ୍ରମରେ ଭଗବାନଙ୍କୁ ମଧୁସୂଦନ ନାମ, ସ୍ତୂପ ବା ଚନ୍ଦନ ଯାତ୍ରା ପାଇଁ ପ୍ରସିଦ୍ଧ ବୋଲିସ ୍ୱ୍ରଗୁଇଛନ୍ତି—

"ଦୋଳେ ଚ ଦୋଳ ଗୋବିନ୍ଦଂ, ସ୍ତୂପେ ଚ ମଧୁସୂଦନଂ
ରଥେଚ ବାମନଂ ଦୃଷ୍ଟ୍ୱା, ପୁନର୍ଜନ୍ମ ନ ବିଦ୍ୟତେ ।୩।"

ଏହିଠାରେ ଉକ୍ତ ପ୍ରସଙ୍ଗ ଆଲୋଚିତ ହେବାର କାରଣ ଭକ୍ତ କୋଟି-ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଜଗନ୍ନାଥଙ୍କୁ ଦକ୍ଷିଣକୁଞ୍ଜର ଓ ବଳରାମଙ୍କୁ ଐରାବତ ନାମକ ହସ୍ତୀଙ୍କର ଶୋଭା ମଧ୍ୟଦେଇ ବର୍ଣ୍ଣନା କରିଅଛନ୍ତି । ୪ । ଦକ୍ଷିଣ କୁଞ୍ଜର କୃଷ୍ଣବର୍ଣ୍ଣ ଓ ସେ ବାମନ ନାମରେ ବିଦିତ । ଏତଦ୍ବ୍ୟ ପ୍ରକାରାନ୍ତରେ ଉକ୍ତକବି ସ୍ନାନଯାତ୍ରାର ଶ୍ରୀଜଗନ୍ନାଥଙ୍କୁ ବାମନ ସମ୍ବୋଧନ କରି ଶାସ୍ତ୍ର ପରମ୍ପରାକୁ ବଜାୟ ରଖିଥିବାରୁ, ପୁନଶ୍ଚ ସ୍ନାନ ବିସ୍ତାର ପ୍ରଥା ପ୍ରଚଳିତ କ୍ରମ ଅକ୍ଷୁର୍ଣ୍ଣ ରଖିଥିବାରୁ ଏବଂ ପରିଶେଷରେ ସେ ସ୍ନାନ ଯାତ୍ରାରେ ବିରାଜମାନ ଥିବା ଦେବ ବିଗ୍ରହଙ୍କୁ କାମନା କଳ୍ପବୃକ୍ଷ ନାମରେ ଅଭିହିତ କରିଥିବାରୁ କବି ସମ୍ରାଟ ଯେ ଜଗନ୍ନାଥ ତତ୍ତ୍ୱ ଦିଗରେ କେତେ ଅଭିଜ୍ଞ ଥିଲେ, ଏହା ଉତ୍ତମ ଭାବେ ଜଣାପଡେ । ତତ୍ତ୍ୱ ସଙ୍ଗେ ସଙ୍ଗେ ଉପେନ୍ଦ୍ର ସ୍ୱ ଶାସ୍ତ୍ର ଜ୍ଞାନର ପରିଚୟ ପ୍ରଦାନ କରିଛନ୍ତି । ୫ । ପହଣ୍ଡି ହେଲାବେଳେ ଦେବବିଗ୍ରହମାନେ ବଉଳ କାଠର ସେନାପଟା ନାମକ ଆବରଣ ଓ ଝଣ୍ଟୁଆ ବସ୍ତ୍ର ସର୍ବାଙ୍ଗରେ ପରିଧାନ କରିଥାନ୍ତି । ଏହି ସୁଯୋଗରେ ଭକ୍ତ ଜଗନ୍ନାଥଙ୍କୁ କଳ୍ପବୃକ୍ଷ ସଙ୍ଗେ ତୁଳନା କରିଛନ୍ତି ବୋଲି ମନେହୁଏ ।

କଳ୍ପବୃକ୍ଷ ଶ୍ରୀକ୍ଷେତ୍ରର ପୁରାଣ ପ୍ରସିଦ୍ଧ କଳ୍ପବଟକୁ ବୁଝାଏ । ତାହାର ମୂଳରେ କରୁଣାଖ୍ୟ ଜଳଥିବା କଥା ସ୍କନ୍ଦପୁରାଣାଦି ପ୍ରକାଶ କରିଛନ୍ତି । ସେହି ମହିମାମୟ କଳ୍ପବୃକ୍ଷଙ୍କ ସଙ୍ଗେ ତୁଳନା କରିଭକ୍ତ ଯଥାର୍ଥରେ କହିଛନ୍ତି ଯେ, "କଳ୍ପବୃକ୍ଷରେ ବଲ୍କଳ ଥିଲା ପ୍ରାୟେ ଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ସେନପଟା ବଲ୍କଳର ଆସନରେ ସମାସୀନ ଓ କଳ୍ପତରୁର ପାଦଦେଶରେ କାରୁଣ୍ୟର ଜଳଥିଲା ପ୍ରାୟେ ମହା ବିଷ୍ଣୁଙ୍କ ପଦାଶ୍ରରେ ସ୍ରୋତସ୍ୱିନୀ ଅମନ୍ଦ ମନ୍ଦାକିନୀ ସ୍ୱର୍ଗ ଗଙ୍ଗା ବିରାଜମାନ

---

୩ । ଶ୍ରୀ ହର୍ଷ 'ନୈଷଧ ଚରିତ' – ୧୫/୮୯

୪ । କୋ :ବ୍ର: ସୁ: ୧ମ ଛାନ୍ଦ - ୩୦/୩୧ ପଦ ।

୫ । କୋ. ବ୍ର. ସୁ. ୧ମ ଛାନ୍ଦ - ୫୨/୫୩ ପଦ ।

॥ ଶହେଛଷଠି ॥

Digitized by PPRACHIN, SOA

କରିଛନ୍ତି: ସେ ସଦା ସର୍ବଦା ପ୍ରବାହିତା । କଳ୍ପବୃକ୍ଷ ମୂଳ ସୁରଭି (କାମଧେନୁ) ମାନଙ୍କର ପୁଣି ଆଶ୍ରୟସ୍ଥଳ । ତେଣୁ କାମଦ ସ୍ତବରେ ଉଭୟେ ସମାନ । ଏହି ସାମାନ୍ୟ ଗୋଟିଏ ପଦରେ କେତେ ଗୂଢ଼ ତତ୍ତ୍ୱର ସେ ଆଲୋଚନା କରିଯାଇଛନ୍ତି । ଏହାହିଁ ପାଠକର ଚିନ୍ତା ସାପେକ୍ଷ ।

ବର୍ତ୍ତମାନ ସ୍ନାନଯାତ୍ରା ବିଷୟ ଆଲୋଚନା କଲେ ଜଣାଯାଏ ଯେ, କମ୍ବୁକଣ୍ଟକର ରାଜା ଶ୍ରୀଜଗନ୍ନାଥ ଚତୁର୍ବର୍ଣ୍ଣ : ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏବଂ ଧର୍ମ, ଅର୍ଥ, କାମ, ମୋକ୍ଷ : ଚତୁର୍ବର୍ଗ ପ୍ରଦାନ କରିବାକୁ ସମର୍ଥ ଅଟନ୍ତି । ତେଣୁ, ସେଥିପାଇଁ କୁହାଯାଇଛି:—ସେ କମ୍ବୁକଣ୍ଟକ ରାଜା ନାମ ଜଗନ୍ନାଥ,,

ଚତୁର୍ବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ । ୬ ।

ତାଙ୍କର ପରମ ପବିତ୍ର ଶ୍ରୀକ୍ଷେତ୍ର ହେଉଛି କ୍ଷେତ୍ରମାନଙ୍କ ମଧ୍ୟରେ ନରେନ୍ଦ୍ର ସଦୃଶ । ଯାହାକୁ, କବି କ୍ଷେତ୍ର ନରେନ୍ଦ୍ର, ବୋଲି ବର୍ଣ୍ଣନା କରିଛନ୍ତି । ୭ । କାରଣ, ବିଷ ବୈଦ୍ୟ (କେଳା) ଯେପରି ସର୍ପବିଷକୁ ନଷ୍ଟକରେ ନିଜର ଗଦ ଦ୍ୱାରା, ଠିକ୍ ସେହିପରି ଏ କ୍ଷେତ୍ର ବିଷ-ପୂରୁଷମାନଙ୍କର ପାପ ନାଶ କରିବାପାଇଁ ସମର୍ଥ । ଶ୍ରୀ ମହାପ୍ରସାଦ, ଯାହାକୁ ଆଚଣ୍ଡାଳ ଏକତ୍ର ଭୁଞ୍ଜନ୍ତି, ତାହାର ଭକ୍ଷଣରେ ଓ ମହାପ୍ରଭୁଙ୍କ ଘଣ୍ଟନାଦ ଶ୍ରବଣରେ ସମସ୍ତ ପାପତାପ ନଷ୍ଟ ହୋଇଯାଏ । ଏହି ପରମପାବନ ପବିତ୍ର କ୍ଷେତ୍ରର ଇଷ୍ଟଦେବ ଶ୍ରୀ ଜଗନ୍ନାଥ ପାପୀଗଣଙ୍କ ଉଦ୍ଧାର କରିବାପାଇଁ ସ୍ୱୟଂସ୍ନାନ ଓ ଗୁଣ୍ଡିଚା ଯାତ୍ରାରେ ବିଜେ କରନ୍ତି । ପାପୀ ମାନଙ୍କପାଇଁ ଶ୍ରୀ ମହାପ୍ରସାଦ ରୂପକ ଗଦ ଭକ୍ଷଣରେ ଏବଂ ଘଣ୍ଟା ଧ୍ୱନିରୂପକ ମନ୍ତ୍ର ଧ୍ୱନି ଶ୍ରବଣରେ ପାପ ବିଷ ଖଣ୍ଡନ ହୁଏ । ୮ ।

ଜ୍ୟେଷ୍ଠ ପୂର୍ଣ୍ଣିମାର ପୂର୍ବଦିନ ରାତ୍ରି ପାହାନ୍ତାରୁ ସେବକମାନେ ଆନନ୍ଦରେ ମହାପ୍ରଭୁଙ୍କ ପାଖରେ ମିଳନ୍ତି । ସିଂହଦ୍ୱାର ହରି ହରି ଧ୍ୱନିରେ ପ୍ରକମ୍ପିତ ହୁଏ । ଶ୍ରୀ ଠାକୁରଙ୍କ ବିଜୟ ନିମିତ୍ତ ପାଟମୁଣ୍ଡୁଳାଦି ପଡ଼େ । ମେଘା, ମୃଦଙ୍ଗ, ମର୍ଦ୍ଦଳ ସାଙ୍ଖ, ଝାଞ୍ଜି ଭେରୀ, ପଟହ, ଖଞ୍ଜଣି ପ୍ରଭୃତି ବାଦ୍ୟରେ ଶ୍ରୀମନ୍ଦିର ଉଚ୍ଛୁଳି ଉଠେ । ମୋ ଉପରେ ଜଗନ୍ନାଥ ବିଜେ କରିବେ ଏହା ଭାବି ଧରଣୀରାଣୀ

୬) କୋ. ବ୍ର. ସୁ. ଗ୍ରନ୍ଥ ୧ମ, ପଦ-୧୨ ।
୭) କୋ ବ୍ର, ସୁ. ଗ୍ରନ୍ଥ ୧ମ, ୫ମ-ପଦ ।
୮) କୋ. ବ୍ର. ସୁ. ଗ୍ରନ୍ଥ ୦ମ, ୭ମ-ପଦ ।



Digitized by PPRACHIN, SOA

ଗଂଗୁମୃଦା ଧରଣୀ ଆନନ୍ଦିତା ହୁଏ । ଏହି ସମୟରେ ଉର୍ଦ୍ଧିଷ୍ଟ ଦେବ ବିଗ୍ରହମାନଙ୍କର ନାମ ଯଥାକ୍ରମେ ମଧୁସୂଦନ ଓ ବାମନ ହୋଇଥାଏ । ଏହା ଶାସ୍ତ୍ର ସମ୍ମତ । ଉକ୍ତ ଶାସ୍ତ୍ରୋଚିତ ପ୍ରମାଣ, ପୂର୍ବରୁ ବର୍ଣ୍ଣିତ ହୋଇସାରିଛି ।

ହସ୍ତୀ ଯେପରି ଗୁହା ଗୁଡ଼ି ପୁଷ୍କରିଣୀରେ ସ୍ନାନ କରିବାକୁ ଯାଏ, ସ୍ନାନ ପରେ କମ୍ବାଳ ବା କାଦୁଅ ଦେହରେ ବୋଳି ହୁଏ ଓ ପଦ୍ମ ବନକୁ ଦଳି ପକାଏ, ସେହିପରି ଠାକୁରେ ଦେଉଳ ରୂପକ ଗୁହାକୁ ଗୁଡ଼ି ମଣ୍ଡପ ରୂପକ (ସ୍ନାନବେଦୀ) ପୁଷ୍କରିଣୀରେ ସ୍ନାନ କରିବାକୁ ଯାଆନ୍ତି, ଚନ୍ଦନ ରୂପକ ପଙ୍କରେ ଭୂଷିତ ହୁଅନ୍ତି ଏବଂ ଲୋକଙ୍କର ପାତକ ରୂପକ ପଦ୍ମବନକୁ ଉଜାଡ଼ି ପକାନ୍ତି । ୯ । ଇତ୍ୟବସରରେ ବ୍ରାହ୍ମଣମାନେ ଚାମର ଢାଳନ୍ତି ଓ ଶ୍ୱେତଛତ୍ର ଟେକି ରଖନ୍ତି ଯାହା କ୍ଷୀର ସମୁଦ୍ରର ଲହଡ଼ି ତୁଲ୍ୟ ଜଣାପଡ଼େ । ଜନଗହଳି ହେତୁ କୃଷ୍ଣଛତ୍ର, ଉଚ୍ଚ ପର୍ବତ ଉପରେ କଳାମେଘ ଘୋଟିଗଲା ପରି ଶୋଭାବର୍ଦ୍ଧନ କରେ । ଲୋକମାନେ ପରିଧାନ କରିଥିବା ହଳଦୀ ରଙ୍ଗର ବସ୍ତ୍ର ସବୁ ମେଘ ମଧ୍ୟରେ ତଡ଼ିତ୍ ଭଳି ଦୃଶ୍ୟ ସୃଷ୍ଟି କରେ । ତୃଷାର୍ତ୍ତ ଚାତକପକ୍ଷୀ ମେଘଠାରୁ ଜଳପାନକରି ତୃଷା ମେଣ୍ଟାଇଲାପରି, ବିପ୍ରମାନେ ଶ୍ରୀଜଗନ୍ନାଥଙ୍କ ପାଦୋଦକ ପାନ କରି ଆତ୍ମସନ୍ତୋଷ ଲାଭ କରନ୍ତି । ବିଜେ କରିସାରିବା ପରେ ମହାପ୍ରଭୁଙ୍କର ବିଭିନ୍ନ ନୀତି ନିୟମ ପାଳନ କରାଯାଏ । ଉକ୍ତ ନୀତି ଦର୍ଶନ ପାଇଁ ନାଗ, ନର, କିନ୍ନର, ଗନ୍ଧର୍ବ ଓ ଯକ୍ଷ ସମସ୍ତେ ସୁବର୍ଣ୍ଣ କଳସରେ ଜଳପୂର୍ଣ୍ଣ କରି ସ୍ନାନ ମଣ୍ଡପରେ ବିଜେ ହୋଇଥିବା ମହାପ୍ରଭୁ ଓ ତାଙ୍କର ଭାଇଭଉଣୀ ଆଦିଙ୍କୁ ଚାତକ ପକ୍ଷୀ ତୁଲ୍ୟ ଚାହିଁ ରହିଥାନ୍ତି । ତା'ପରେ ପଣ୍ଡିତମାନେ ମହାପ୍ରଭୁଙ୍କ ଉପରେ ସମସ୍ତ କଳସରୁ ଜଳ ଢାଳନ୍ତି । ଏହି ସ୍ନାନର ଦୃଶ୍ୟ ଓ ପ୍ରଭୁଙ୍କ ଶରୀରରୁ ଗଡ଼ିଆସୁଥିବା ଜଳଧାରାକୁ ଉପଲକ୍ଷ୍ୟ କରି କବି ବର୍ଣ୍ଣନା କରିଛନ୍ତି:—

"କି ମେରୁ ଶିଖର ମାଗର ହେମ ଶୃଙ୍ଗୁ ଖସି ।
ଜାହ୍ନବୀ ଜମୁନା ହରିତାଳ ଧାରା ଆସି ଯେ ॥
ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ ।
ସେ ଘନ ଶୃଙ୍ଗୁ କି ଜାତ ତରଳ ରଜତ ଯେ ॥
ଦେଖିଲା ଆଖିରେ ଦରିଦ୍ରତା ନ ରଖିଲା ।
ମନ ହିଁ ଦୁଃସହ ଦୁଃଖମାନ ଉପେକ୍ଷିଲା ହେ ॥ ୧୦ ॥

୯) କୋ. ବ୍ର. ପୁ. ଛାନ୍ଦ ୧ମ, ୩୬-ପଦ ।
୧୦) କୋ. ବ୍ର. ପୁ. ଛାନ୍ଦ ୧ମ, ୪୮, ୪୯, ୫୦-ପଦ ।



Digitized by PPRACHIN, SOA

ବଳରାମ, ଜଗନ୍ନାଥ ଓ ସୁଭଦ୍ରାଙ୍କ ଶରୀରରୁ ଜଳଧାରା ବହି ମେରୁ-ପର୍ବତରେ ହୀରା, ମାରକତ ଓ ସୁବର୍ଣ୍ଣ ଶୃଙ୍ଗମାନଙ୍କରୁ କ୍ରମେ ଗଙ୍ଗା, ଯମୁନା ଓ ହରିତାଳ ଧାର ଖସିଲା ପରି ଜଣାଗଲା । ଏଠାରେ ବଳରାମଙ୍କ ଶରୀର— ମେରୁର ହୀରା ଶୃଙ୍ଗ, ତହିଁରୁ ଗଙ୍ଗାଧାର, ଜଗନ୍ନାଥଙ୍କ ଶରୀର— ମାରକତ (କଳା) ତହିଁରୁ ଯମୁନା ଧାର, ମଣି ସୁଭଦ୍ରାଙ୍କ ଦେହ— ସୁବର୍ଣ୍ଣଶୃଙ୍ଗ ତହିଁରୁ ହରିତାଳ ଧାର ସ୍ୱରୂପ । ଚନ୍ଦନ ଚର୍ଚ୍ଚା ସମୟରେ ଚନ୍ଦନ ଖସି ମେରୁର ସେହି ତିନି ଶୃଙ୍ଗରୁ ଆଉ ଏକ ରୂପ ଜନ୍ମିଲା ପରି ଦେଖାଯାଏ ।

ଏହି କାବ୍ୟରେ ଶ୍ରୀଜଗନ୍ନାଥଙ୍କ ପ୍ରଶସ୍ତି ବର୍ଣ୍ଣନା ବେଳେ କବି କୃନକ ଜଣେ ପ୍ରତ୍ୟକ୍ଷଦର୍ଶୀ ପରି ମନେ ହୁଅନ୍ତି । ତେଣୁ ତାଙ୍କର ବର୍ଣ୍ଣନା ଅତ୍ୟନ୍ତ ଜୀବନ୍ତ ତଥା ଗୁରୁତ୍ୱପୂର୍ଣ୍ଣ ହୋଇପାରିଛି । କବି ମଧ୍ୟ ନିଜେ ଉଲ୍ଲେଖ କରିଛନ୍ତି— "ଭାଗ୍ୟ ବଳରୁ ମୁଁ ଏଭଳି ଉପମା କଲି" । ପୁଲକିତ ଶରୀରରେ କବି ପ୍ରଭୁଙ୍କର ସ୍ତୁତି କରିବା ସଙ୍ଗେ ସଙ୍ଗେ ଏତାଦୃଶ ବର୍ଣ୍ଣନା କରିବାପାଇଁ ଅଗ୍ରସର ହୋଇଛନ୍ତି ।

ସ୍ନାନ ମଣ୍ଡପରେ ସ୍ନାନଯାତ୍ରା ନିମନ୍ତେ ବିଜେ ହେଲା ବେଳକୁ, ଲୋକେ ମୟୂର ପୁଚ୍ଛ ବିଡ଼ା ବାନ୍ଧିପକାନ୍ତି ତାହା ବର୍ଷା କାଳରେ ମୟୂରପୁଚ୍ଛ ତ୍ୟାଗ କଲାପରି ପ୍ରତୀୟମାନ ହୁଏ । ଉକ୍ତ ବର୍ଣ୍ଣନାରେ କବି କଳ୍ପବୃକ୍ଷ କଥା ଆଲୋଚନା କରିଛନ୍ତି । ଏହା ପୂର୍ବରୁ ବର୍ଣ୍ଣିତ । କଳ୍ପବୃକ୍ଷ ସାଧାରଣତଃ ସୁରଭି (କାମଧେନୁ) ମାନଙ୍କର ଆଶ୍ରୟସ୍ଥଳ । କଳ୍ପବୃକ୍ଷ ଓ ଶ୍ରୀଜଗନ୍ନାଥ କାମଦ ଭାବରେ ସମାନ । କବି ଏଠାରେ କହିଛନ୍ତି :—

ଭକ୍ତି ମୁକ୍ତି ଫଳ ଅଛି ନ ଦେଖନ୍ତି କେହି
ସ୍ୱଭାବରେ ବ୍ରହ୍ମ-ଦାରୁ ବ୍ୟସ୍ତ ପଦେ ରହି ହେ । ୧୧ ।

ଉପେନ୍ଦ୍ରଭଞ୍ଜ ବ୍ରହ୍ମଦାରୁଙ୍କର ପ୍ରଶସ୍ତି ଗାନ କରିବା ତୁଲ୍ୟ ନିମ୍ନୋକ୍ତ ଶ୍ଳୋକରେ ମଧ୍ୟ ବ୍ରହ୍ମଦାରୁଙ୍କୁ ଜଣେ କବି ବାରମ୍ବାର ସ୍ମରଣ କରିଛନ୍ତି ।

'ନୀଳା'ଦ୍ରୌ ଶଙ୍ଖ ମଧ୍ୟେ ଶତଦଳକମଳେ ରତ୍ନ ସିଂହାସନସ୍ଥଂ
ସର୍ବାଳଙ୍କାର ଯୁକ୍ତଂ ନବଘନରୁଚିରଂ ସଂଯୁତମ୍ ଗ୍ରଜେନ
ଭଦ୍ରାୟାଃ ବାମଭାଗେ ରଥ ଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ର ବନ୍ଦ୍ୟଂ
ବେଦାନାଂ ସାରମେକଃ ସ୍ୱଜନ ପରିବୃତଂ ବ୍ରହ୍ମଦାରୁଂ ସ୍ମରାମି । ୧୨ ।

---

୧୧ । କୋ. ବ୍ର. ସୁ. ଗ୍ରନ୍ଥ ୧ମ, ୫୭- ପଦ ।
୧୨ । ମହିମାମୟୀ ମହାଲକ୍ଷ୍ମୀ : ଶ୍ରୀ ରବୀନ୍ଦ୍ର ନାରାୟଣ ମିଶ୍ର (ଶ୍ରୀମନ୍ଦିର : ରଥଯାତ୍ରା ସଂଖ୍ୟା ୧୯୮୪)

॥ ଶବ୍ଦେ ଅଶରୀରୀ ॥

Digitized by PPRACHIN, SOA

ଜଗନ୍ନାଥ କଳ୍ପତରୁ ଅଟନ୍ତି । ଭକ୍ତ ଶାଖା ରୂପେ ବିରାଜିତ, ଅଧର ନବ-ପଲ୍ଲବ ରୂପେ, ଭକ୍ତି ଓ ମୁକ୍ତି ଦୁଇଫଳ ଏଠାରେ ଅଛି । କିନ୍ତୁ କଳ୍ପତରୁର ଫଳ ଯେପରି ଦେଖାଯାଏନାହିଁ; ଠିକ୍ ସେହିପରି ଭକ୍ତି ଓ ମୁକ୍ତି ଦୁଇ ଫଳକୁ କେହି ଦେଖିପାରନ୍ତି ନାହିଁ । କଳ୍ପତରୁ ଯେପରି ହସ୍ତପଦ ଶୂନ୍ୟ ଶ୍ରୀଜଗନ୍ନାଥ ମଧ୍ୟ ସେହିପରି ହସ୍ତପଦ ଶୂନ୍ୟ । ତେଣୁ,

> 'ଅପାଣି ପାଦୋ ଜବନୋ ଗୃହୀତ
> ପଶ୍ୟତ୍ୟ ଚକ୍ଷୁଃ ସ ଶୃଣୋତ୍ୟ କର୍ଣ୍ଣଃ
> ସବେତ୍ତି ବେଦ୍ୟମ ନ ଚ ତସ୍ୟାସ୍ତି ବେତ୍ତା
> ତମା ହୁରଗ୍ର୍ୟମ୍ ପୁରୁଷଂ ମହାନ୍ତମ୍' । ୧୩ ।

ଚନ୍ଦନ ଯାତ୍ରାର ଉତ୍ପତ୍ତି ଉପରେ ମତ ପୋଷଣ କରି ସମାଲୋଚକମାନେ ମତ ଦିଅନ୍ତି ଯେ, ନୃସିଂହ ଅବତାରରେ ହିରଣ୍ୟକଶିପୁକୁ ନଖଦ୍ୱାରା ବିଦାରଣ କରିଥିବା ଭଗବାନଙ୍କର ଶରୀରରେ ଜ୍ୱାଳା ପ୍ରଶମିତ ହେବାପାଇଁ ଜଗନ୍ନାଥଙ୍କର ଚନ୍ଦନଯାତ୍ରା ହେଉଛି । ସେହିପରି କୃଷ୍ଣଙ୍କର କାଳୀୟଦଳନର ପ୍ରତୀକ ରୂପେ କାଳୀୟଦଳନ ବେଶ ଓ କୁମ୍ଭୀର କବଳରୁ ଗଜରାଜଙ୍କୁ ରକ୍ଷା କରିବାର ସ୍ମାରକୀ ସ୍ୱରୂପ ଗଜୋଦ୍ଧାରଣ ବେଶ ହୋଇଅଛି । ରାମଚନ୍ଦ୍ରଙ୍କର ରାବଣ ବଧ ଉପଲକ୍ଷ୍ୟେ ବିଜୟା ଦଶମୀ, କୃଷ୍ଣଙ୍କର ରାସଲୀଳା ଓ ବାଲ୍ୟଲୀଳାର ସ୍ମାରକୀ ସ୍ୱରୂପ ଝୁଲଣ ଉତ୍ସବ ଅନୁଷ୍ଠିତ ହେଉଛି । ଜଗନ୍ନାଥ ଗଣଦେବତା ରୂପେ ଉପାସିତ ହେଉଥିବାରୁ ମଣିଷର ଶରୀରପରିବର୍ତ୍ତନ କରି ଠାକୁରଙ୍କର ମଧ୍ୟ ନବକଳେବର ହେଉଛି । କୃଷ୍ଣଙ୍କର ଗୋକୁଳରୁ ମଥୁରାକୁ ଯାତ୍ରାର ସ୍ମୃତି ସ୍ୱରୂପ ରଥଯାତ୍ରା ପାଳନ ହେବା ବିଷୟରେ ମଧ୍ୟ ଅନେକ ମତ ଦେଇଥାଆନ୍ତି । ରଥଯାତ୍ରାକୁ ବୁଦ୍ଧଦେବଙ୍କ ଜନ୍ମ ଯାତ୍ରାର ସ୍ମାରକୀ ରୂପେ ମଧ୍ୟ ପାଳନ କରାଯାଏ । ପତିତ ଓ ଅବହେଳିତ ଜନତାକୁ ଦର୍ଶନ ଦେଇ ପାପୀମାନଙ୍କୁ ଉଦ୍ଧାର କରିବା ନିମିତ୍ତ ଏହି ଦୁଇ ଯାତ୍ରାରେ ଦେଉଳରୁ ବାହାରି ବଡ଼ଦାଣ୍ଡରେ ଯାଉଥିବାରୁ ଏହା ଠାକୁରଙ୍କର ପତିତପାବନ ଯାତ୍ରା ରୂପେ ପ୍ରସିଦ୍ଧି ଲାଭ କରିଛି । ଉପେନ୍ଦ୍ରଭଞ୍ଜ ଯଥାର୍ଥରେ କହିଥିଲେ :—

> 'ସ୍ନାନ ଗୁଣ୍ଡିଚାଏ ବେନି ସ୍ୱୟଂ ଲୀଳା ଯାର,
> ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର' । ୧୪ ।

---

୧୩ । ଶ୍ୱେତାଶ୍ୱତର ଉପନିଷଦ, ୩/୧୯ ପଦ ।

୧୪ । କୋ. ବ୍ର. ସୁ. ୧ମ ଛାନ୍ଦ : ୨୪-ପଦ ।

॥ ଶବ୍ଦେ ସବୁଶ୍ରୀ ॥

Digitized by PPRACHIN, SOA

ଏହିପରି ଭାବରେ କବି ଅଧିକ ଗୂଢ଼ତତ୍ତ୍ୱ ବିହିତ ଥିବା ଶ୍ରେଷ୍ଠ ଶ୍ରେଷ୍ଠ ପଦ ମାଧ୍ୟମରେ କାବ୍ୟର ନିର୍ବିଘ୍ନ ପରିସମାପ୍ତି ପାଇଁ ମଙ୍ଗଳା ଚରଣରେ ଭଗବାନ ଶ୍ରୀଜଗନ୍ନାଥଙ୍କର ପ୍ରଶସ୍ତି ଗାନ କରିଛନ୍ତି ।

ଉପେନ୍ଦ୍ର ଭଞ୍ଜ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଜଗନ୍ନାଥଙ୍କ ପ୍ରଶସ୍ତି ଗାନ କରିବାର ଉଦ୍ଦେଶ୍ୟ ହେଲା, ଜଗନ୍ନାଥ ଶବ୍ଦରେ ବହୁ ମୂଲ୍ୟବାନ ଗୂଢ଼ ଅର୍ଥ ନିହିତ ଅଛି । ପ୍ରଥମେ, ଜ— ଜ'ର ଅର୍ଥ ହେଉଛି ସୃଷ୍ଟି ବା ଜନ୍ମର ସ୍ଥାନ ସର୍ବ-ଦେବତା ସେହିଠାରୁ ହିଁ ସମ୍ଭବ ହୋଇଛନ୍ତି । ଦେବମନ୍ତ୍ର ଯୋଗଜ୍ଞାନ ସବୁର ଉତ୍ପତ୍ତି ସ୍ଥଳ ସେ । ଜ' ହିଁ ଜଗନ୍ନାଥ ମୂର୍ତ୍ତି ଓ ସେ ଆପେ ଆପେ ଜନ୍ମଲାଭ କରିଛନ୍ତି । ଜ' ଜଗନ୍ମୟ ଓ ଜ୍ୟୋତିସ୍ୱରୂପ । ଜ' ଜଗନ୍ନାଥ ବା ଯେ ଯେଉଁ ନାମରେ ଡ଼ାକିଲା ସେ ତାଙ୍କୁ ପାଇଲା ।

ଗ'— ଗ'ର ଅର୍ଥ ହେଉଛି ସେ ଗୁହ୍ୟ, ଗୁରୁତର ଓ ସାଗର ପରି ଗମ୍ଭୀର ଓ ଅନନ୍ତ । ସେ ଗୋଲକ । ସେ ଗର୍ବ ଗଞ୍ଜନ ଓ ଗଜୋଦ୍ଧାରଣ ପରି ଦୁଃଖୀର ଦୁଃଖ କଷ୍ଟ ନିବାରକ ।

ନ୍ନା— ନ୍ନା'ର ଅର୍ଥ ହେଉଛି ନିର୍ବିକଳ୍ପ,ନିରୀହ, ବ୍ରହ୍ମ, ନିରାକାର, ନିଶ୍ଚିତ, ନିର୍ଭର, ନିରାଲମ୍ବ ସ୍ଥାନ, ନରକ ନିସ୍ତାରଣ, ନିତ୍ୟ ମହାନିତ୍ୟ, ଅବିନାଶୀ, ନିର୍ମଳ, ନିର୍ମିସ୍ତ ଓ ସେ ନାମରୂପୀ ଅଟନ୍ତି ।

ଥ— ଥ'ର ଅର୍ଥ ସେ ସର୍ବଭୂତରେ ଆତ୍ମା, ସେ ସୁଦର୍ଶନ, ସ୍ଥିରବୁଦ୍ଧି, ଧର୍ମ ଅର୍ଥ କାମ ଓ ମୋକ୍ଷର ଜନ୍ମସ୍ଥଳ । ଏଥିରୁ ସ୍ଥାବର ଜଙ୍ଗମ ଓ ଅଷ୍ଟାଦଶ ସିଦ୍ଧି ( ଅଣିମା ଲଘିମାଦି ) ଜନ୍ମଲାଭ କରିଛନ୍ତି । ଥ' ଅନାଥର ନାଥ ଓ ସର୍ବପ୍ରାଣୀ-ହିତକାମୀ ଅଟନ୍ତି ।

ଏହାକୁ ଉପେନ୍ଦ୍ର ଭଞ୍ଜ ହୃଦୟଙ୍ଗମ କରି ନିଜର ପ୍ରସିଦ୍ଧ କାବ୍ୟ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' ରଚନା ସମୟରେ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ (ବାରମ୍ବାର) କରି କହିଛନ୍ତି ଯେ, ଏହା ଉତ୍ତମ ଜାଇଫୁଲ ତୁଲ୍ୟ ହେଉ; ସାଧୁଲୋକ ତାହାର ସୁଗନ୍ଧରେ ମୁଗ୍ଧ ହୁଅନ୍ତୁ; ସୁଧୀବର୍ଗ ତାହା ମାଳାତୁଲ୍ୟ ଧାରଣ କରନ୍ତୁ । ସାହିତ୍ୟରସିକ ବର୍ଗ ଭ୍ରମର ପରି ଏହି ଫୁଲର ରସ ଗ୍ରହଣ କଲେ ଯଥେଷ୍ଟ; ମୂର୍ଖମାନେ ଭଲ ପାଆନ୍ତୁ ବା ନ ପାଆନ୍ତୁ, ସେଥିରେ କିଛି ଯାଏଆସେ ନାହିଁ । ୧୫ । ଏହା ଠିକ୍ ପ୍ରାଚୀନ ମଙ୍ଗଳାଚରଣ (ଆଦୌ ନମସ୍କ୍ରିୟାଶୀର୍ବା) ର ଅନୁରୂପ ।

---

୧୫) କୋ. ବ୍ର. ସୁ. ୧ମ ଛାନ୍ଦ · ୭୦।୭୧।୭୨।୭୩ ପଦ ।

॥ ଶ୍ରେଷ୍ଠ ଏକାଦଶୀ ॥

Digitized by PPRACHIN, SOA

ଶ୍ରୀ ଜଗନ୍ନାଥ କେବଳ ଓଡ଼ିଆ ଜାତି ବା ଭାରତୀୟ ସନାତନ ସଂସ୍କୃତିର ନୁହେଁ ବରଂ ସାରା ବିଶ୍ୱର ଗୌରବ । ସଗୁଣ ଓ ନିର୍ଗୁଣ ଉପାସନାର ଏକ ସମ୍ମିଶ୍ରଣ; ସମସ୍ତ ଧର୍ମର ଏକ ସମ୍ମିଳିତରୂପ । ଶ୍ରୀଜଗନ୍ନାଥ ଗାୟତ୍ରୀରେ ଯଥାର୍ଥରେ କୁହାଯାଇଛି— "ଓଁ ବଳଭଦ୍ରାୟ ବିଦ୍ମହେ ସୁଭଦ୍ରାୟୈ ଧୀମହି
ତନ୍ନୋ ଜଗନ୍ନାଥଃ ପ୍ରଚୋଦୟାତ୍ ଓଁ
ଓଁ ଶାନ୍ତିଃ ! ଶାନ୍ତିଃ ! ! ଶାନ୍ତିଃ ! ! !

—ଜୟ ଜଗନ୍ନାଥ

---

## ସହାୟକ ଗ୍ରନ୍ଥସୂଚୀ


୧) କବିସମ୍ରାଟ ଉପେନ୍ଦ୍ରଭଞ୍ଜ – ଅନନ୍ତ ପଦ୍ମନାଭ ପଟ୍ଟନାୟକ ।
୨) ଭଞ୍ଜପ୍ରଭା— ୧୯୫୩ ସଂ ବଂଶୀଧରଚରଣ ପଟ୍ଟନାୟକ ।
୩) ଶ୍ରୀଜଗନ୍ନାଥ— ୧୯୮୫ (ରଥଯାତ୍ରା ସଂଖ୍ୟା)
୪) ନିର୍ମାଲ୍ୟ — ୧୯୮୫ ( " )
୫) ଶ୍ରୀମନ୍ଦିର — ୧୯୮୪ ( " )
୬) ଶ୍ରୀମନ୍ଦିର — ୧୯୮୫ ( " )
୭) ଉପେନ୍ଦ୍ର ସାହିତ୍ୟ ଓ ଶ୍ରୀଜଗନ୍ନାଥ— ଡ଼ଃ. ପୂର୍ଣ୍ଣଚନ୍ଦ୍ର ମିଶ୍ର ।
୮) ଉପେନ୍ଦ୍ର ସାହିତ୍ୟ ସମାଲୋଚନା— ଶ୍ରୀ ବିଷ୍ଣୁମୋହନ ମହାନ୍ତି ।
୯) ଭଞ୍ଜୀୟ କାବ୍ୟ ଭାବନା— ଡଃ· ବେଣୀମାଧବ ପାଢ଼ୀ ।
୧୦) ଭଞ୍ଜ ଭଞ୍ଜ - ଜୟନ୍ତୀ ଓ ଓଡିଶାର ସାଂସ୍କୃତିକ ଇତିହାସ - ମୁଖ୍ୟ ସଂପାଦକ ରଜତ କୁମାର କର ।
୧୧) ଭଞ୍ଜ ସାହିତ୍ୟ ଏକ ଦିଗ୍‌ଦର୍ଶନ— ଅଧ୍ୟାପକ ଉପେନ୍ଦ୍ର ନାହାକ ।
୧୨) ଭଞ୍ଜଙ୍କ ନିର୍ବାଚନ ଇସ୍ତାହାର— ଶ୍ରୀ ଗୌରୀକୁମାର ବ୍ରହ୍ମା ।





ଓଡିଶା ରାଜ୍ୟ ଅଭିଲେଖାଗାର,
ଭୁବନେଶ୍ୱର,
ପୁରୀ,


॥ ଶବ୍ଦେ ବାସ୍ତବ ॥

Digitized by PPRACHIN, SOA

# କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-ଏକ ବିହଙ୍ଗ ଦୃଷ୍ଟି

ଡ. ଚୂଳାମଣି ମହାପାତ୍ର



କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ନାମକରଣରୁ ଜଣାଯାଏ, ଏ ଗ୍ରନ୍ଥର ନାୟିକା ନିଶ୍ଚୟ ଅପରୂପ ସୁନ୍ଦରୀ ଏବଂ କବି ଉପେନ୍ଦ୍ର ଭଞ୍ଜ ସେହି ଅନୁପମ ସୌନ୍ଦର୍ଯ୍ୟର ପୂଜାରୀ । କଳ୍ପନାର ଉତ୍ତୁଙ୍ଗ ମୀନାର ଉପରେ ବସି କବି ନାୟିକାର ରୂପଚ୍ଛଟାକୁ ଦେଖି ମୋହିତ ହୋଇଛନ୍ତି ଏବଂ ତୂଳୀରେ ତାକୁ ରୂପ ଦେଇଛନ୍ତି ଅଗଣିତ ରସ ପିପାସୁ ସାହିତ୍ୟ ରସିକମାନଙ୍କ ପାଇଁ । ଏହା ପୁଣି ଗୋଟିଏ ନିର୍ଦ୍ଦିଷ୍ଟ ସମୟର ରସିକମାନଙ୍କ ପାଇଁ ନୁହେଁ । ଯୁଗ ଯୁଗ ଧରି ରସିକ ଓ ଗ୍ରାହକ ଆସୁଥିବେ, ରସ ଆସ୍ୱାଦନ କରି ତନ୍ମୟ ହେଉଥିବେ ଓ ଗଲାବେଳେ ପଛରେ ଛାଡ଼ି-ଯାଉଥିବେ କେତେକ ମନ୍ତବ୍ୟ ଯାହାକି ଭବିଷ୍ୟତର ଗ୍ରାହକ ଓ ମୁଗ୍ଧ ପାଠକ ମାନଙ୍କ ପାଇଁ ଭଞ୍ଜ ସାହିତ୍ୟର ଆଉ କେତୋଟି ନୂଆ ତୋରଣ ଉନ୍ମୁକ୍ତ କରି-ଦେଉଥିବ । ଏହି ଭିତରେ ସାହିତ୍ୟର ପରିସର ବଢ଼ି ଚାଲିଥିବ କ୍ରମାନ୍ୱୟରେ ଯୁଗ ଯୁଗ ଧରି । କେତୋଟି ପିପାସୁ ଓ ବୁଭୁକ୍ଷୁ ଅନ୍ତରକୁ ଖାଦ୍ୟ ଯୋଗାଇବାରେ ଗ୍ରନ୍ଥଟି ହୋଇଥିବ ଏକ ଅସରନ୍ତି ଭଣ୍ଡ । ଏହି କଳ୍ପନାରେ ରସିକ କବି ଲେଖିଲେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଯେ କେତେକ ଶସ୍ତା ସାହିତ୍ୟିକ ମାନଙ୍କ ପାଇଁ ଅଭିପ୍ରେତ ନଥିଲା, ତାହା ଗ୍ରନ୍ଥଟି ପାଠ କରୁ କରୁ ଜଣାପଡ଼ିଯାଏ, ଏ ଗ୍ରନ୍ଥରୁ ସାହିତ୍ୟ-ସୁଧାପାନ କରିବାକୁ ହେଲେ ନାରିକେଳ ପାକ ରୀତିରେ ଅନୁସନ୍ଧିତ୍ସୁକୁ ଆଗେଇଯିବାକୁ ପଡ଼େ । ଉତ୍ତୁଙ୍ଗ ଶିଖର ଉପରେ ଚଢ଼ିବାକୁ ଯେଉଁମାନଙ୍କର ଭୟ, ସେମାନଙ୍କ ପାଇଁ ଏହା ଝାଣଚଣା ଚର୍ବଣ ନୀରସ କଲାପରି ହେବ । ରସିକର ଉଚ୍ଛଳ ହୃଦୟ ନେଇ ଏ ଦୁଃସାଧ୍ୟ ଅରଣ୍ୟରେ ପଶି ଯୋଡ଼ାଏ ବାଟ ଆଗେଇ ଗଲାପରେ ରସିକ ପୁରୁଷର ରସ ପ୍ରବାହ ମନ୍ଦୀଭୂତ ହୋଇଯାଏ । ଭୂତ ଦେଖିଲା ପରି ସେ ଚକିତ ଓ ତ୍ରସ୍ତ ହୁଏ ।

॥ ଶହେ ତେସ୍ତରୀ ॥

Digitized by PPRACHIN, SOA

ମାନ ସାହସ କରି ଯୋଡ଼ାଏ ବାଟ ଗଲାପରେ ତାର ଖାମଖିଆଲିଆ ପ୍ରୀତିର ମୋହ ଜମାଟ ବାନ୍ଧିବାକୁ ବସେ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପରି ଆଲଙ୍କାରିକ ଗ୍ରନ୍ଥକୁ ଆସ୍ବାଦ କଲାବେଳକୁ ସେ ପକ୍କା ସାଧକରେ ପରିଣତ ହୁଏ ଓ ସିଦ୍ଧ ପୁରୁଷ ଆଖ୍ୟା ପାଇବାର ଯୋଗ୍ୟତା ହାସଲ କରେ । ଉପେନ୍ଦ୍ର ଭଞ୍ଜ ଏହିପରି କେତେ ଆଗନ୍ତୁ ଓ ରସ ପିପାସୁମାନଙ୍କୁ ପରୋକ୍ଷ ଭାବେ ସାଧକରେ ପରିଣତ କରିଦେଇଛନ୍ତି ଓ ଗ୍ରାହକମାନଙ୍କୁ ପ୍ରବୁଦ୍ଧ ପ୍ରେମିକରେ ରୂପାନ୍ତରିତ କରିଦେଇଛନ୍ତି । ଟୋପାଏ ରସ ଚାଖି ଯେଉଁମାନେ କହି ବୁଲନ୍ତି—ହେଇ ରସଟା ତେଜ୍ଜ ଦିଶିଲା, ତାଙ୍କ ପାଇଁ ରସ ରାଇଜର ତୋରଣ ବନ୍ଦ ହୋଇଯାଏ । ସେ ବଗିଚରେ ମୁହଁ ଫେରାଇ ଆଣି କହେ ଛ୍ୟା, ଏ ଅଙ୍ଗୁର ଗୁଡ଼ାକ ଖଟା । ତାପରେ ସେ ଏହାକୁ ବୀଭତ୍ସ ରସ ବା ଅନ୍ୟ କୌଣସି ଅରସର ଅନ୍ତର୍ଗତ କରାଏ, ସମାଲୋଚକର କାଧରି ସେ ନିନ୍ଦୁକର ଭୂମିକାରେ ଅବତୀର୍ଣ୍ଣ ହୁଏ ।

ଉପେନ୍ଦ୍ରଙ୍କର ଉଦ୍ଦେଶ୍ୟ ଥିଲା ଶ୍ରଦ୍ଧାଗ୍ଧ ପାଠକ ସୃଷ୍ଟି କରିବା ଓ ଦଗ୍ଧୀଭୂତ ହୃଦୟରେ ପ୍ରଣୟ ବାରି ସିଞ୍ଚନ କରିବା । ଦୂରରୁ ଦେଖି କାଁ ଭାଁ ଆଖି ପକାଇଦେଇ ଚାଲିଯିବାର ଲୋକଙ୍କୁ ଗୁଡ଼ିଦଆଯାଉ ହାଲୁକା ପ୍ରେମକୁ ଉପଭୋଗ କରିବା ପାଇଁ, ଯୌନ ସମ୍ବନ୍ଧୀୟ ରସରେ ନିଜକୁ ବୁଡ଼ାଇ ରଖିବା ପାଇଁ, କେବଳ ପ୍ରେମର ସ୍ଥୂଳ ବର୍ଣ୍ଣନାରେ ଆତ୍ମହରା ହେବାପାଇଁ ଯେଉଁମାନେ ଭଞ୍ଜ ସାହିତ୍ୟ ଧରନ୍ତି ଓ ଅସଲ ଜାଗାରେ ପହଞ୍ଚିବା ପାଇଁ ଯେଉଁମାନେ ଆଖିବୁଜା ଚାଲିଯାଆନ୍ତି, ଅଜସ୍ର ପରିଶ୍ରମପରେ ନିଜେ କେତେଦୂର ଗଲେଣି ବୋଲି ଦେଖିବାକୁ ଯେଉଁମାନେ ପଛକୁ ଥରେ ଚାହିଁଦିଅନ୍ତି, ଶେଷକୁ ସେମାନେ ସାଧନା ପଥରେ ବହୁଦୂର ଅଗ୍ରସର ହୋଇଗଲେଣି ବୋଲି ଅବଧାରି କରନ୍ତି । ପ୍ରେମକୁ ସ୍ଥୂଳ ବା ଦେହୀ ବୋଲି କହିବାକୁ ସେ କୁଣ୍ଠିତ ହୁଅନ୍ତି ।

ଆଧୁନିକ ସମାଲୋଚକମାନଙ୍କ କଥା ବର୍ତ୍ତମାନ ବିଚାରକୁ ନେବାକୁ ପଡ଼ିବ । କାରଣ ସମାଲୋଚନା କହିଲେ ଆଧୁନିକତାକୁ ବୁଝାଏ । ଏହି ସମାଲୋଚକମାନଙ୍କ ଦୃଷ୍ଟିରେ ବାସ୍ତବ ବର୍ଣ୍ଣନାହିଁ ସତ୍ୟ ଓ ସ୍ୱାଦ, ଅତିଶୟୋକ୍ତିରେ ଆନନ୍ଦ ନଥାଏ । ବିଚାରବୁଦ୍ଧି ନଥିବା ଲୋକେ ହିଁ ସେଥିରେ ମୋହିତ ହୁଅନ୍ତି । ନାୟିକାର ମୁହଁକୁ ଦେଖି ଚନ୍ଦ୍ର ନିଜ ହୃଦୟରେ ହାତ ମାରୁଛି କାରଣ ସେ କଳଙ୍କଯୁକ୍ତ । ଇନ୍ଦ୍ର ଏକାବେଳକେ ହରଷ ଓ ବିରସ ହେଉଛନ୍ତି ।

ପୁରାଣକୁ ଛାଡ଼ି ପ୍ରାଚୀନ ରଚନା ନାହିଁ । ଆମର ସମସ୍ତ ସାହିତ୍ୟ ଓ ଦର୍ଶନ ପୁରାଣ ଓ ଶାସ୍ତ୍ରର ଦୃଢ଼ ଭିତ୍ତିଭୂମି ଉପରେ ନିର୍ମିତ । ଇଂରେଜୀ ସାହିତ୍ୟ



Digitized by PPRACHIN, SOA

ପଡ଼ି ପ୍ରାଚୀନ ସାହିତ୍ୟର ମୂଲ୍ୟାଙ୍କନ କରିବା ବାତୁଳତା ମାତ୍ର । ମାତ୍ର ତଥାପି ଏ ଯୁଗର ସାହିତ୍ୟ ରସ ପିପାସୁମାନେ ସେହି କଳ୍ପନାଶ୍ରୟୀ କବିମାନଙ୍କ ଚିନ୍ତାଧାରା ସହିତ ତାଳଦେଇ କିପରି ଅଗ୍ରସର ହୁଅନ୍ତି, ସତ୍ୟଠାରୁ ଯେଉଁ ରଚନା ବହୁ ଦୂରରେ ରହିଛନ୍ତି, ତାଠାରୁ ଆଧୁନିକ ସାହିତ୍ୟ ରସିକମାନେ ବିରାଗରେ ମୁହଁ ଫେରାଇ ନିଅନ୍ତିନାହିଁ କାହିଁକି ? ତେବେ କଣ କଳ୍ପନା ହିଁ ବାସ୍ତବତା ଠାରୁ ଅଧିକ ସତ୍ୟ ? ହୁଏତ ଅତୀନ୍ଦ୍ରିୟ ଜ୍ୟୋତିଃ । ଅଧିକ ସୁରମ୍ୟ ଓ ଲୋଭନୀୟ ହୋଇଥିବାରୁ ପାଠକ ମାନଙ୍କ ଠାରେ ତନ୍ମୟତା ସୃଷ୍ଟି ହୁଏ । କିମ୍ବା ବାସ୍ତବତାଟା ଅଧିକ ରୁକ୍ଷ ହୋଇ-ଥିବାରୁ ଆଉଥରେ ସେହି ରୁକ୍ଷତାକୁ ଦେଖିବାକୁ ପଳାୟନ ପନ୍ଥୀମାନଙ୍କର ଇଚ୍ଛା ହୁଏନା ।

କେତେକ ସମାଲୋଚକ କହନ୍ତି ରୁକ୍ଷ ବାସ୍ତବତା ଠାରୁ ଦୂରେଇ ଯିବା ପାଇଁ, ତୀବ୍ର ହଳାହଳମୟ ସ୍ଥୂଳ ଜଗତର ସ୍ମୃତିକୁ ଭୁଲିଯିବା ପାଇଁ ପଳାୟନ ପନ୍ଥୀମାନେ କାଳ୍ପନିକ ବିଳାସର ସୁରମ୍ୟ ଉପବନରେ ଅନ୍ତର୍ହିତ ହୁଅନ୍ତି । ମାତ୍ର ଏ କଥା ବି ସତ ନୁହେଁ । କାରଣ ବାସ୍ତବିକ କ୍ଷେତ୍ରରେ ପ୍ରାଚୁର୍ଯ୍ୟ ଓ ବିଳାସର ଉତ୍ସଙ୍ଗରେ ଲାଳିତ ପାଳିତ ହୋଇ ମଧ୍ୟ ଅନେକ କବି ଓ ପାଠକ କଳ୍ପନା ଜଗତକୁ ପଳାୟନ କରନ୍ତି । ତାହା ପଛରେ ସଂସାରର କୌଣସି ତାଡ଼ନା ନଥାଏ । ତେଣୁ ଏହାକୁ କେବଳ ରୁଚିବାଦ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏହା କବି ଓ ପାଠକର ଏକ ଖିଆଲ ମାତ୍ର ।

ଯେଉଁଠି ପୁଚ୍ଛିଲେ କୂଳ କାରକ, ନ ଦେଖାନ୍ତି ସଂପୁଟକ ଯେଉଁ କନ୍ୟାକୁ ଦେଖି "ପ୍ରଭାହୀନ ପ୍ରଭାକର-ହିଙ୍ଗୁଳୀ କୁହୁଡ଼ି ସାର" ପୁଣି ଯେଉଁ ଦେଶରେ ପଦ୍ମ ସକାଶରୁ ଜାଣି, ଦିବା ରଜନୀ, ବାସ୍ତବିକ ସେ ସ୍ଥାନର ଉପମା ନାହିଁ ।

ନାୟିକାର ସୌନ୍ଦର୍ଯ୍ୟ ସାଙ୍ଗକୁ ନାୟକ ନାୟିକାର ଜନ୍ମସ୍ଥଳୀକୁ ଚତୁର୍ଦ୍ଦଶ ଭୁବନରେ ଶ୍ରେଷ୍ଠ କହିବାର କାରଣ ଜଣେ ଅପରୂପ ରୂପସୀ ଏକ ସାଧାରଣସ୍ଥାନରେ ଜନ୍ମ ଗ୍ରହଣ କରିବା ସମ୍ଭବ ନୁହେଁ ବୋଲି ତାଙ୍କର ଦୃଢ଼ ବିଶ୍ୱାସ । ତେଣୁ ବଂଶର ଆଭିଜାତ୍ୟ ସାଙ୍ଗକୁ ସ୍ଥାନର ଆଭିଜାତ୍ୟ ରକ୍ଷା କରିବାକୁ କବି ଚେଷ୍ଟା କରିଛନ୍ତି ।

ଅତିଶୟୋକ୍ତି ପ୍ରୟୋଗ କରୁ କରୁ ଏକ ଅହ୍ଲାଦମୟ କଳ୍ପନାର ଅବତାରଣା କରାଯାଇଛି ।

ବିଶ୍ୱ ହୋଇଲା ଭସ୍ମ ବିଲେପନ - ବୃକ୍ଷରାଜି ଦଳ ବହେ କମ୍ପନ
ଫଳେ ଅଧୋମୁଖ ହେଲା କଦଳୀ - ନବ କାଳିମା ରଙ୍ଗେ ଶୋଭିଦଳି

।। ଶହେ ପଞ୍ଚସ୍ତରି ।।

Digitized by PPRACHIN, SOA

ଇତ୍ୟାଦି ବର୍ଣ୍ଣନାରେ କବି ପ୍ରକୃତି ମଧ୍ୟରେ ହିଁ ଚମତ୍କାର ସୃଷ୍ଟି କରିଛନ୍ତି । ସାବଲୀଳ ଭାଷାର ଲଳିତ ପ୍ରବାହ ମଧ୍ୟରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ସୁଧା ପାନକରି କବି ଲେଖିଛନ୍ତି—

କେଳୀ ପ୍ରବୀଣା ବୀଣାକ୍ୱଣା ବାଣୀ - ଖଞ୍ଜନ ଗଞ୍ଜନ ରଞ୍ଜନେକ୍ଷଣୀ
ସଂସାର ସାର ଲାବଣ୍ୟ ସଦନା - କୁନ୍ଦ ହୀରକୁନ୍ଦଜିତ ରଦନା
ସବକାଶ କାଶ ନନ୍ଦିତ ହାସୀ - ରାଜିତ ରାଜୀବ ଜିତ ସୁକେଶୀ

( ଅଷ୍ଟମ ଛାନ୍ଦ )

କିନ୍ତୁ ଅନାଗ୍ରହୀ ଲୋକଙ୍କୁ ସୁଧା ବିତରଣ କରିବା ସପକ୍ଷରେ କବି ନଥାନ୍ତି । ସାଧନାର ସୀମା ଭିତରକୁ ଯେଉଁମାନେ ଆସନ୍ତି, ସେହିମାନେ ହିଁ ବିବେକୀ ଗ୍ରାହକ । ରାଜକୁମାର ଓ ରାଜକୁମାରୀଙ୍କର ଗୁଣଗାନରେ ଶୁକଶାରୀ ଯେଉଁ ବ୍ୟୁତ୍ପତ୍ତି ଦେଖାଇଛନ୍ତି, ତାହା ଅସାଧାରଣ । ଏଠାରେ ଶୁକଶାରୀ ଉପଲକ୍ଷ୍ୟ ମାତ୍ର । ପୁଷ୍ପକେତୁ ତରଫରୁ ଶୁକ କଳହଂସ କେଦାର ରାଗରେ ଏବଂ ରାଜକନ୍ୟା ତରଫରୁ ଶାରୀ ଭୂପାଳ ରାଗରେ ସେମାନଙ୍କ ଶୌର୍ଯ୍ୟ ବୀର୍ଯ୍ୟ ଓ ସୌନ୍ଦର୍ଯ୍ୟର ତାରିଫ କରିଛନ୍ତି । ଦୁଇଟି ଅର୍ଥ ବହନ କରି ଛାନ୍ଦଟି ଆଗେଇ ଚାଲିଛି—

ନାଗରମଣି ସାର ଶୂର-ଶ୍ରୀ-ଧାମ । ନାହିଁ ଶ୍ରୁତିରେ ତାହା କୀରତି ସମ
ସୁନା ସାଦୃଶ କାନ୍ତି କି ମନୋରମ । କାମିନୀଚୟ ଧୈର୍ଯ୍ୟ ହରିବାକୁ କ୍ଷମ ।

ଏଠାରେ ଶୂର-ଶ୍ରୀ ଧାମ, ସୁରଭିଧାମ; କାମିନୀଚୟ, କାମିନୀଚୟଃ ସୁନାସା ଦୃଶ, ସୁନାସାଦୃଶ— ଏହିପରି ପଢ଼ିବାକୁ ହେବ । ଏଥିପାଇଁ କେବଳ ଧୈର୍ଯ୍ୟ ନୁହେଁ, ରୁଚି ଓ ଦୃଷ୍ଟିକୋଣର ଆବଶ୍ୟକତା ମଧ୍ୟ ରହିଛି ।

ପଞ୍ଚବିଂଶ ଛାନ୍ଦରେ ଏକସମୟରେ ଚନ୍ଦ୍ରାଦେଶାକ୍ଷ, କାମୋଦୀକାମୋଦୀ ଓ ମାଳବଗୌଡ଼ ରାଗ ପ୍ରୟୋଗ କରି ବର୍ଷା ଶୀତ ଓ ଗ୍ରୀଷ୍ମର ଏକକାଳୀନ ବର୍ଣ୍ଣନା ତାଙ୍କ ସମୟର ଅନ୍ୟ କବିମାନଙ୍କ କଥା ଚେଣିକି ଥାଉ, ତାଙ୍କ ନିଜ ରଚନାରେ ମଧ୍ୟ ଏପରି ବର୍ଣ୍ଣନା ପ୍ରାୟ ଦେଖିବାକୁ ମିଳେନା । ଗୋଟିଏ ଗୋଟିଏ ଅକ୍ଷର କାଟି ଗୋଟିଏ ଗୋଟିଏ ଋତୁ ସୃଷ୍ଟି କରିବା ଏକ ବିରଳ ଶିଳ୍ପ ଚାତୁରୀ । ଏଥିରେ କବିଙ୍କ ଦୁର୍ଲ୍ଲଭ ବିଜ୍ଞାଣୀତ୍ୱର ପରିଚୟ ମିଳେ । ଶବ୍ଦ ସମୁଦ୍ରକୁ ମନ୍ଥନ କରି ଦୁଷ୍ପ୍ରାପ୍ୟ ଅମୃତର ସନ୍ଧାନ କରିବା ସମସ୍ତଙ୍କ ପକ୍ଷେ ସମ୍ଭବ ନୁହେଁ । କମ୍ ଖୋଳିଲେ ଭୂମି ମଧ୍ୟରୁ ସୁନା ବା କୋଇଲାର ସନ୍ଧାନ ମିଳେ । ମାତ୍ର ଯଥେଷ୍ଟ ସାଧନା ଓ ଆୟାସ ବ୍ୟତିରେକ ସୁବର୍ଣ୍ଣ ପ୍ରାପ୍ତି ହୁଏନା । ଏହି ଛାନ୍ଦକୁ ଅଚିର ପ୍ରଭାକୁ ଅଚିର ପ୍ରଭା,



Digitized by PPRACHIN, SOA

ଚିରପ୍ରଭା ଓ ର ପ୍ରଭା ଏହିପରି ଭିନ୍ନ ରକମ ପଢ଼ିବାକୁ ହେବ । ନିମ୍ବବନକୁ ନିପବନି ପବନ ଓ ବନ ବୋଲି ପଢ଼ିବାକୁ ହେବ । ବିରହିରେ କୁ ବି ହିରେ-ବିଚ୍ଛେଦରେ, ରହିରେ-ଏକାନ୍ତରେ ଓ ହିରେ-ଶିବଙ୍କୁ ପଢ଼ି ବିଭିନ୍ନ ଅର୍ଥ କରିବାକୁ ହେବ ।

କଥା ପ୍ରସଙ୍ଗରେ ଅପୂର୍ବ କଥା ପ୍ରକାଶ କରିବା କବିସମ୍ରାଟଙ୍କ ଆଉ ଏକ ବିଶେଷତ୍ୱ । ତାଳପତ୍ର ଫଳ ଅର୍ଥାତ୍ ଚନ୍ଦନ ଫଳର କଥା କବି କହିଛନ୍ତି ଯାହାକି ରସାଳ ଦ୍ରୁଦମ୍ଭ ବା ଆମ୍ବ ଟାକୁଆ ପରି ଟାଟ, ଚନ୍ଦନ ଫଳର କଥା ଅନେକଙ୍କ ଗୋଚର ନାହିଁ । ଜ୍ଞାନର ପରିସୀମା ବୃଦ୍ଧି କରିବାରେ କବିଙ୍କର ଅବଦାନ ଏ ସମାଜ ପ୍ରତି ରହିଲା ।

କବି ମାନେ କଳ୍ପନାପ୍ରିୟୀ । ପ୍ରକୃତିକୁ ଦେଖି ସେମାନେ ଆତ୍ମହରା ହୋଇଯାନ୍ତି । ପ୍ରକୃତିଠାରେ ସୁଖ ଦୁଃଖ ଓ ବିରହ ମିଳନର ଦ୍ୟୋତନା ପାଇଥାନ୍ତି । ପ୍ରକୃତି ସେମାନଙ୍କ ପାଇଁ ବହୁ ବାର୍ତ୍ତାର ପରିବାହକ । ଲେଖାର ବିଭିନ୍ନ ପର୍ଯ୍ୟାୟରେ କବିମାନେ ପ୍ରକୃତିର ବୈଚିତ୍ର୍ୟ ଉପଲବ୍ଧି କରନ୍ତି । ସେଥିରେ ଅନ୍ୟକୁ ଉପଲବ୍ଧି କରାଇବାର ଚେଷ୍ଟା କରନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ବନଭୂମିର ଶୋଭା ବର୍ଣ୍ଣନାରେ କବି ପ୍ରକୃତିଠାରେ ବୈଚିତ୍ର୍ୟ ଆରୋପିତ କରିଛନ୍ତି । ଯାହାକୁ ସହଜରେ ଅବଧାରଣା କରାଯାଇପାରେନା ।

ଅନ୍ଧାର ଓ ଆଲୋକ ମଧ୍ୟରେ ମଧ୍ୟ ଯୁଦ୍ଧ ଏକ କ୍ଳିଷ୍ଟ କଳ୍ପନାପରି ମନେହୁଏ । ସନ୍ଧ୍ୟା ସମୟରେ ତିମିର ଓ ଶଶିପ୍ରଭା ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧ ଲାଗିଯାଇଛି । କପୋତର ହୁଁ କୃତିକୁ ମଲ୍ଲ ମାନଙ୍କ ଗର୍ଜ ସହିତ ତୁଳନା କରାଯାଇଛି । ପବନ ଦ୍ୱାରା ପତ୍ର ଚାଳିତ ହେଉଥିବାରୁ କଳା ଓ ଧଳା ରଙ୍ଗର ମଲ୍ଲ ଗଡ଼ାଗଡ଼ି ହେଉଥିବା ପରି ଜଣାପଡ଼େ । ପତ୍ରର ଛାଇ ଓ ଚନ୍ଦ୍ରକାର ଚୂର୍ଣ୍ଣ ଟିକେ ଦୁଇ ମଲ୍ଲଙ୍କ ଶିଷ୍ୟବୋଲି କଳ୍ପନା କରାଯାଇଛି । ତେଣୁ ଏହି କଳ୍ପନାକୁ କ୍ଳିଷ୍ଟ କଳ୍ପନା ବୋଲାଯାଇପାରେ ।

ସନ୍ଧ୍ୟାପରେ ପ୍ରଭାତର ଆଗମନ ହୁଏ । କବିଙ୍କ ଭାଷାରେ—

କୁମୁଦ ବିକାଶ ତୁଟି ତୁଟି ଯାଇ ପଦ୍ମ ଫୁଟି ଫୁଟି ଆସେ
ହରଷ ବରଷ ପାଲଟା ପାଲଟି ମଧୁଲିଟ ବିଟ କସେ ।

ଆଜି ଯେ ଦୁଃଖରେ ମୁହ୍ୟମାନ, ତା ପାଇଁ ହୁଏତ କାଲି ସୁଖ ଅପେକ୍ଷା କରି ରହିଛି ଏବଂ ସୁଖର ସ୍ଥାନ ଅଧିକାର କରିବାକୁ ଦୁଃଖ ମଧ୍ୟ ସଦା ପ୍ରସ୍ତୁତ । ପ୍ରକୃତି ବର୍ଣ୍ଣନାରେ କବି ଏହିପରି କେତେକ ଚିରନ୍ତନ ସତ୍ୟର ଅବତାରଣା କରିଛନ୍ତି । ଏଥିରେ ଦାର୍ଶନିକ ଭାବଧାରା ଓ ସୂକ୍ଷ୍ମ ପର୍ଯ୍ୟବେକ୍ଷଣ ଶକ୍ତିର ପରିଚୟ ଦେବା ସଙ୍ଗେ ସଙ୍ଗେ ନିଜର ସ୍ଥିତିକୁ ବହୁ ଉପରେ ରଖିପାରିଛନ୍ତି ।

॥ ଶହେ ସତନ୍ତ୍ରସ୍ତ ॥

Digitized by PPRACHIN, SOA

ଚମ୍ପା ନଗରୀ କବିଙ୍କର ଏକ ଅନବଦ୍ୟ ସୃଷ୍ଟି । "ଚମ୍ପା ସେ ରସାଯୋଷା ଶିରେ ବନ୍ଧି, ଶିବ ଉର୍ଦ୍ଧ୍ୱରେ ଗୁରୁତର ସ୍ନେହା" ଇତ୍ୟାଦି ବର୍ଣ୍ଣନାରେ ପ୍ରାଚୁର୍ଯ୍ୟର ସମ୍ଭାର ଏକତ୍ରିତ କରାଯାଇଛି । ଏ ପ୍ରାଚୁର୍ଯ୍ୟ ମଧ୍ୟରେ କେବଳ ଅଭାବର ହିଁ ଅନୁଭବବୋଧ ହୋଇଥାଏ । ତାହାର ବଢ଼ଭି ହରିହସ୍ତ ଓ ହରିହସ୍ତ ଚଉଁରେ ବଡ଼ ଖ୍ରୀ ଜନମ କରିଥାଏ ।

ଗତାନୁଗତିକ ଭାବରେ ନାୟିକାର ରୂପ ବର୍ଣ୍ଣନା କରୁ କରୁ ଏକ ନୂତନ ରୂପକଳ୍ପ କବିଙ୍କ ଚିନ୍ତା ପଥରେ ଦେଖାଦେଇଛି । ନାରୀ ନେତ୍ରରେ କବି ମହାଭାରତର ଚିତ୍ର ବି ଦେଖିପାରିଛନ୍ତି ।

ନେତ୍ରେ ସୁଭାରତ ହେବା କହୁଛି - କୃଷ୍ଣ ଅର୍ଜ୍ଜୁନ ରଙ୍ଗ କରାଇଛି
ଗୁଣ ଅଞ୍ଜନ କପାଳ କମାଣ - ବାଣ ପ୍ରୟୋଗ କଟାକ୍ଷ ପ୍ରମାଣ
କର୍ଣ୍ଣ ବକ୍ର ମଲ୍ଲୀକଢ଼ି ବହିଲା - ସୁତାଟଙ୍କ ଅଢ଼ଣୀରେ ଶୋହିଲା
ଦ୍ରୋଣ ସୁତ ଉତ୍ତରହିଁ ବିଖ୍ୟାତ - କଳ୍କି କି ଉପଲକ୍ଷଣା ସାକ୍ଷାତ ।

(କୋ. ବ୍ର. ସୁ. ୩।୧୮–୧୯)

ଭଞ୍ଜ ସାହିତ୍ୟ ସର୍ବଦା ନାୟିକା କେନ୍ଦ୍ରିକ । ମାତ୍ର କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ନାୟକ ଏ ଦୃଷ୍ଟିରୁ ଅଧିକ ଭାଗ୍ୟବାନ ମନେହୁଏ । ଏଥିରେ ନାୟକର ନାୟିକାକୁ ରମ୍ୟକ ଦ୍ୱୀପ ରୂପରେ କଳ୍ପନା କରି ନିଜକୁ ବିରହଅଗ୍ନି ଦ୍ୱାରା ଆକ୍ରାନ୍ତ ବୋଲି ମନେକରି ନାୟିକା ନାୟକର ସଙ୍ଗଲିପ୍ସା କାମନା କରିଛି । ପ୍ରଥମ ଛାନ୍ଦରେ କୁମାରଙ୍କର ନାମକରଣର ଯଥାର୍ଥ୍ୟ ପ୍ରତିପନ୍ନ ହୋଇଛି—

କୁମାରବର ନାମ ସାର୍ଥ ତାଠାରେ ଏ ପଦକୁ ଅଛି ଆଚରି
ବର୍ତ୍ତିକ ପଲଙ୍କ ଦ୍ୱିବର୍ଣ୍ଣ ଆତଙ୍କ ଜନମାଇ ଦିବା ଶର୍ବରୀ
ପ୍ରାନ୍ତର, ଦୁଇବର୍ଣ୍ଣ କେନ୍ଦ୍ର ସନ୍ତର
କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ହୋଇବି ନିରନ୍ତରେ ଏହି ବିଗ୍ରହ ୧୩।୧୯

ଅର୍ଥାତ୍ କୁ କହିଲେ ପୃଥିବୀ ବା ମାଟିକୁ ଯେ ପଲଙ୍କ କରିଛି । ମାର ଭସ୍ମ ଜନ୍ମଉଛି ଓ ବର ବା ନାୟିକାର ସ୍ୱାମୀ ହେବାକୁ ଚିନ୍ତା କରୁଛି ।

ଏହି କୁମାରଠାରେ ନାୟିକା ପୃଥିବୀର ସମସ୍ତ ସଂପଦ, ସମସ୍ତ ଶୁଭଶ୍ରୀ ଓ ଶିବତ୍ତ୍ୱର ଚିହ୍ନ ଦେଖିପାରିଛି । କନ୍ଦର୍ପଠାରୁ ସୁନ୍ଦର ଅନ୍ୟାନ୍ୟ ଦେବତା-ଠାରୁ ଗୁଣବାନ୍, ଶସ୍ତ୍ରଧର ଇତ୍ୟାଦି କହିବା ଦ୍ୱାରା ନାୟକର ଯେଉଁ ବଡ଼ିମାର



Digitized by PPRACHIN, SOA

ପ୍ରକାଶ ରୂପ ନ ପାଇଛୁ, ବିଷ୍ଣୁଙ୍କର ଦଶ ଅବତାରର ଚିହ୍ନ ଏକତ୍ର ଦେଖିବା ଦ୍ୱାରା ନାୟିକାର ରୁଚି, ନାୟକର ପବିତ୍ରତା, ଧର୍ମ ଓ ଶୋଭାର ସମନ୍ୱୟ ଏକତ୍ରିତ ହୋଇଛୁ ।

ଛନ୍ଦ ଏକ ଶୃଙ୍ଖଳ । ତା ଆଗରେ କିଛି ବାଡ଼ବତା ନଥାଏ । ବ୍ୟାକରଣର ବନ୍ଧନକୁ କବିର ଭାବ ଶାବକଟି ଅନେକ ସମୟରେ ଅତି ସହଜରେ ଅତିକ୍ରମ କରିଯାଏ । ଷୋଡ଼ଶ ଛାନ୍ଦରେ ପ୍ରଭାତ ବର୍ଣ୍ଣନା କଲାବେଳେ କବି ଲେଖିଛନ୍ତି—

ସେ ଧନ୍ୟ - ତାଙ୍କଠାରୁ ଯେଉଁମାନେ ଭିନ୍ନ

ଭିନ୍ନ ଶବ୍ଦଟି ବିଶେଷଣ ହେଲେ ବି ଏଠାରେ ତାହା ବିଶେଷ୍ୟ ପଦ ରୂପେ ବ୍ୟବହୃତ ହୋଇଅଛି । ସେହି ଛାନ୍ଦରେ ୫ମ ପଦରେ ବିପ୍ରଲବ୍‌ଧା ନାୟିକାର ବର୍ଣ୍ଣନା ପ୍ରସଙ୍ଗରେ କବି ଲେଖିଛନ୍ତି—

"ପାଇଣ ନିରାଶ ପକାଇ ନିଶ୍ୱାସ ବାହାରିଲା ସଙ୍କେତରୁ ।" ନୈରାଶ୍ୟ ସ୍ଥାନରେ ନିରାଶ ଲେଖିବା ବେଳେ ବ୍ୟାକରଣ ଗତ କି ତ୍ରୁଟି ରହିଗଲା ସେଥିପ୍ରତି କବି ଭ୍ରୂକ୍ଷେପ କରିନାହାନ୍ତି ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ କେତେକ ନୂତନ ଓ ଅନବଦ୍ୟ ସୃଷ୍ଟି ଏ ଗ୍ରନ୍ଥକୁ ସ୍ୱାତନ୍ତ୍ର୍ୟ ପ୍ରଦାନ କରିଛି । ଅପରୂପ ବୈଭବ ଓ ଅନନ୍ୟ ରୂପଚ୍ଛଟାରେ କାବ୍ୟକୁ ମଣ୍ଡିତ କରିଛି । ବୈଦେହୀଶ ବିଳାସର ବିଶାଳତା ଏଥିରେ ନଥାଇପାରେ ମାତ୍ର କେତୋଟି ନୂତନ ପ୍ରୟୋଗ କବିଙ୍କ କାବ୍ୟ ନୂତନ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରିଛି, ଯାହାକି ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ଦେଖିବାକୁ ବିରଳ ।

ରାଜଚୂଡ଼ ବିଶ୍ୱାନନ୍ଦ ରାଜାଙ୍କ ସହିତ ସଭା ମଣ୍ଡନ କଲାପରେ ନୃତ୍ୟ ପରାୟଣା-ଗଣିକାମାନଙ୍କ ନୃତ୍ୟ ଦୃର୍ଗପୁରର ଶ୍ରୀ ଆଣିଦେଇଛି । ଏହି ଅବସରରେ କବି ଆଦି, ଯତି, ନିସାରୀ, ଚମ୍ପା, ତ୍ରିପୁଟା, ଏକତାଳି, ସରମା ଓ ଆଡ଼ତାଳି ପ୍ରଭୃତି ତାଳର ପର୍ଯ୍ୟାଲୋଚନା କରିଛନ୍ତି । ସେହି ସ୍ଥାନକୁ କବି ଶୁଦ୍ଧ ସାଲଗଗ୍ରସ୍ତା, ଲଗ ଏବଂ ସୁଡ଼ ପ୍ରଭୃତି ଗ୍ରନ୍ଥ ଲକ୍ଷଣର ମୂଳ କାରଣ ଗୁଡ଼ିକୁ ପ୍ରକାଶ କରିଛନ୍ତି । ବସନ୍ତ, ସୋମ, କେଦାର, ଭୈରବ ଓ କଳହଂସ ରାଗ ମାନଙ୍କର ବିଭକ୍ତିକରଣ କରିଛନ୍ତି । ସଙ୍ଗୀତ ସଂପର୍କରେ ସମ୍ୟକ୍ ଗମ୍ଭୀର ଜ୍ଞାନ ଦେଖି ପାଠକକୁ ବିସ୍ମିତ ହେବାକୁ ପଡ଼େ ।

|| ଶବ୍ଦେ ଅଣାଅଣି ||

Digitized by PPRACHIN, SOA

ଦ୍ୱାତ୍ରିଂଶ ଛାନ୍ଦରେ ଜ୍ୟୋତିଷ ବିଦ୍ୟାର ଅବତାରଣା ଭଞ୍ଜ କାବ୍ୟର ଆଉ ଏକ ଗତାନୁଗତିକ ବିଶେଷତ୍ୱ । କବି ଲେଖିଛନ୍ତି କୁମାରଙ୍କ ମନ ସବୁବେଳେ ମିଳନ ଖୋଜୁଥିବାରୁ ତାଙ୍କର ଜନ୍ମ ଲଗ୍ନ ମିଥୁନ ହୋଇଛି ବୋଲି ଜଣାପଡ଼େ । ଗ୍ରହଚକ୍ରରେ ୩ୟ ସ୍ଥାନରୁ ବିକ୍ରମ ଓ ଧୀରତା ଆଦିର ବିଚାର କରାଯାଏ । ସିଂହ-ରାଶି ମିଥୁନ ଲଗ୍ନକୁ ୩ୟ ସ୍ଥାନ । ପୁଣି ଶନି ତୁଳା ରାଶିରେ ଥିବାରୁ ଏହା ମିଥୁନ ଲଗ୍ନ ପ୍ରତି ୫ମ ସ୍ଥାନ । ଶନି ତୁଳା ରାଶିରେ ତୁଙ୍ଗୀ ଇତ୍ୟାଦି ରାଶିମାନ ସ୍ପଷ୍ଟ ଭାବରେ ବିଶ୍ଳେଷିତ ହୋଇଛି ।

ସବୁ ଛାନ୍ଦପରି ଏ ଛାନ୍ଦରେ ରାମଚନ୍ଦ୍ର ସମ୍ବୋଧନ ସ୍ଥାପିତ ହୋଇଛନ୍ତି । ସମୁଦ୍ର ମନ୍ଥନକାରୀ ବିଷ୍ଣୁରୂପେ ରାମଚନ୍ଦ୍ର ଏଠାରେ କଳ୍ପିତ ହୋଇଛନ୍ତି । ପ୍ରତ୍ୟେକ ଛାନ୍ଦ ଶେଷରେ ଇଷ୍ଟଦେବତାଙ୍କ ନିକଟରେ ସେହି ଆତ୍ମସମର୍ପଣର ଭାବ ।

୧ । ସୀତାପତି କୀର୍ତ୍ତିସାର, ସୀତାଠାରୁ ସୁମଧୁର (୩୨ ଛାନ୍ଦ)

୨ । ଭବ ଭୁବନସ୍ଥ ଅନନ୍ତ ମୂରତି ଧାରଣ (୩୧ଶ ଛାନ୍ଦ)

୩ । ତରଣୀ କୁଳର ସାର ଆଶ୍ରୟରୁ ନିରନ୍ତର କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିବି ଶବଦ ସମୁଦ୍ର ପାର (୧୪ଶ)

୪ । ଉପଇନ୍ଦ୍ର ଯୋଗେ - ଶ୍ରୀରାମ - ଇନ- ଘନନାଶେ (୧୨ ଶ)

୫ । ଯେଉଁ ଅଭିରାମ ରାମ ବାମନମୂର୍ତ୍ତି ଉପଇନ୍ଦ୍ର ଭଞ୍ଜର ସକଳ ସଂପତ୍ତି (୯ମ)

୬ । କୁରଙ୍ଗରେ କର, ସୁଧାଂଶୁ ଏ ବେନି ନାମଯୁକ୍ତ ନାମ ସୁମର (୨୩ଶ ଛାନ୍ଦ)

କାଳିଦାସଙ୍କ କହିଲପରି ମୁଁ ଗୋଟିଏ ସାମାନ୍ୟ ଭେଳାରେ ବସି ଜ୍ଞାନର ସମୁଦ୍ର ପାରି ହେବାକୁ ବସିଛି । ଭଞ୍ଜ ସାହିତ୍ୟରୁ ନୂତନ ଦିଗନ୍ତ ବାହାର କରିନପାରିବା ଆମର ଅକର୍ମଣ୍ୟତାର ପରିପ୍ରକାଶ । ତାହା ଚିନ୍ତାଶକ୍ତି ଓ ଅନୁସନ୍ଧିତ୍ସାର ଅଭାବ ।

ସଂସ୍କୃତ ସାହିତ୍ୟର ଅନନ୍ତ ସମୁଦ୍ର ଗର୍ଭରେ କେଉଁଠି ହୁଏତ ଖଣ୍ଡିଏ ରତ୍ନ ଥାଇପାରେ, ଯାହାକି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଥିବା ବିରଳ ବର୍ଣ୍ଣନା ସହିତ ସ୍ପର୍ଦ୍ଧା କରିପାରେ । କବିଙ୍କ କାବ୍ୟର

କଣ୍ଠ ଶଙ୍ଖଜିତ ମନ୍ଦର ତାଡ଼ନ ବିରାହବର ଅହିତ
ସେ ନର କେଶରୀ ବଳୀଧ୍ୱଂସୀ ତେଜେ ସହସ୍ରକର ବିଜିତ
ରେ ସହି, ନାମ ବଳ ଖ୍ୟାତ ବହି

॥ ଶହେ ଅଶୀଏ ॥

Digitized by PPRACHIN, SOA

ବୁଧ ଗୁଣେ ଚନ୍ଦ୍ରହାସେ ଶୋଭି ବିଷ୍ଣୁ ଦଶରୂପ ଏକେ ବନ୍ଧ ସହିତ ସଂସ୍କୃତର

ରତ୍ୟାପ୍ତ, ପ୍ରିୟ ଲଶ୍ମିନେ, କଠିନତା ବାଦେ, ରସାଲଙ୍କିତେ
ପ୍ରହ୍ଲାଦୈକରସେ, କମୋଦୁପଚତେ, ଭୂଭୃତ ଗୁରୁତାପ ହେ
କୋକ ସ୍ପର୍ଦ୍ଧିନି, ଦ୍ୱିଜଗଭଞ୍ଜି, ଜନତାନଙ୍ଗେ, ଖଳୋନ୍ମୁଖେ
ଘାତ ଶ୍ରୀ ରମଣେବତାର ଦଶଙ୍କ ବାଲେ ଭବତ୍ୟା ସ୍ତନେ ।

ତୁଳନୀୟ । ପ୍ରଭେଦ ଏତିକି ସଂସ୍କୃତରେ ବର୍ଣ୍ଣିତାର ଉରଜକୁ ବିଷ୍ଣୁଙ୍କ ଦଶ ଅବତାର ସହିତ ତୁଳନା କରାଯାଇଛି । ଉପେନ୍ଦ୍ରଙ୍କ କୃତିରେ ନାୟିକାର ଦୃଷ୍ଟିରେ ନାୟକ ଏକା ସମୟରେ ବିଷ୍ଣୁଙ୍କ ଦଶ ଅବତାର ।

ଉପେନ୍ଦ୍ରଙ୍କ କାବ୍ୟ ସଂପଦର ମୂଳଉତ୍ସ ଆବିଷ୍କାର କରିବାକୁ ହେଲେ ବହୁ ଆୟାସ ଓ ସାଧନାର ଆବଶ୍ୟକତା ଅଛି । ଭବିଷ୍ୟତର ଗବେଷକ ଓ ଆଲୋଚକମାନଙ୍କ ଉଦ୍ୟମ ଉପରେ ତାହା ନିର୍ଭର କରେ ।



ଅଧ୍ୟକ୍ଷ
ସୁଭଦ୍ରା ମହତାବ କଲେଜ
ଅସୁରେଶ୍ୱର
କଟକ ।

॥ ଶହେ ଏକାଅଶୀ ॥

Digitized by PPRACHIN, SOA

# କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଚିତ୍ରିତ ଚରିତ୍ର

ନବଘନ ଦଣ୍ଡା

ଓଡ଼ିଆ କବି-କୁଳ-ତିଲକ - ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟାକାଶର ଅନ୍ୟତମ ଉଜ୍ଜ୍ୱଳ ଜ୍ୟୋତିଷ୍କ କଳ୍ପନା ପ୍ରସୂତ ଗ୍ରନ୍ଥ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ଆଲଙ୍କାରିକ କାବ୍ୟ ଭାବରେ ଏହା ବିକଳ୍ପିତ । ଏହି କାବ୍ୟ ଗ୍ରନ୍ଥର ଗଳ୍ପ ଗୁମ୍ଫନରେ ଅଲୌକିକତା ଅଛି; କିନ୍ତୁ କୌଣସି ବିଚିତ୍ରତା ନଥିଲେ ବି; କଳ୍ପନା ପ୍ରବଣ କାବ୍ୟ ସଚେତନତା ବିଦ୍ୟମାନ । ଚରିତ୍ର ଚିତ୍ରଣ ସରଳ,ସଂଘର୍ଷ-ବିବର୍ଜିତ;ମାତ୍ର ସାହିତ୍ୟିକ ଅଲଙ୍କାରରେ ପରିପୂର୍ଣ୍ଣ । ତତ୍କାଳୀନ ପରିବେଶରେ ବିଦ୍ୱାନମଣ୍ଡଳୀରେ ଅଳଙ୍କାରର ଆଦର ଥିଲା ଓ ଆଲୋଚନାରେ ତାହାପରି ଗୃହୀତ ହେଉଥିଲା । ଅଳଙ୍କାର ଶାସ୍ତ୍ରଜ୍ଞ ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ—"ଅଲଙ୍କୃତ ମ ସଂକ୍ଷିପ୍ତଂ ରସଭାବ ନିରନ୍ତରମ୍ ।"

କାବ୍ୟର ପ୍ରଧାନ ଚରିତ୍ର ପୁଷ୍ପକେତୁ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ । ସେମାନଙ୍କୁ କେନ୍ଦ୍ର କରି ଅନ୍ୟ କେତେଗୋଟି ଚରିତ୍ର କେବଳ ଆବର୍ତ୍ତିତ ।

ପୁଷ୍ପକେତୁ— କାବ୍ୟର ପ୍ରଧାନ ଚରିତ୍ର ଓ ନାୟକ । ମଗଧ ରାଜ୍ୟ ଇତିହାସ ଓ ପୁରାଣ ପ୍ରସିଦ୍ଧ । କାରଣ— "ଯହିଁ ବିଷ୍ଣୁପଦାଙ୍କିତ," ବ୍ରହ୍ମଯୋନୀ ଓ ପ୍ରେତଶିଳା ବିଶିଷ୍ଟ ତୀର୍ଥକ୍ଷେତ୍ର ଗୟା ସେଠାରେ ଅବସ୍ଥିତ । "ପାତକୀ କରେ ପବିତ୍ର - ସେ ଗୟାକ୍ଷେତ୍ର" । ସେହି ରାଜ୍ୟର ରାଜଧାନୀ ପୁଷ୍ପପୁର । କବି ସେହି ନଗର ବର୍ଣ୍ଣନା କ୍ରମରେ ବ୍ୟତିରେକ ଅଲଙ୍କାରର ସାହାଯ୍ୟ ନେଇଛନ୍ତି । ସେହି ପୁଷ୍ପପୁରର ଔଜ୍ଜ୍ୱଲ୍ୟରେ ସୂର୍ଯ୍ୟଙ୍କ ତେଜ ଫିକା ପଡ଼ିଯାଉଥାଏ । ତେଣୁ ସୂର୍ଯ୍ୟ କାଗଜ ନିର୍ମିତ ଗୁଡ଼ି ପରି ଜଣାପଡ଼େ—

"ଉଡ଼ାଏ କାଗଜ ଚକ୍ର - ଏମନ୍ତ ତର୍କି ଯେ" । (୪ର୍ଥ ଛାନ୍ଦ ୧୧ ପଦ)

ସେହି ରାଜ୍ୟର ରାଜକୁମର ପୁଷ୍ପକେତୁ । ସାମୁଦ୍ରିକ ଶାସ୍ତ୍ର ମତରେ ମତ୍ସ୍ୟରେଖା ପୁରୁଷର ପ୍ରଚଣ୍ଡ ପୌରୁଷର ଚିହ୍ନ— ତାଙ୍କଠାରେ ବିଦ୍ୟମାନ, ସେହି ବୀର୍ଯ୍ୟବାନ



Digitized by PPRACHIN, SOA

ଯୁଦ୍ଧ ଗୋଟିଏ ପାଦରେ ଦଣ୍ଡାୟମାନ ହୋଇ ଗଦା ଚଳାଇବାରେ ଧୁରୀଣ ବୋଲି କବି ବର୍ଣ୍ଣନା କରିଛନ୍ତି—

"ପଦକ ରହିବ କେହି - ପାଞ୍ଚିଲେ ଏହି ଯେ ।"

ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ— 'ଚତୁର୍ବର୍ଗ ଫଳାୟତ୍ତଂ ଚତୁରୋଦାତ୍ତ ନାୟକମ୍', ବିଶ୍ୱନାଥ କବିରାଜ କହନ୍ତି— 'ତତ୍ରୈକୋ ନାୟକଃ ସୁରଃ ସଦ୍ ବଂଶଃ କ୍ଷତ୍ରିୟୋ ବାପି ଧୀରୋଦାତ୍ତ, ଗୁଣାନ୍ୱିତଃ' । ଦୁଷ୍ମନ୍ତ ବ୍ୟାକରଣ ମୀମାଂସା, ବେଦବେଦାନ୍ତ, ଦର୍ଶନ ପ୍ରଭୃତିରେ ପାଣ୍ଡିତ୍ୟ ଅର୍ଜନ କରିଛନ୍ତି । ତୁରଙ୍ଗମ ଓ ହସ୍ତୀ ଆରୋହଣ ବିଦ୍ୟାରେ ସେ ଦକ୍ଷ ।

"ମୀମାଂସା ବେଦ ବେଦାନ୍ତେ ଟୀକା ପୁସ୍ତକ ଏ ସବେ
ଜୈମିନୀ ବଖାନ ବ୍ୟାସ ପ୍ରଶଂସି ତୋଷ ଯେ,"

× × ×

"ତୁରଙ୍ଗ ରୋହଣ ଗୁହି ହେଲ କାଶ୍ୟପୀଙ୍କ କହି
କେମନ୍ତ ଆଶ୍ଚର୍ଯ୍ୟ ସାଧି ମହା ସମ୍ବାଦ ଯେ ।"

( ୪ର୍ଥ ଗ୍ରନ୍ଥ - ୩୧-୩୪ ପଦ )

କେବଳ ଶସ୍ତ୍ର-ଶାସ୍ତ୍ର-ପାରଙ୍ଗତ ନୁହେଁ ଲଳିତ କଳାରେ ତାଙ୍କର ଅଦ୍ଭୁତ ପାରଦର୍ଶିତା ଦେବର୍ଷି ନାରଦଙ୍କୁ ସନ୍ତୁଷ୍ଟ କରିପାରିଥିଲା । ତେଣୁ କବିଙ୍କ ଭାଷାରେ—

"ବୀଣା ଶ୍ରବଣେ ନାରଦ ସନ୍ତୋଷେ ହେଲେ ବରଦ
ହେଉ ତବ ମନୋବାଞ୍ଛା— ଦିବ୍ୟ ସୁନ୍ଦରୀ ।

( ୪ର୍ଥ ଗ୍ରନ୍ଥ ୩୧ ପଦ )

ମହର୍ଷିଙ୍କ ମନ୍ତ୍ର ଶକ୍ତିବଳରେ ମାତଙ୍ଗୀଙ୍କ ତପୋବନରେ ପୁଷ୍ପକେତୁ ଓ ତା'ର ସହଚରମାନେ ବିମାନ ସାହାଯ୍ୟରେ ଆସି ପହଞ୍ଚିଲେ । ସେଠାରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କ ସହିତ ଚାରିଚକ୍ଷୁ ହେଲା । ଉଭୟ ଉଭୟଙ୍କ ଗୁହିଁ ରହିଥାନ୍ତି । କୁମାର ସମ୍ଭବ କାବ୍ୟରେ ପାର୍ବତୀଙ୍କ ସମ୍ମୁଖରେ ତାଙ୍କ ଆରାଧ୍ୟ ଦେବତା ଶିବ ଉପସ୍ଥିତ ହେଲେ । କଠିନ ତପସ୍ୟା ବଳରେ ତାଙ୍କ ଦର୍ଶନ ପାଇଥିଲେ ମଧ୍ୟ ତଟସ୍ଥ ହୋଇଯାଇଥିଲେ— "ହିମାଦ୍ରି ରାଜତନୟା ନ ଯଯୌ ନ ତସ୍ଥୌ ।" ସେହିପରି କବି ଉପେନ୍ଦ୍ର ଲେଖିଛନ୍ତି—

"ଗୁହୁଁ ଗୁହେଁ ଦୁହିଙ୍କି ମନନେତ୍ର ବାନ୍ଧିକି
ନଯାଇ ଉପୁଜାଇ ସ୍ନେହ

॥ ଶହେ ଚଉଅଣୀ ॥

Digitized by PPRACHIN, SOA

ଆଲୋକିତ ଲୋକିତ ବର୍ଣ୍ଣ ଉଜ୍ଜ୍ୱଳ ଚକିତ

ଛକିତ ହୋଇଗଲା ଦେହ ଯେ।

ଯୁବାଗ୍ରମା— ହାସେ ଝଲକ କିଛି ରହ

ହାସେ ପଲକ କିଛି ନାହିଁ ।

ନାସେ ଶ୍ୱାସ ରହିଲା ନାଶେ ମାର ତାହିଲ

ମୂର୍ଚ୍ଛା ମୂର୍ଚ୍ଛିତ ଗଲା କାହିଁ ।"

( କୋ· ବ୍ର· ସୁ. ୧୩ଶ ଛାନ୍ଦ— ୨୪ ପଦ)

ପୁଷ୍ପକେତୁ ପ୍ରଥମେ ଶ୍ଳୋକ ବାକ୍ୟରେ ସୁନ୍ଦରୀଙ୍କୁ ଆପ୍ୟାୟନ କରିବାରୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଚମ୍ପକ ମାଳା ପ୍ରେରଣ କରିଛି, ପ୍ରତ୍ୟୁତ୍ତରରେ ଯୁବକ ପଦକ ପ୍ରଦାନ କରିଛି ।

ସେମାନେ ପରସ୍ପର ପ୍ରତି ଆକୃଷ୍ଟ ହୋଇପଡ଼ିଛନ୍ତି । ପୁଷ୍ପକେତୁର ପତ୍ର ନେଇ ପୋଷା ମାଳିନୀ ଗୃହରେ ରହି ପୁଷ୍ପମାଳ ମଧ୍ୟରେ ତାହାକୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ନିକଟରେ ପହଞ୍ଚାଇ ଦେଇଛି । ସେ ନିଜର ସଖୀମାନଙ୍କ ହସ୍ତରେ ପୁଷ୍ପ-କେତୁଙ୍କ ନିକଟକୁ ପତ୍ର ପ୍ରେରଣ କରିଛି ।

ପରିଶେଷରେ ପୁଷ୍ପକେତୁ ମୃଗଶୃଙ୍ଗର ଛେଦନ କରି ପାରିଜାତ ମାଳା ବିଶୋଭିତ ହୋଇ କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ ବିବାହ କରିଛି ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ— ବ୍ରହ୍ମାଙ୍କ ମାନସ କନ୍ୟା

କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଚମ୍ପାନଗରୀର ରାଜକନ୍ୟା । ଚମ୍ପାନଗରୀର ରାଜକନ୍ୟା ଲାଭ କରି ନଥିଲେ । ସେ ଗୋଟିଏ କନ୍ୟା ପ୍ରାପ୍ତି ନିମନ୍ତେ ବ୍ରହ୍ମାଙ୍କ ଠାରୁ ବର ଲାଭ କରି ନିଜ ଔରସରୁ ରତିମର୍ଦ୍ଦା ଅପ୍ସରା ଗର୍ଭରୁ ଜାତ କନ୍ୟା ଲାଭକଲେ । ସେହି କନ୍ୟାର ନାମକରଣ ସ୍ୱୟଂ ବ୍ରହ୍ମା କରିଥିଲେ ।

"ନଥିଲା ନାହିଁ ନୋହିବ ଏ ବାଣୀ
କୁମାରୀଠାରେ ସମ୍ଭବିବ ପୁଣି
ବୋଲିବ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ
ପ୍ରେମ ଅଙ୍କୁରରୁ ପ୍ରେମ ମଞ୍ଜରୀ"

( ୨ୟ ଛାନ୍ଦ ୬୩ ପଦ )

॥ ଶିହେ ଚୌରାଅଶୀ ॥

Digitized by PPRACHIN, SOA

ସେହି କନ୍ୟା ଜନ୍ମ ହେବାମାନେ ସୁନ୍ଦର ପଣରେ ସମସ୍ତଙ୍କୁ ମୁଗ୍ଧ କରିଦେଲା । ରାଜା ଏହି କନ୍ୟାପାଇଁ ବର କେଉଁଠୁ ମିଳିବ ବୋଲି ଚିନ୍ତା କରିବାରୁ ଶୂନ୍ୟବାଣୀ ହେଲା—

"ଆକାଶରୁ ଶୁଭେ ଏମନ୍ତ ଗୀର-ପ୍ରକାଶ ହେଲଣି ବର ଏହାର" ।
(୨ୟ ଛାନ୍ଦ ୭୩)

କବି ଉପେନ୍ଦ୍ର ଭଞ୍ଜ ଗଳ୍ପ ଆରମ୍ଭରେ ଏହିସବୁ ଅଲୌକିକ କଳ୍ପନାର ଆଶ୍ରୟ ନେବାର କାରଣ ଦୁଇ ପ୍ରକାର । ସେ ନୈଷଧ ପରି କାବ୍ୟ ରଚନା ପ୍ରୟାସ କରିଛନ୍ତି । ଯଦି ନାୟିକା ସେପରି ଅଲୌକିକ ସମ୍ଭବ ନହେବ ତେବେ ସେ ଯେଉଁ କାରୁକଳ୍ପନାର ମିନାର ତୋଳିବେ ତାହା ହୁଏତ ପ୍ରଭାବାନ୍ୱିତ ହେବନାହିଁ । ପୁଣି ଅଳଙ୍କାର ଶାସ୍ତ୍ର ଅନୁସାରେ କାବ୍ୟର ନାୟିକା ଉଚ୍ଚ କୁଳସମ୍ଭୂତା ତଥା "ଅଥ-ନାୟିକା ତ୍ରିଭେଦା ସ୍ୱାନ୍ୟା ସାଧାରଣ ସ୍ତ୍ରୀତି," ମଧ୍ୟରୁ ଶ୍ରେଷ୍ଠ ନାୟିକା ହିଁ ଉପଯୋଗୀ । ଅଳଙ୍କାର ଶାସ୍ତ୍ରରେ ନାୟିକାର ଏକ ସହସ୍ର ଏକଶତ ଅଷ୍ଟ ପଞ୍ଚାଶତ୍ର (୧୧୫୮) ଭେଦ ନିର୍ଣ୍ଣିତ ହୋଇଛି । ଏହି ପରିପ୍ରେକ୍ଷୀରେ ଏପରି କଳ୍ପନାର ଆଶ୍ରୟ ନେଇ କବି ସ୍ୱକୀୟ ଶକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି । ଯଦି ସେ ତାହାଙ୍କ ସାଧାରଣଲୋକର ଚରିତ ଉପସ୍ଥାପନ ନକଲେବୋଲି ଯୁକ୍ତିକରାଯାଏ ତେବେ କେବଳ ଅବାନ୍ତର ହେବନିକା ।

କବି କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପଗୁଣ ବର୍ଣ୍ଣନା କରିବାରେ ସମଗ୍ର କାବ୍ୟର ବହୁ ଅଂଶକୁ ବିନିଯୋଗ କରିଛନ୍ତି । ସେ କାହାଣୀ କଳ୍ପନା କରିଛନ୍ତି ଅଳଙ୍କାର ପ୍ରୟୋଗ ନିମନ୍ତେ; କାହାଣୀ ଅନୁସାରେ ଅଳଙ୍କାର ପ୍ରୟୋଗ କରିବା ତାଙ୍କର ଅଭିପ୍ରାୟ ନୁହେଁ ।

କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପଗୁଣ ବର୍ଣ୍ଣନା ପୁଷ୍ପକେତୁ କବିଙ୍କ ମୁଖରୁ ଶୁଣିଛନ୍ତି । କବି ଦ୍ୱୟ ଚମ୍ପା ନଗରୀର ଅଧିବାସୀ, ତେଣୁ ସେ ଦୁହେଁ କହନ୍ତି ଯେ –

"ଜାତକ ସ୍ଥାନୀ ଯେନ ଆମ୍ଭ ଭରସା,
ଗୃତକ ସ୍ଥାନେ ଯଥା ଥିଲ ମୁଦିର ପ୍ରତିଦାନ କରେ ବରଷା ।"
( ୬ଷ୍ଠ ଛାନ୍ଦ ୨୫ ପଦ )

ସମଗ୍ର ଷଷ୍ଠ ଓ ସପ୍ତମ ଛାନ୍ଦରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ବର୍ଣ୍ଣନାରେ କବି ସ୍ୱୀୟ କଳ୍ପନା ଚାତୁର୍ଯ୍ୟ, ଭାଷା ଭାସ୍କର୍ଯ୍ୟ ଓ ଭାବ ଗାମ୍ଭୀର୍ଯ୍ୟର ଅପୂର୍ବ ଦକ୍ଷତା ପ୍ରଦର୍ଶନ କରିଛନ୍ତି । ସେ ସଂସ୍କୃତାଭିମାନୀ ପଣ୍ଡିତ ମଣ୍ଡଳୀକୁ ଦେଖାଇ ଦେଇଛନ୍ତି



Digitized by PPRACHIN, SOA

ଯେ ଓଡ଼ିଆ ଭାଷାରେ କାବ୍ୟ ଲେଖାଯାଇପାରେ ଓ ତାହା "ନୈଷଧୀୟ ଚରିତମ୍' ସହିତ ତୁଳନା କରାଯାଇପାରେ ।

"ଯେହ୍ନ ନୈଷଧ ପରାୟେ, ଉପଇନ୍ଦ୍ର କହେ ବୁଧ ପ୍ରମୋଦକରାଏ ।"
(୧୧ଶ ଛାନ୍ଦ-୭୧ ପଦ)

ବିଶ୍ୱାନନ୍ଦକ— ଚମ୍ପାନଗରୀର ରାଜା ବିଶ୍ୱାନନ୍ଦକ । ସେ ମହାବୀର ତ୍ରିପୁର ବିଜୟୀ ସୁଶାସକ—

"ପୁଣି ତ୍ରିପୁର ବିଜୟୀ ସ୍ୱଭାବେ, କୃମାରଗଣ ପାଦତଳେ ସେବେ
ମହିମା ତାଙ୍କ ଅନୁକ୍ଷଣେ ଶୁଭେ ବିଶ୍ୱାନନ୍ଦକ ହୋଇ ନାମ ଶୋଭେ ।"
(୨ୟ ଛାନ୍ଦ- ୨୧ ପଦ)

ସେ ରାଜ୍ୟ ଜୟ କରି ଶତ୍ରୁ ମନରେ ଯେପରି ଶଙ୍କା ଜାତ କରୁଥିଲେ ସେହିପରି ଯଜ୍ଞ, ଦାନ ଓ ଅତିଥି ସତ୍କାରରେ ନିପୁଣ ଥିଲେ । ସମଗ୍ର ରାଜ୍ୟ ଧର୍ମ ଅର୍ଥ କାମ ତ୍ରିବର୍ଗରେ ପରିପୂର୍ଣ୍ଣ ଥିଲା । ମନ୍ତ୍ରୀ ରାଜାଙ୍କୁ ଚତୁର୍ଥବର୍ଗର ମାର୍ଗ ପରିଷ୍କାର କରିଦେବା ପାଇଁ ମନ୍ତ୍ରଣା ଦେଇଛନ୍ତି— ବଦ୍ରିକା ବନକୁ ଯିବାପାଇଁ । ସେଠାରେ ବହୁ କରିତ୍ରି-କର୍ମୀ ମୁନି ଋଷିମାନେ ଅବସ୍ଥାନ କରନ୍ତି । ସମୟେ ସମୟେ ଦେବତାମାନେ ସେଠାକୁ ଆସନ୍ତି, ସେମାନଙ୍କ ସଂସର୍ଗରେ ମୋକ୍ଷଦ୍ୱାର ଉନ୍ମୁକ୍ତ ହୋଇଯିବ । ସେହି ବନପଥରେ ଯେଉଁ ରାଜନ୍ୟ ବର୍ଗ ବଶ୍ୟତା ସ୍ୱୀକାର କରିନାହାନ୍ତି ସେମାନଙ୍କୁ ଯୁଦ୍ଧରେ ପରାସ୍ତ କରିହେବ । କବିଙ୍କ ଭାଷାରେ—

"ସୁରେ ଆସିଥାନ୍ତି ସେହି ବନରେ
ଭେଟ ହୋଇବା ତାହାଙ୍କ ସଙ୍ଗରେ
ପଥେ ଅଜୟ ଥିଲେ କେହି କେହି
ମହିମା ଆରମ୍ଭି କରିବା ତହିଁ ।"
( ୨ୟ ଛାନ୍ଦ - ୨୭ ପଦ )

ରାଜାଙ୍କୁ ମନ୍ତ୍ରଣା ଯେହ୍ନଛି । ସେ ସସୈନ୍ୟ ବଦରିକା ଯାତ୍ରାକରିଛନ୍ତି । ପଥରେ ଗଙ୍ଗାନଦୀ ପାର ହୋଇଛନ୍ତି । ଗଙ୍ଗାରେ ସ୍ନାନ କଲାସମୟରେ ଦେଖିଲେ ଗୋଟିଏ ଅସୁର ବ୍ରହ୍ମାଙ୍କ ବାହନ ହଂସକୁ ନେଇ ଯାଉଁ ଯାଉଁ କହୁଛି—

"ବୋଲୁଛି ରଖୁ ଧାତା ବାହୁବଳେ
ପଡ଼ିଲୁ ମୋ' ମୁଖେ ଆଖେଟ କାଳେ

॥ ଶରେ ଛୟାଅଶୀ ॥

Digitized by PPRACHIN, SOA

"ସର୍ଗି ଧୋଇବାକୁ ମୁଁ ନୁହେଁ ଶଙ୍କ
ହେଲ ପାଦଗଡ଼ ଚତୁର ମୁଖ ।"

(୨ଯ୍ଯ ଗ୍ରନ୍ଥ ୩୧ ପଦ)

ରାଜା ଏହା ଶ୍ରବଣ କଲାମାତ୍ରେ ଅଶ୍ବ ଚଢ଼ାଇ ଅସୁରକୁ ହତ୍ୟାକଲେ । ବ୍ରହ୍ମାଙ୍କ ବାହନ ହଂସକୁ ଅସୁର କବଳରୁ ଉଦ୍ଧାର କରି ତାର ସ୍ୱାମୀଙ୍କୁ ଫେରାଇଦେବା ନିମନ୍ତେ ତାଙ୍କ ନିକଟରେ ଉପସ୍ଥିତ ହେଲେ । ବିଧାତା ହଂସ ମୁଖରୁ ସମସ୍ତ ଘଟଣା ଶ୍ରବଣ କରି ରାଜାଙ୍କର ମନୋବାଞ୍ଛା ପୂରଣ ହେଉ ବୋଲି ଆଶୀର୍ବାଦ କଲେ, ରତିମର୍ଦ୍ଦି ନାମକ ଅପ୍‌ସରା ଗୁପ୍ତ ହୋଇଥାଏ, କେବଳ ବସନ୍ତ ଋତୁରେ ଗନ୍ଧ-ମାଦନ ପର୍ବତରେ ଧାତା ଅବସ୍ଥାନ କାଳରେ ଦେଖାଦିଏ—

"ଗନ୍ଧମାଦନରେ ଆମ୍ଭେ ବସନ୍ତେ
ଗୁପ୍ତ ହୋଇଥାଏ ଖ୍ୟାତ ବସନ୍ତେ
ରତିମର୍ଦ୍ଦି ସେ ଅପସରାବାର
ଚାହ କି ତାକୁ ଅପହରିବାର
ତାକୁ କନ୍ଦୁପନ ଭୋଗ କରିବ
ସୁତା ଉପୁଜାଇ ପୁରକୁ ନେବ ।"

(୨ଯ୍ଯ ଗ୍ରନ୍ଥ ୪୭-୪୮ ପଦ)

ରାଜା ବିଶ୍ୱାନନ୍ଦକ କନ୍ଦୁପନ ରତିମର୍ଦ୍ଦି ସହିତ ଅବସ୍ଥାନ କଲାପରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଜନ୍ମ ହେବାରୁ ଅପ୍‌ସରା ଗୁପ୍ତ ହୋଇଗଲା । ରାଜା ଦୁହିତାକୁ ଲାଳନ ପାଳନ ପରେ ଯେତେବେଳେ ବିବାହ ବୟସ ହେଲା ଯେତେବେଳେ ସେ ବର କେଉଁଠି ମିଳିବ ଚିନ୍ତାରେ ପଡ଼ିଲେ । ଏହି ସମୟରେ ନାରଦଙ୍କ ବୀଣା ନାଦ ଶୁଭିଲା ଏବଂ ଶୂନ୍ୟବାଣୀ ହେଲା—

"ଶୁଭିଲା ସ୍ୱନ ଏସନ ତୋ' ନଗରେ ଭ୍ରମିବ କୁରଙ୍ଗେ
ଜାଣ୍ ସେହି ବର ଯେ ତା'ର ଶୃମର ହରିବ ସୁରଙ୍ଗେ ।"

(୨୬ଶ ଗ୍ରନ୍ଥ ୨୫ ପଦ)

ରାଜପୁତ୍ର ମାନଙ୍କୁ ବିଶ୍ୱାନନ୍ଦକ ମୃଗଶୃମର ଛେଦନ ପାଇଁ ଆମନ୍ତ୍ରଣ କଲେ ।

ବିଚିତ୍ର କଳା— ଚମ୍ପାନଗରୀର ରାଣୀ ବିଚିତ୍ର କଳା । ଏହାଙ୍କର ନାମ ଉଲ୍ଲେଖ କରାଯାଇଛି ମାତ୍ର କବି ତାଙ୍କ ସମ୍ବନ୍ଧରେ ନୀରବ । କେବଳ ସେ ସୁନ୍ଦରୀ ଓ ଦୁହିତା ପ୍ରାପ୍ତି ନିମନ୍ତେ ଉତ୍କଣ୍ଠିତା ବୋଲି ବର୍ଣ୍ଣିତ ହୋଇଛି ।

॥ ଶିହେ ଶିତାଂଶୀ ॥

Digitized by PPRACHIN, SOA

ବୁଦ୍ଧିସାଗର – ଚମ୍ପାନଗରର ମନ୍ତ୍ରୀ । ବୁଦ୍ଧିମାନ, ମନ୍ତ୍ରଣା ଦାନରେ ଦକ୍ଷ । ରାଜା ଓ ରାଣୀଙ୍କ କନ୍ୟାପ୍ରାପ୍ତିର ଅଭିଳାଷ ଜାଣିଥାନ୍ତି । ତେଣୁ ସେ ଦିନେ ରାଜାଙ୍କ ସମକ୍ଷରେ କରଯୋଡ଼ି ଜଣାଇଲେ ଯେ ଦାନ, ଧ୍ୟାନ, ଆତିଥ୍ୟ ପ୍ରଭୃତି ହେତୁ ଏ ରାଜ୍ୟ ତ୍ରିବର୍ଗରେ ପରିପୂର୍ଣ୍ଣ, ପୁଣି ତ୍ରିତାପନାଶନ କ୍ଷମ ।

"ଉଦିତ ତନବର୍ଗ ଆତ୍ମ ପୁରେ – ସମର୍ଥ ତିନ ତାପ ନାଶିବାରେ ।"

(୨ୟ ଛାନ୍ଦ ୨୫ ପଦ)

ମୋକ୍ଷ ପ୍ରାପ୍ତି ନିମନ୍ତେ ସାଧୁ ସଂସର୍ଗର ଆବଶ୍ୟକତା ଅଛି ।

"କ୍ଷଣମିହ ସଜ୍ଜନ ସଙ୍ଗତି ରେକା-ଭବତି ଭବାର୍ଣ୍ଣବ ତରଣେ ନୌକା;

(ଆଚାର୍ଯ୍ୟ ଶଙ୍କର)

ବଦରିକା ବନ ସାଧୁମାନଙ୍କର ଶ୍ରେଷ୍ଠ ଅବସ୍ଥା ସ୍ଥଳ । ସେଠାକୁ ଯିବା ମାର୍ଗରେ ପତାନତ ହୋଇନଥିବା ରାଜନ୍ୟବର୍ଗ ମଧ୍ୟ ଅଧୀନସ୍ଥ ହୋଇପାରିବେ । ଏହି ମନ୍ତ୍ରଣାରୁ ଲକ୍ଷ୍ୟ କରାଯାଉଛି ଯେ ମନ୍ତ୍ରୀମାନେ କେବଳ ବିଷୟୀ–ବାଦୀ ନଥିଲେ ସେମାନଙ୍କର ଆଧ୍ୟାତ୍ମିକ ପ୍ରେରଣା ମଧ୍ୟ ପ୍ରବଳ ଥିଲା ।

ଦୀପ୍ତି ସାଗର :— ପୁଷ୍ପପୁରର ରାଜା ଦୀପ୍ତିସାଗର । ତାଙ୍କ ପୁତ୍ର ପୁଷ୍ପକେତୁ । ଦୀପ୍ତି-ସାଗର ବଂଶ ବର୍ଦ୍ଧି ବୟଃକ୍ରମ ସମୟରେ ସେହି ପୁତ୍ରଟି ଲଭ କରିଥିଲେ । ସେହି ପୁତ୍ର ହିଁ କାବ୍ୟର ନାୟକ ।

ଏହିସବୁ ଚରିତ୍ର ବ୍ୟତୀତ କାବ୍ୟରେ ଯେଉଁମାନଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି ସେମାନେ ପୁଷ୍ପକେତୁ ତଥା କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କ ମିଳନ ପାଇଁ ଉଦ୍ଦିଷ୍ଟ । ଅର୍ଥାତ୍ ସେମାନେ ନାୟିକାର ମନ ନାୟକ ପ୍ରତି ଓ ନାୟକର ମନ ନାୟିକା ପ୍ରତି ଆକୃଷ୍ଟ କରିବା ନିମନ୍ତେ ଅଭିପ୍ରେତ ।

ବିଦ୍ୟାନିଧି ଓ ଯଶୋବନ୍ତ— ବିଦ୍ୟାନିଧି ପୁରୋହିତ ସନ୍ତାନ, ଓ ଯଶୋବନ୍ତ ମନ୍ତ୍ରୀଙ୍କର ପୁତ୍ର । ଏମାନେ ପୁଷ୍ପକେତୁର ସାଥୀ ଭାବରେ ଚର୍ଚ୍ଚିତ ।

ମସ୍କରୀ— ଜଣେ ସନ୍ନ୍ୟାସୀ, ନାରଦ ପୁଷ୍ପକେତୁଙ୍କୁ ବରଦାନ କଲା ମାତ୍ରେ ଏହି ସନ୍ନ୍ୟାସୀ ରାଜପୁତ୍ର ସମକ୍ଷରେ ଉପସ୍ଥିତ । ବିଦ୍ୟାନିଧି ଓ ଯଶୋବନ୍ତ ପଚାରିବାରୁ ସେ ଆତ୍ମପରିଚୟ ଦେବାକୁ ଯାଇ କହିଲା –

"କହିଲେ ସେ ପରିବ୍ରାଟ
ମଠ ଗନ୍ଧ-ସର ତଟ



Digitized by PPRACHIN, SOA

ଏ ଖାର ଗୁଣ ପ୍ରକଟ
ହୋଇଲୁ ଭେଟ ଯେ,
ଜାଣ୍ଣୁ ବହୁ ଚମତ୍କାର
ଏଣୁ ସେ ପାଇଁ ଆଦର ।"
(୪ର୍ଥ ଛାନ୍ଦ ୪୭ ପଦ)

ମନ୍ତ୍ରୀ ମନ୍ତ୍ର ବଳରେ ବିମାନରେ ବସାଇ ପୁଷ୍ପକେତୁ ଓ ତା'ର ସାଥୀମାନଙ୍କୁ ନେଇ ମାଙ୍ଗଲାଙ୍କ ଆଶ୍ରମ ବନରେ ପହଞ୍ଚାଇ ଦେଲେ ।

"କଳ୍ପିତ ଅଦ୍ଭୁତ ପୁଂସକଳା ସମ୍ଭୂତ
ମାୟାଭୂତ-ଭବିଷ୍ୟ ଜ୍ଞାତା
ନୃପ ସୁତ ସହିତ ମନ୍ତ୍ରୀକ ପୁରୋହିତ
ସୁତ ବିମାନେ କରି ସ୍ଥିତା ।"
(୧୩ଶ ଛାନ୍ଦ ୧୨ ପଦ)

ବିଦୂଷକ— କବି ଦ୍ୱୟଙ୍କ ଠାରୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପଗୁଣ ବର୍ଣ୍ଣନା ଶୁଣି ରାଜପୁତ୍ର ପୁଷ୍ପକେତୁ ଆଶ୍ଚର୍ଯ୍ୟ ହୋଇଛନ୍ତି ଓ କବିଙ୍କ କଳ୍ପନା ଭାବ ପ୍ରବଣ ବୋଲି ଭାବୁଥିବା ବେଳେ ବିଦୂଷକ ପୋଟାକୁ ଆଣି ପହଞ୍ଚାଇଛୁ ।

ପୋଟା— ଗୋଟିଏ ଅଦ୍ଭୁତ ନାରୀ ଓ ପୁରୁଷ ଲକ୍ଷଣ ଥିବା ଲୋକ । ସେ ଉଜ୍ଜୟିନୀକୁ ବାମନ ଦର୍ଶନ ନିମନ୍ତେ ଯାଇଥିଲା । ସେଠାରେ କାତ୍ୟାୟନୀ ମୁଖରୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପଗୁଣ ବିଷୟରେ ଯାହା ଶୁଣିଥିଲା କହିଲା, ପୁଷ୍ପକେତୁ କବିଙ୍କ କଥାକୁ ବିଶ୍ୱାସ କଲେ ।

କାଦମ୍ବିନୀ, ଶଚୀକଳା-ବଣୀଜା— କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଯୌବନ ପ୍ରାପ୍ତିପରେ ଜଣେ ସୁଖ ଦୁଃଖର ଦୋସର ଆବଶ୍ୟକ କରୁଥିବା ଜାଣି ବ୍ରହ୍ମା ନିଜ ବାହନ ମନ୍ଦକର୍ଣ୍ଣିର କନ୍ୟା କାଦମ୍ବିନୀକୁ ପଠାଇଲେ । ହଂସ ନିଜର କନ୍ୟାକୁ ନେଇ ଆସୁଥିବା ସମୟରେ ଶଚୀ ଓ ଶାରଦାଙ୍କ ସହିତ ଭେଟ ହେଲା । ସେ ଦୁହେଁ ସ୍ୱତଃ ପ୍ରବୃତ୍ତ ହୋଇ ଶଚୀକଳା ଓ ବଣୀଜା ନାମ ଧାରଣ କରି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ନିକଟରେ ରହିବା ପାଇଁ ସେମାନଙ୍କ ସହିତ ଆସିଲେ । ସେମାନେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀକୁ ମାଙ୍ଗଲାଙ୍କ ନିକଟରେ ପହଞ୍ଚାଇ ସ୍ୱାମୀ ନିର୍ବାଚନରେ ସାହାଯ୍ୟ କରିବାକୁ ପୂର୍ବରୁ ନିର୍ଦ୍ଦେଶ ପାଇଥିଲେ— .

॥ ଶିବେ ଅଣନବେ ॥

Digitized by PPRACHIN, SOA

“କାଦମ୍ବିନୀ ଯେ, ଯତନେ କଢ଼ାଇ ନେଉଛୁ
ବିଧିରେ ବିଧିଙ୍କର ଆଜ୍ଞା ଅବଜ୍ଞା ନୋହିବ ଏ ହେତୁ ହୋଇଛୁ ।

ହଂସ ଚମ୍ପାନଗରୀରେ ପହଞ୍ଚିଲା ବେଳକୁ ରାଜା ବିଶ୍ୱାନନ୍ଦକ ଜଳକ୍ରୀଡ଼ା କରୁଥିଲେ । ରାଜା ହଂସକୁ କୁଶଳକ୍ଷେମ ଜିଜ୍ଞାସା କରିବାରୁ ସେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ନିମନ୍ତେ ତିନୋଟି ସଙ୍ଗିନୀ ଆଣିଛୁ ବୋଲି ନିବେଦନ କଲା । ରାଜା କନ୍ୟା ତିନୋଟିଙ୍କୁ ନିଜ ଦୁହିତାକୁ ସମର୍ପଣ କଲେ ।

“ଭୂପତି ତୃପତିଙ୍କ ପାଇ - ସୁତାରେ ସଖୀ ସମର୍ପିଣ,
କୌଶିକୀ ତଟର ବିପିନ - ଦେଲେ ବାଳାକୁ କ୍ରୀଡ଼ାସ୍ଥାନ ।”

(୫ମ ଛାନ୍ଦ ୩୮ ପଦ)

ମାଙ୍ଗଲ୍ୟା ଅବଧୂତା— ମାଙ୍ଗଲ୍ୟା ମଧ୍ୟ ଅଲୌକିକ ଶକ୍ତି ସମ୍ପନ୍ନା । କୌଶିକୀ ନଦୀତୀର ବନ ନିକଟରେ ମାଙ୍ଗଲ୍ୟାଙ୍କ ତପୋଭୂମି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାଦମ୍ବିନୀ ସହିତ ଯାଇ ସେଠାରେ ପହଞ୍ଚିଲା । ମାଙ୍ଗଲ୍ୟାଙ୍କ ଅଲୌକିକ ଶକ୍ତି ବଳରେ ପୁଷ୍ପକେତୁ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କ ଚାକ୍ଷୁଷ ହେଲା । ଏହା ମଧ୍ୟ ବିଧି ନିର୍ଦ୍ଦିଷ୍ଟ । ମାଙ୍ଗଲ୍ୟା ଓ ମସ୍କରୀ (ଚନ୍ଦ୍ରପୁଂସ) ଶୁକଶାରୀ ବେଶରେ ପୁଷ୍ପକେତୁ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ପରସ୍ପର ରୂପଗୁଣ ସ୍ମରଣ କରି ବିରହ ଦଶା ବିଗର କରୁଛନ୍ତି ବୋଲି କହୁଛନ୍ତି । ସେହି ଛାନ୍ଦଟି ଶ୍ଳେଷ ଅଳଙ୍କାର ପ୍ରୟୋଗରେ ବର୍ଣ୍ଣିତ ।

ରାଜକୁମାର ପୁଷ୍ପକେତୁ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀଙ୍କର ବିବାହ ଓ ମିଳନରେ କାବ୍ୟ ସମାପ୍ତ ହୋଇଛି । ଅନ୍ୟ ପୁରାଣ କାହାଣୀପରି ଏହି ବିବାହ ନିମନ୍ତେ ଦେଶ ବିଦେଶରେ ସମ୍ବାଦ ପ୍ରଚାର କରାଯାଇଛି । ବହୁ ଦେଶର ରାଜା ଓ ରାଜକୁମାର ଉପସ୍ଥିତ ହୋଇଛନ୍ତି କିନ୍ତୁ ପୁଷ୍ପକେତୁ କୁରଙ୍ଗଚର୍ମର ଛେଦନ କରିବାରୁ ପାରିଜାତ ମାଳା ଗଳାରେ ଶୋଭା ପାଇଲା । ଫଳରେ ସେ ତାଙ୍କର ବହୁ କାଙ୍କ୍ଷିତ ପ୍ରେମ ପ୍ରତିମାକୁ ବିବାହ କରିବା ସମ୍ଭବ ହେଲା ।

କବି ଏହି କାବ୍ୟକୁ ଅଳଙ୍କାରରେ ବିଭୂଷିତ କରିଛନ୍ତି । ଅଳଙ୍କାର ବିଭୂଷଣ ସମ୍ବନ୍ଧରେ କବି ସ୍ପଷ୍ଟ ଭାଷାରେ କହିଛନ୍ତି—

“ଶିଳ୍ପକାରଠାଏ କହିଲି ତହିଁ
ମହା ମଣ୍ଡପତି କୁମାରୀ ରୁଚି,

॥ ଶହେ ନବେ ॥

Digitized by PPRACHIN, SOA

ନିନ୍ଦା ଅଳଙ୍କାରେ ହେବାର ଶୂନ୍ୟ
ଅଳଙ୍କାରେ ତ ହୋଇଲୁନି ଧନ୍ୟ
ଅଳକାରେ ତୋତେ – ଅଳଙ୍କାର କରି ଲେଖୁ ସମସ୍ତେ ।
ତଥାପି ଭୂଷଣ ନୁହେଁ ଦୂଷଣ
ତୁହି ଚନ୍ଦ୍ରମା ସେ ରଜନୀ ଜାଣ
ପରସ୍ପରେ କରେ ଶୋଭା ଅଧିକା
ସୁକୁମାରୀ ବୋଲି କରନା ଶଙ୍କା ।"

(୧୨ଶ ଛାନ୍ଦ ୫-୬ ପଦ)

ଉଲ୍ଲିଖିତ କାବ୍ୟ ନିଚୟ ସଂଗୀତ ପରିପୂର୍ଣ୍ଣ ହେବା ମୂଳରେ ଯେଉଁ ଯୁକ୍ତି ବିଦ୍ୟମାନ ତାହା ନିର୍ଦ୍ଦେଶ କରି ସେ ଲେଖିଛନ୍ତି—

"ଗନ୍ଧର୍ବ କିନ୍ନର ନାଗ ନରଙ୍କର ସଙ୍ଗୀତ ପରମ ଧନ ।"

(୩୧ଶ ଛାନ୍ଦ-୩୩ ପଦ)

ଶଂହିତ କାବ୍ୟର ଷଡ଼ବିଂଶ ଛାନ୍ଦରେ ଚନ୍ଦ୍ରୋଦୟ ବର୍ଣ୍ଣନା ଓ ଏକତ୍ରିଂଶ ଛାନ୍ଦରେ ନର୍ତ୍ତକୀ ମାନଙ୍କର ଲାସ୍ୟ ବିଳାସର ଯେଉଁ ଚଟୁଳ ଚିତ୍ରଣ ହୋଇଛି ତାହା ତାଙ୍କର ପ୍ରକୃତି ନିରୀକ୍ଷଣ ଓ ଲଳିତ କଳା ଧୁରୀଣତାର ନିଦର୍ଶନ ।



ରାଜେନ୍ଦ୍ରପୁର,
ପୋ. ମନ୍ତ୍ରୁରୀ ରୋଡ଼
ଜି. ବାଲେଶ୍ୱର, ୭୫୬୧୨୧



Digitized by PPRACHIN, SOA

# କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଅଳଂକାର

ଡକ୍‌ଟର ପୂର୍ଣ୍ଣଚନ୍ଦ୍ର ମିଶ୍ର



ରୀତିଯୁଗୀୟ ସାହିତ୍ୟାକାଶରେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ଏକ ଅବିସ୍ମରଣୀୟ ପ୍ରତିଭା । ରୀତିଯୁଗ ଥିଲା ଓଡ଼ିଆ ସାହିତ୍ୟର ଏକ ସୁବର୍ଣ୍ଣ ଯୁଗ । ଏ ଯୁଗର କବିଙ୍କ ଲେଖନୀ ସ୍ପର୍ଶରେ କାବ୍ୟ କବିତା କେବଳ ସଂଖ୍ୟାବହୁଳ ନଥିଲା, ଏଥିରେ ପ୍ରାଣ ପ୍ରାଚୁର୍ଯ୍ୟ ତଥା ଓଡ଼ିଆ ସାହିତ୍ୟର ଗର୍ବ ଓ ଗୌରବର ମୁଦ୍ରାଙ୍କ ମଧ୍ୟ ଥିଲା । ରୀତିଯୁଗର କଳ୍ପନାବିଳାସୀ କବିମାନେ କାବ୍ୟକୁ ନାରୀ ରୂପେ କଳ୍ପନା କରୁଥିଲେ । ତେଣୁ କାବ୍ୟ ନାୟିକାକୁ ବିଭିନ୍ନ ଅଳଂକାର ଦ୍ୱାରା ଭୂଷିତ କରି ସୌନ୍ଦର୍ଯ୍ୟମୟୀ କରୁଥିଲେ । ଏଥିପାଇଁ ସେମାନେ ପ୍ରାଚ୍ୟ ସାହିତ୍ୟ ଦ୍ୱାରା ବିଶେଷ ପ୍ରଭାବିତ ମଧ୍ୟ ହୋଇଥିଲେ ।

ପ୍ରାଚ୍ୟ ସାହିତ୍ୟରେ ବିଶେଷକରି ବ୍ୟାକରଣ ଶାସ୍ତ୍ରରେ 'ଅଳଂକାର' ସମ୍ପର୍କରେ ଅନେକ ସୂଚନା ଦେଖିବାକୁ ମିଳେ । କେତେକ ଅଳଂକାରର ବ୍ୟୁତ୍ପତ୍ତି "ଅଳଂକରୋତୀତି ଅଳଂକାରଃ" ଅର୍ଥାତ୍ ଯାହାଦ୍ୱାରା ଭୂଷଣ କରାଯାଏ ତାକୁ ଅଳଂକାର କହିବା ସମ୍ବନ୍ଧରେ ଅନ୍ୟ କେତେକ "ଅଳଂକ୍ରିୟତେଽନେନେତ୍ୟଲଙ୍କାରଃ" ଅର୍ଥାତ୍ ଯାହାଦ୍ୱାରା ଅଳଂକୃତ ବା ଭୂଷିତ କରାଯାଏ ତାକୁ ଅଳଂକାର କହନ୍ତି । ଦଣ୍ଡୀଙ୍କ ମତରେ କାବ୍ୟର ଶୋଭାବର୍ଦ୍ଧନକାରୀ ଧର୍ମକୁ ଅଳଂକାର କୁହାଯାଏ ।୧। କିନ୍ତୁ ରସବାଦୀ ବିଶ୍ୱନାଥ କବିରାଜଙ୍କ ମତରେ 'ମନୁଷ୍ୟ ଶରୀରର ଶୋଭାବର୍ଦ୍ଧକ ଅଙ୍ଗଦ (କଙ୍କଣ ବା ବାଜୁବନ୍ଧ)ପରି ଶବ୍ଦାର୍ଥ ଶରୀର କାବ୍ୟର ଶବ୍ଦାର୍ଥର ଅତିଶୟ ଶୋଭାବର୍ଦ୍ଧକ ଏବଂ କାବ୍ୟର ଆତ୍ମସ୍ଥାନୀୟ ରସର ଉପକାରକ ଅସ୍ଥିର ଧର୍ମକୁ

---

୧ । "କାବ୍ୟ ଶୋଭା କରାନ୍ ଧର୍ମାନ୍‌ଲଂକାରାନ୍"— କାବ୍ୟାଦର୍ଶ



Digitized by PPRACHIN, SOA

ଅଳଂକାର କୁହାଯାଏ ।' ୨ । ଏହା କାବ୍ୟର ସୌନ୍ଦର୍ଯ୍ୟକୁ ବୃଦ୍ଧି କଲେ ମଧ୍ୟ କାବ୍ୟ ସୌନ୍ଦର୍ଯ୍ୟର କାରଣ ନୁହେଁ । ରସ ଏବଂ ଭାବାଦିର ଉପକାର ସାଧନ କରି ଅଳଙ୍କାର ଗୌରବାନ୍ୱିତ ହୋଇଥାଏ । ତେଣୁ ଅଳଙ୍କାର ହେଉଛି ସୌନ୍ଦର୍ଯ୍ୟ ସାଧନର ଗୋଟିଏ ବଶିଷ୍ଟ ଉପାଦାନ । ଯେପରି ଗୋଟିଏ ନାରୀ ଅଳଂକାର ଦ୍ୱାରା ଭୂଷିତ ନହେଲେ ତାର ସୌନ୍ଦର୍ଯ୍ୟ ହାନି ଘଟେନା ସେହିପରି କାବ୍ୟରେ ଅଳଙ୍କାରର ଅଭାବ ଘଟିଲେ କାବ୍ୟର ସୌନ୍ଦର୍ଯ୍ୟ ହାନି ମଧ୍ୟ ହୁଏନ ।

ଭାରତରେ ଏହି ଆଳଂକାରିକ କାବ୍ୟଶୈଳୀର ଧାରା ବହୁ ପ୍ରାଚୀନ କାଳରୁ ହୋଇଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଖ୍ରୀ ୧୬ଶ ଶତାବ୍ଦୀର ଆଦ୍ୟଭାଗରୁ ଖ୍ରୀ. ୧୯ଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ପ୍ରବାହିତ ହୋଇଥିଲା । ଭାରତରେ ଅଳଂକୃତ କାବ୍ୟଶୈଳୀର ଧାରା ପ୍ରାୟ ଦୁଇହଜାର ବର୍ଷ ପୂର୍ବେ ଥିବାର ସୂଚନା ମିଳେ । ଖ୍ରୀ.ପୂ. ୧୫୦ରେ ଗିର୍ନାରସ୍ଥ ରୁଦ୍ରଦାମନଙ୍କ ଶିଳାଲେଖରେ ପ୍ରଥମେ ଅଳଙ୍କାର ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ । ଏହି ଶିଳାଲେଖରେ ଥିବା 'ସ୍ଫୁଟଲଘୁ ମଧୁର ଚିତ୍ରକାନ୍ତ ଶବ୍ଦ ସମୟୋଦାରାଲଂକୃତ ଗଦ୍ୟ ପଦ୍ୟ × × ×' ଇତ୍ୟାଦିକୁ ଅନୁଧ୍ୟାନ କରି ଡକ୍ଟର ବୁଲ୍‌ହର କହନ୍ତି ଯେ ଏଥିରେ ବ୍ୟବହୃତ 'ଅଳଂକୃତ' ଶବ୍ଦଟି ଭାରତୀୟ ଗଦ୍ୟ ସାହିତ୍ୟର ପ୍ରାଚୀନତମ ସୂଚନା ଆଲୋଚକ-ମାନଙ୍କର ସମ୍ମୁଖରେ ଉପସ୍ଥାପିତ କରେ । ୩ । କାଳକ୍ରମେ ଏହି ଆଳଂକାରିକ ସାହିତ୍ୟର ଧାରା କ୍ରମଶଃ କାଳିଦାସ, ଭାରବି, ବାଣଭଟ୍ଟ ଆଦିଙ୍କ କାବ୍ୟରେ ବିଶେଷ ପରିପୁଷ୍ଟି ଲାଭକଲା ।

କେବଳ ସଂସ୍କୃତ ସାହିତ୍ୟ ନୁହେଁ ହିନ୍ଦୀ ସାହିତ୍ୟରେ ରଚିତ 'କବିତ୍ୱ ରତ୍ନାକର'ର 'ଶ୍ଳେଷତରଙ୍ଗ', ରହିମାନଙ୍କ 'ଯମକ ଶତକ' କେଶବ ଦାସଙ୍କର କାବ୍ୟନିର୍ଣ୍ଣୟରେ'ଗୋମୂତ୍ରିକା','ଅଷ୍ଟଗଢ କମଳ ବନ୍ଧ','ଧନୁଷବନ୍ଧ','ମାଳାବନ୍ଧ',

---

୨ । "ଶବ୍ଦାର୍ଥୟୋରସ୍ଥିରା ଯେ ଧର୍ମାଃ ଶୋଭାତିଶାୟିନଃ
ରସାଦୀନୁପ କୁର୍ବନ୍ତୋଽଲଂକାରାସ୍ତେଽଙ୍ଗଦାଦିବତ୍ ।"
—ସାହିତ୍ୟ ଦର୍ପଣ ( ୧୦/୧ )

୩ । Indian Antiquary, vol.XLII, P. 193
Article— Indian inscriptions and the antiquity of Indian artificial poetry by Dr. Bulher.

॥ ଶବ୍ଦେ ତେସ୍ୟାନବେ ॥

Digitized by PPRACHIN, SOA

'ପଟ୍ଟତବନ୍ଧ', ଆଦ ଚହାଲଙ୍କାର,ତେଲୁଗୁ ସାହିତ୍ୟର ପିଙ୍ଗଲ ସୁରନ୍ନାଙ୍କର'ରାଘବ-ପାଣ୍ଡବୀୟମ୍', 'ରାମରାଜ ଭୂଷଣ'ଙ୍କ 'ହରିଶ୍ଚନ୍ଦ୍ର ନଳୋପାଖ୍ୟାନମ୍', 'କୃଷ୍ଣ-ଦେବରାୟ'ଙ୍କର 'ଅମୁକ୍ତ ମଲ୍ୟଦ','ପ୍ରଭାବତୀ ପ୍ରଦ୍ୟୁମ୍ନମ୍','ଏଲପୁଚବାଲ ସରସ୍ୱତୀଙ୍କ ରାଘବ ଯାଦବପାଣ୍ଡବୀୟମ୍', ଶ୍ରୀ ନାଥଙ୍କର 'ଶୃଙ୍ଗାର ନୈଷଧ', ମାଲୟାଲମ୍ ସାହିତ୍ୟରେ ପ୍ରସିଦ୍ଧ ଆଳଙ୍କାରିକ କାବ୍ୟ 'କୃଷ୍ଣଗାଥା', 'ଭାରତ ଗାଥା' ଆଦିରେ ଅଳଂକାରର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହେଲା । କେବଳ ସେତିକି ନୁହେଁ ଭୌମକର ରାଜତ୍ୱର ଅନେକ ତାମ୍ର ଶାସନରେ 'ଶ୍ଳେଷାଲଙ୍କାର'ର ସୁନ୍ଦର ପ୍ରୟୋଗ ଦେଖିବାକୁ ମିଳିଲା । ୪ । ଏପରିକି ବୌଦ୍ଧ ଭଞ୍ଜରାଜ ବଂଶର ପ୍ରାଚୀନ ତାମ୍ରଶାସନ ମାନଙ୍କରେ ଅନୁପ୍ରାସ ଓ ଶୃଙ୍ଖଳା ଅଳଙ୍କାରର ଦୃଷ୍ଟାନ୍ତ ମଧ୍ୟ ଦେଖିବାକୁ ମିଳିଲା । ୫ ।

କେବଳ ଭାରତୀୟ ସାହିତ୍ୟ ଓ ଅଭିଲେଖ ନୁହେଁ ପାଶ୍ଚାତ୍ୟ ଜଗତର ସ୍ପାନିଶ କବି ଲୁଇଦୁର୍ଗଙ୍ଗୋରାଙ୍କ କାବ୍ୟରେ ଏହି ଆଳଙ୍କାରିକ ରୀତି ମଧ୍ୟ ପରିଦୃଷ୍ଟ ହୋଇଥିଲା ।

ମୋ ଉପରେ ଏହି ଆଳଙ୍କାରିକ ସାହିତ୍ୟ ତାତ୍କାଳୀନ ରାଜରାଜୁଡ଼ାଙ୍କର ପୃଷ୍ଠପୋଷକତା ଲାଭ କରିଥିଲା । ରାଜ ଦରବାରରେ ଆଳଙ୍କାରିକ ଚାତୁର୍ଯ୍ୟପୂର୍ଣ୍ଣ କାବ୍ୟକୁ କବିମାନେ ପରିବେଷଣ କରି ରାଜାମାନଙ୍କୁ ମୁଗ୍ଧ କରିବା ସଙ୍ଗେ ସଙ୍ଗେ ଅନେକ ସମ୍ମାନର ମଧ୍ୟ ଅଧିକାରୀ ହେଉଥିଲେ । ଏହି ପ୍ରଥା ଦ୍ୱାରା ନାଟ୍ୟକାର ତଥା କବି ଅଶ୍ୱଘୋଷ, ମହାକବି କାଳିଦାସ, ଭାରବି, ବାଣଭଟ୍ଟ ଯଥାକ୍ରମେ କୁଷାଣସମ୍ରାଟ କନିଷ୍କ, ଗୁପ୍ତବଂଶୀୟ ରାଜା ଚନ୍ଦ୍ରଗୁପ୍ତ, କାଞ୍ଚିରାଜା ଓ ହର୍ଷବର୍ଦ୍ଧନଙ୍କର ସଭାକବି ବା ସଭାପଣ୍ଡିତର ସମ୍ମାନ ଲାଭ କରିଥିଲେ ।

ଓଡ଼ିଶା ଇତିହାସକୁ ଅନୁଧ୍ୟାନ କଲେ ଜଣାଯାଏ ଯେ 'ଆଳଙ୍କାରିକ ବିଦ୍ୟାଧର' ରାଜା ନରସିଂହ (ଖ୍ରୀ. ୧୪ଶ ଶତାବ୍ଦୀ)ଙ୍କ ପୃଷ୍ଠପୋଷକତାରେ 'ଏକାବଳୀ' ନାମକ ଗୋଟିଏ ଅଳଙ୍କାର ଗ୍ରନ୍ଥ ରଚନା କରିଥିଲେ । ଆଳଙ୍କାରିକ ଏଥିରେ ରାଜାଙ୍କୁ ନିବେଦନ କରିବା ସଙ୍ଗେ ସଙ୍ଗେ ଉଚ୍ଛ୍ୱସିତ ପ୍ରଶଂସା କରି ଉଲ୍ଲେଖ କରିଛନ୍ତି:—

---

୪ । ଓଡ଼ିଆ ସାହିତ୍ୟର ଇତିହାସ— ପଣ୍ଡିତ ବିନାୟକ ମିଶ୍ର (୧୯୨୭) ପୃ. ୧୨୮

୫ । ତତ୍ରୈବ— ପୃ. ୧୨୯

॥ ଶବ୍ଦେ ଗୌରାନବେ ॥

Digitized by PPRACHIN, SOA

"ଏଷ ବିଦ୍ୟାଧରସ୍ତେନ, କାନ୍ତା ସମ୍ମିତ ଲକ୍ଷଣମ୍
କରୋତି ନରସିଂହସ୍ୟ ଚାଟୁ ଶ୍ଳୋକାନୁଦାହରନ୍ ।"

ଓଡ଼ିଶାର ଅନ୍ୟଜଣେ ବରେଣ୍ୟ ଆଲଙ୍କାରିକ, କବି, ପଣ୍ଡିତ ବିଶ୍ୱନାଥ କବିରାଜ ମଧ୍ୟ ରାଜା ଚତୁର୍ଥ ନରସିଂହ ଭାନୁଦେବଙ୍କର ପୃଷ୍ଠପୋଷକତା ଲାଭ କରିବା ସଙ୍ଗେ ସଙ୍ଗେ ସଭାକବି ରୂପେ ବିବେଚିତ ହୋଇଥିଲେ ।

ବରେଣ୍ୟ ପଣ୍ଡିତମାନେ ରାଜାଙ୍କର ପୃଷ୍ଠପୋଷକତା ଲାଭ କରିବା ସଙ୍ଗେ ସଙ୍ଗେ ଆଲଙ୍କାରିକ କାବ୍ୟ ଓ ଅଲଙ୍କାରର ଲକ୍ଷଣ ସଂପର୍କିତ ଗ୍ରନ୍ଥ ରଚନା ନିମନ୍ତେ ପଶ୍ଚାତପଦ ହୋଇନଥିଲେ । ତେଣୁ ରାଜଦରବାରକୁ ସଂସ୍କୃତ କାବ୍ୟ ଚର୍ଚ୍ଚାର ଏକ ପୀଠସ୍ଥଳ ରୂପେ ଗ୍ରହଣ କରାଯାଉଥିଲା । ସଂସ୍କୃତାଭିମାନୀ ପଣ୍ଡିତମାନେ ସଂସ୍କୃତକୁ ଦେବଭାଷା କହିବା ସଙ୍ଗେ ସଙ୍ଗେ ଏହାର ସମକକ୍ଷ ହେବା ଭଳି ଅନ୍ୟ କୌଣସି ଭାଷା ନାହିଁ ବୋଲି ଗର୍ବ ଅନୁଭବ କରୁଥିଲେ । ଫଳରେ ଏହି ଅସ୍ମିତା ବା ଗର୍ବଭାବ ଅନ୍ୟାନ୍ୟ କବିଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରୁଥିଲା । ତେଣୁ କେତେକ କବି ସଂସ୍କୃତ କାବ୍ୟର ସମକକ୍ଷ ହେବା ଭଳି କାବ୍ୟ ସୃଷ୍ଟି କରିବାକୁ ପଶ୍ଚାତ୍‌ପଦ ହୋଇନଥିଲେ । ଏହିଭଳି କବିମାନଙ୍କ ମଧ୍ୟରେ ନେତୃସ୍ଥାନୀୟ ହେଉଛନ୍ତି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ।

ରାଜପରିବାରରେ ଜନ୍ମଲାଭ କରି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ 'ଅସିଚାଳନା କରି ରାଜ୍ୟଜୟ କରିବାକୁ ଆଗ୍ରହୀ ନହୋଇ ନିଜର ଅମୋଘ— ଲେଖନୀ ଚାଳନା ଦ୍ୱାରା ଅସଂଖ୍ୟ ଜନତାର ହୃଦୟକୁ ଜୟ କରିବାକୁ ଚେଷ୍ଟା କରିଥିଲେ । ତେଣୁ ଜନତା ଭଞ୍ଜଙ୍କ କାବ୍ୟର ଅର୍ଥ ବୁଝନ୍ତୁ ବା ନବୁଝନ୍ତୁ ଶୁଣିବାକୁ ଓ ଗାଇବାକୁ ଆଗ୍ରହ ପ୍ରକାଶ କଲେ । ତେଣୁ ଭଞ୍ଜଙ୍କ କାବ୍ୟର ସାର୍ବଜନୀନତାକୁ ଲକ୍ଷ୍ୟକରି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ କହିଛନ୍ତି :—

"ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ
ପଥେ ପାନ୍ଥ ହୃଷ୍ଟମନା,
ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା
ନୃତ୍ୟରଙ୍ଗେ ବାରାଙ୍ଗନା ।"

ଏହି ସାର୍ବଜନୀନ କବି କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଓଡ଼ିଆ ସାହିତ୍ୟର କାବ୍ୟ ସାମ୍ରାଜ୍ୟକୁ ସଂସ୍କୃତ କାବ୍ୟ ସାମ୍ରାଜ୍ୟର ସମକକ୍ଷ କରିବା ନିମନ୍ତେ ଆପ୍ରାଣ



Digitized by PPRACHIN, SOA

ଉଦ୍ୟମ କରିଥିଲେ । ଫଳରେ ତାଙ୍କ କାବ୍ୟରେ ସଂସ୍କୃତ କାବ୍ୟର ସମସ୍ତ ବିଭବ ପରିଲକ୍ଷିତ ହେଲା । କବିସମ୍ରାଟ ସଂସ୍କୃତ ସାହିତ୍ୟରେ ବ୍ୟବହୃତ ବିଭିନ୍ନ ଅଳଂକାରକୁ ନିଜ କାବ୍ୟରେ ମଧ୍ୟ କୃତିତ୍ୱର ସହ ପ୍ରୟୋଗ କଲେ । ଏପରିକି ନିଜ କାବ୍ୟ ନାୟିକାକୁ ବିଭିନ୍ନ ଅଳଙ୍କାର ଦ୍ୱାରା ଭାରାକ୍ରାନ୍ତ କରିବା ନିମନ୍ତେ କବିସମ୍ରାଟ ପଶ୍ଚାତପଦ ନହୋଇ ମୁକ୍ତ କଣ୍ଠରେ ସ୍ୱୀକାର କରି ଗାଇଛନ୍ତି । ୬ । :—

"ଆଶ୍ଳେଷ ଶ୍ଳେଷ ସ୍ୱରୂପ ନିର୍ମଳ ବ୍ୟାପିତ ।
ଚୁମ୍ବନ ଯମକ ଅଂଶ ଅଂଶସ୍ଥ ଉଦିତ ଯେ ।।
ଦିବ୍ୟବର୍ଣ୍ଣ ଦର୍ଶନ ପ୍ରସ୍ତାର ହୋଇଗଲା ।
ଲକ୍ଷଣ ସହିତ ହୋଇ ଅଳଙ୍କାର ମେଳା ଯେ ।।
ନାନା ବନ୍ଧ ବିଖ୍ୟାତ ଶୃଙ୍ଖଳାଧ୍ୱନି ଯେନ ।
ବକ୍ରୋକ୍ତି ଜନ୍ମିବ ମେଳ ହୋଇଲେ ସଜନି ଯେ ।।
ଛଳବ୍ୟକତ ତହିଁରେ ମଦନ ଜୟରେ ।
ବିରୋଧା ପ୍ରକାଶିବାଲା ଚୁମ୍ବନ ଦେବାରେ ଯେ ।।
ପୁନରୁକ୍ତି ପଦାଭାସ ଆଶ୍ୱାସ ବଚନ ।
ରସ ପଣ୍ଡିତରେ ଯାହା ହୁଅଇ ରଚନ ଯେ ।।" ୭ ।

---

୬ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ— କବିସମ୍ରାଟ ଉପେନ୍ଦ୍ର ଭଞ୍ଜ
(ଓଡ଼ିଶା ଜଗନ୍ନାଥ କମ୍ପାନୀ, ୧୯୭୧)

କ) "ଅଳଙ୍କାର ଅଳଙ୍କାର ଦୁଇ ପ୍ରକାର ସେ" (୪/୩୩)

ଖ) "ଉତ୍ପ୍ରେକ୍ଷା ଉପମା ରୂପକ ତିନି ।
ବକ୍ରୋକ୍ତି ଶ୍ଳେଷ ଅଭିପ୍ରାୟ ଯେନି ।
ଦତ୍ତଚ୍ୟୁତାକ୍ଷର ଉଦୟ କାହିଁ ।
ବୃହତ୍ ସଂଖ୍ୟାବାନ ଆୟୁତ ନାହିଁ । (୧୨/୨)

ଗ) "ଏ ଗ୍ଳହନେ । ଧ୍ୱନିକାକୁ- ଉକ୍ତି ରୂପକ !
ଶ୍ଳେଷ ଲୁପ୍ତବର୍ଣ୍ଣ ଚ୍ୟୁତ ଦତ୍ତାକ୍ଷର ଅନ୍ତର୍ଲାପିକା ଆଦିତର୍କ ।" (୧୩/୩୦)

ଘ) "ଆଶ୍ଳେଷ ଧ୍ୱନି ଶ୍ଳେଷ ନିଳ ବିରୋଧ ରୂପକ ଉତ୍ସାହ ।" (୧୬/୬୭)

ଙ) "ସଭଙ୍ଗ । ଅଭଙ୍ଗ ରୂପକକୁ ଧ୍ୟାୟି ।" (୧୮/୪)

୭ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ— ୩୪/୪୫,୪୬



Digitized by PPRACHIN, SOA

ଏଭଳି ଉଲ୍ଲେଖ କରିଥିଲେ ମଧ୍ୟ କବି ନିଜେ କାବ୍ୟରେ ଅଳଙ୍କାର ପ୍ରୟୋଗ କରିବା ସମୟରେ ଅତ୍ୟନ୍ତ ସଚେତନ ଥିଲେ । ତେଣୁ ସେ କହିଛନ୍ତି :—

"ରୂପକ ଯମକ ବ୍ୟାପକବଳେ ।
କବି କବିତ୍ୱରେ ରକ୍ଷା ପାଇଲେ ।।
ଯେବେ କବି କଳ୍ପ କଳ୍ପନା ଥିବ ।
ଉପମାଲୁ ଉପଯୋଗ ହୋଇବ ।।" ୮ ।

କେବଳ ସେତିକି ନୁହେଁ କବିସମ୍ରାଟ ଅଳଂକାର ବିଭୂଷିତା ନିଜର କାବ୍ୟନାୟିକାର ଅର୍ଚ୍ଚନା ପାଇଁ ଅଳଙ୍କାର ପ୍ରିୟ ସେବକମାନଙ୍କୁ ଆହ୍ୱାନ ଦେଇ କହିଛନ୍ତି:—

"ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ
ଯେହୁ ଜାଣେ ଅଳଙ୍କାର ଲକ୍ଷଣ
ସେହି କରୁ ଏ ଗ୍ରନ୍ଥ ବିବେଚନ ।" ୯ ।

ଗୁଣଗ୍ରାହକ ରସିକ ବିଦ୍ୱାନ କବି ଯେ କି ଅଳଙ୍କାରର ବିଭିନ୍ନ ଲକ୍ଷଣ ତଥା ବିଶ୍ଳେଷଣ କରିପାରୁଥିବେ ସେଭଳି ପଣ୍ଡିତମାନଙ୍କୁ କବି ଆହ୍ୱାନ କରିଛନ୍ତି । ପରୋକ୍ଷରେ ଓଡ଼ିଆ କାବ୍ୟ ସଂସ୍କୃତ କାବ୍ୟର ସମକକ୍ଷ ହୋଇପାରୁଛି କି ନାହିଁ ତାହା ବିବେଚନା କରିବା ନିମନ୍ତେ ସଂସ୍କୃତ ଅଳଙ୍କାରବିତ୍ ପଣ୍ଡିତମାନଙ୍କୁ ଆହ୍ୱାନ କରିଛନ୍ତି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ବିଭିନ୍ନ ଅଳଙ୍କାରର ପ୍ରୟୋଗ ଦେଖିବାକୁ ମିଳେ । ଏହି ଅଳଙ୍କାର ଗୁଡ଼ିକୁ ମୁଖ୍ୟତଃ ତିନି ଭାଗରେ ବିଭକ୍ତ କରାଯାଏ । ତନ୍ମଧ୍ୟରୁ ଗୋଟିଏ ଶବ୍ଦାଳଙ୍କାର, ଦ୍ୱିତୀୟଟି ଅର୍ଥାଳଙ୍କାର ଓ ତୃତୀୟଟି ଉଭୟାଳଙ୍କାର । ୧୦ । ଶବ୍ଦାଳଙ୍କାର ଧ୍ୱନିର ଆଶ୍ରୟରେ ସୃଷ୍ଟି ହେବାବେଳେ ଅର୍ଥାଳଙ୍କାର ଅର୍ଥର ଆଶ୍ରୟରେ ସୃଷ୍ଟି ହୁଏ । କିନ୍ତୁ ଧ୍ୱନି ସହ ଅର୍ଥର ଆଶ୍ରୟ ହେଲେ ଉଭୟାଳଙ୍କାର ହୁଏ । ଶବ୍ଦାଳଙ୍କାର ଦ୍ୱାରା କାବ୍ୟର ସଙ୍ଗୀତ ଧର୍ମ ପରି ପ୍ରକାଶ ହେବାବେଳେ ଅର୍ଥାଳଙ୍କାର ଦ୍ୱାରା କାବ୍ୟର ଚିତ୍ର ଧର୍ମ ଆତ୍ମପ୍ରକାଶ କରେ । ଶବ୍ଦାଳଙ୍କାର ଶବ୍ଦ ପ୍ରଧାନ ବା ଶବ୍ଦ ସର୍ବସ୍ୱ ହେବାବେଳେ ଅର୍ଥାଳଙ୍କାର ଅର୍ଥର

---

୮ । ତତ୍ରୈବ— ୮/୧୭

୯ । ତତ୍ରୈବ— ୩/୧

୧୦ ସାହିତ୍ୟ ଦର୍ପଣ— ୧୨/

।। ଶିବେ ଶିତାନବେ ।।

Digitized by PPRACHIN, SOA

ଶୋଭା ସଂପାଦନ କରେ । ଅର୍ଥର ଗୁରୁତା ଦ୍ୱାରା କାବ୍ୟର ରମଣୀୟତା ମଧ୍ଯ ପ୍ରତିପାଦିତ ହୁଏ । ତେଣୁ କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ଉଭୟ ପ୍ରକାର ଅଲଂକାରର ପ୍ରୟୋଗ ଦେଖାଯାଏ ।

କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।୧୧। କାବ୍ୟକୁ ଅନୁଧ୍ୟାନ କଲେ ତନ୍ମଧ୍ୟରେ ଅନୁପ୍ରାସ (୩/୨), ଆଦ୍ୟଯମକ (୨/୮), ମଧ୍ୟବ୍ୟପେତ ଯମକ (୨୮/୧୦), ଆଦ୍ୟପ୍ରାନ୍ତ ଯମକ (୧/୫୬,୫୭), ସର୍ବ ଯମକ (୨୮/୫), ଯୋଡ଼ି ଯମକ (୨୮/୬), ସାର ଯମକ(୨୮/୭,୧୭/୧୦),ଦ୍ୱିରୁକ୍ତ ଯମକ (୩୦/୧୨), ଦତ୍ତ ଚ୍ୟୁତାକ୍ଷର(୨୩/୧୭), ଚ୍ୟୁତାକ୍ଷର(୨୫/୧), ଉପମା(୭/୬), ରୂପକ (୧୨/୮), ଶ୍ଳେଷ (୩/୧୫-୧୬), ପ୍ରତାପ (୪/୨୫), ବିରୋଧାଭାସ (୩୪/୫୦), ବ୍ୟତିରେକ (୨/୭୨), ଅସମ୍ଭବ (୧୭/୩୦), ଅନ୍ୟୋନ୍ୟ (୧୦/୬), ଅର୍ଥମୂଳକ ବକ୍ରୋକ୍ତି (୧୦/୧୩), ଶ୍ଳେଷମୂଳକ ବକ୍ରୋକ୍ତି (୨/୨), ଉଲ୍ଲେଖ (୪/୨୯-୩୨), କାବ୍ୟଲିଙ୍ଗ (୧/୧୧), ଅର୍ଥାପତ୍ତି (୧/୧୪,୨/୯), ରତ୍ନାବଳୀ (୧୬/୧୮), ଉଦାତ୍ତ (୨/୪-୮), ବିଶେଷ (୪/୯), ଉତ୍ପ୍ରେକ୍ଷା (୧୪/୨୮) ଆଦି ଅଲଂକାରର ପ୍ରୟୋଗ ଦେଖିବାକୁ ମିଳେ ।

କେବଳ ସେତିକି ନୁହେଁ କବିସମ୍ରାଟ ଗୋଟିଏ ଗୋଟିଏ ଛାନ୍ଦକୁ ମଧ୍ଯ ଗୋଟିଏ ଅଲଙ୍କାର ଦ୍ୱାରା ରଚନା କରିଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ଷଷ୍ଠ ଓ ଏକାଦଶ ଛାନ୍ଦ ଅନ୍ତ୍ୟାନୁପ୍ରାସ ଚତୁର୍ଦ୍ଦଶ ଛାନ୍ଦ ଉତ୍ପ୍ରେକ୍ଷାଲଂକାର, ସପ୍ତଦଶ ଛାନ୍ଦ ସାରଯମକାଲଂକାର ବିଂଶ ଛାନ୍ଦ ଶ୍ଳେଷାଲଂକାର, ପଞ୍ଚବିଂଶ ଛାନ୍ଦ ଚ୍ୟୁତାକ୍ଷରାଲଂକାର ଓ ଦ୍ୱାତ୍ରିଂଶ ଛାନ୍ଦ ଆଦ୍ୟାନୁପ୍ରାସରେ ରଚିତ ହୋଇଛି ।

ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ଅଲଂକାର ପ୍ରୟୋଗର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଏକାଧିକ ଅଲଂକାରର ଏକତ୍ର ସମାବେଶ । ଏଭଳି ଏକାଧିକ ଅଲଙ୍କାରର ସମାବେଶ ନୈଷଧ କାବ୍ୟରେ ମଧ୍ଯ ଦେଖିବାକୁ ମିଳେ । ତେଣୁ କବି ଯଥାର୍ଥରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ମୁକ୍ତ କଣ୍ଠରେ ଘୋଷଣା କରିଛନ୍ତି :—

"ଯେମନ ନୈଷଧ ପରାୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରାଏ ।" ୧୨ ।

---

୧୧ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ— ଓଡ଼ିଶା ଜଗନ୍ନାଥ କମ୍ପାନୀ, କଟକ, (୧୯୭୧)
୧୨ । ତତ୍ରୈବ— ୧୧/୩୧

॥ ଶବ୍ଦେ ଅଠାନବେ ॥

Digitized by PPRACHIN, SOA

ଏଭଳି ମୁକ୍ତ କଣ୍ଠରେ ସ୍ୱୀକାର କରିବା ସଙ୍ଗେ ସଙ୍ଗେ କବିସମ୍ରାଟ ନୈଷଧର ପ୍ରଭାବକୁ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ପ୍ରତିଫଳିତ କରାଇବାକୁ ପଶ୍ଚାତପଦ ହୋଇ ନାହାନ୍ତି । ନୈଷଧ ଭଳି ଏକାଧିକ ଅଳଂକାରର ଏକତ୍ର ସମାବେଶ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଦେଖିବାକୁ ମିଳେ । କବିସମ୍ରାଟ ଏହି କାବ୍ୟରେ ଏକତ୍ର ପ୍ରତାପ, ଶ୍ଳେଷ ଓ ଅତିଶୟୋକ୍ତି (୩/୩୨-୩୩), ଉତ୍ପ୍ରେକ୍ଷା ଓ ଅନୁପ୍ରାସ (୭/୯), ରୂପକ ଓ ଅପହ୍ନୁତି (୭/୨୦), ରୂପକ ଓ ଅତିଶୟୋକ୍ତି (୭/୨୧),ରୂପକ, ଅତିଶୟୋକ୍ତି ଓ ଉତ୍ପ୍ରେକ୍ଷା (୭/୨୨) ଆଦି ଅଳଙ୍କାରର ପ୍ରୟୋଗ କରିଛନ୍ତି ।

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟନାୟିକା ଏକ ଅଳଙ୍କାର ଓ ଏକାଧିକ ଅଳଂକାର ଦ୍ୱାରା ଆକ୍ରାନ୍ତ ହୋଇଛି । ପ୍ରାଚୀନ ଓଡ଼ିଆଣୀମାନେ ଗୋଡ଼ରେ, ନାକରେ, କାନରେ, ହାତରେ ଏକତ୍ର ଏକାଧିକ ଅଳଂକାର ପିନ୍ଧିବା ଭଳି କବିସମ୍ରାଟ ନିଜ କାବ୍ୟ-ନାୟିକାର ଅଙ୍ଗବିଶେଷରେ ଏକତ୍ର ଏକାଧିକ ଅଳଂକାର ଦ୍ୱାରା ବିଭୂଷିତା କରାଇଛନ୍ତି । ଏହି ଅଳଂକାର କାବ୍ୟନାୟିକାର ସୌନ୍ଦର୍ଯ୍ୟ ବିଧାୟକ, ସୌନ୍ଦର୍ଯ୍ୟ ଉନ୍ମୀଳକ, ସୌନ୍ଦର୍ଯ୍ୟ ବିକାଶକ, ସୌନ୍ଦର୍ଯ୍ୟ ବିସ୍ତାରକ ତଥା ସୌନ୍ଦର୍ଯ୍ୟ ପ୍ରତିପାଦକ ହେଲେମଧ୍ୟ କାବ୍ୟର ଏକ ଅପରିହାର୍ଯ୍ୟ ବିଭବ ନୁହେଁ । କାରଣ ଅଳଂକାର ବିନା ମଧ୍ୟ କାବ୍ୟ ଅତ୍ୟନ୍ତ ରମଣୀୟ ତଥା ରୁଚିକର ହୋଇପାରେ । ଅଳଂକାର ନଥାଇ ମଧ୍ୟ ନାରୀ ସୌନ୍ଦର୍ଯ୍ୟମୟୀ ହୋଇପାରେ । ତେଣୁ ସଂସ୍କୃତ ସାହିତ୍ୟରେ ମଧ୍ୟ ଅଳଂକାର ବିହୀନ ଅନେକ ଉଚ୍ଚକୋଟିର କାବ୍ୟ ଦେଖିବାକୁ ମିଳେ ଯାହା ଅତ୍ୟନ୍ତ ରମଣୀୟ ତଥା ରୁଚିକର । ସଂସ୍କୃତରେ ଅଛି :—

"ହାରୋ ନାରୋପିତ କଣ୍ଠେ ମୟା ବିଶ୍ଳେଷଭୀରୁଣା ।
ଇଦାନୀମାବୟୋର୍ମଧ୍ୟେ ସରିତ୍ ସାଗର ଭୂଧରାଃ ।।" ୧୩ ।

ଗୋଟିଏ ବିରହ ବିଦଗ୍ଧ ନାୟକ ଅତୀତ ସମ୍ଭୋଗର ସ୍ମୃତିକୁ ମନେପକାଇ ତାର ନାୟିକାକୁ କହୁଛି,'ପ୍ରିୟେ ! ଆଲିଙ୍ଗନ ସମୟରେ ଅନ୍ତରାୟ ହେବା ଆଶଙ୍କାରେ ମୁଁ ତୁମ କଣ୍ଠର ହାରକୁ ଆରୋପିତ କରୁନଥିଲି କାରଣ ସାମାନ୍ୟ ହାରର ବ୍ୟବଧାନ

---

୧୩ । ଅଳଂକାର ତତ୍ତ୍ୱ— ବାସୁଦେବ ସାହୁ (କଟକ, ୧୯୭୨) ପୃ. ୧୪



Digitized by PPRACHIN, SOA

ମୋ ପାଇଁ ଅତ୍ୟନ୍ତ ଦୁର୍ବିଷହ ଥିଲା, କିନ୍ତୁ ଆଜି ଆମ ଦୁହିଁଙ୍କ ମଧ୍ୟରେ କେତେ ପର୍ବତ, ସାଗର ଓ ଭୂ ଧରର ବ୍ୟବଧାନ । ଏଥିରେ ନାୟକର ବ୍ୟାଆବିଧିର ପ୍ରାଣର ବିନମ୍ର ନିବେଦନ ପ୍ରତିପାଦିତ ହୋଇଥିଲେ ମଧ୍ୟ ଅଲଙ୍କାର ଶୂନ୍ୟତା ଏହାର ଚମତ୍କାରିତାକୁ ନଷ୍ଟ କରିପାରୁନି । ତେଣୁ ଅଲଙ୍କାର ପ୍ରୟୋଗ ଦ୍ୱାରା କାବ୍ୟର ଉତ୍କର୍ଷତା ପ୍ରତିପାଦନ କଲେ ମଧ୍ୟ ଅଲଂକାର ଶୂନ୍ୟତା କାବ୍ୟର ଦରିଦ୍ରତା ପ୍ରମାଣ କରେନି ।



ସ୍ନାତକୋତ୍ତର ଓଡ଼ିଆ ବିଭାଗ,
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ,
ବ୍ରହ୍ମପୁର - ୭୬୦୦୦୭ ।



Digitized by PPRACHIN, SOA

# "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟରେ ପ୍ରକୃତିଚିତ୍ର

ଡକ୍ଟର ସରୋଜ କୁମାର ସୁଆର

ମନୁଷ୍ୟ ପ୍ରକୃତିଠାରେ ଆଶ୍ରିତ । ପ୍ରାକୃତିକ ସହାୟତା ବ୍ୟତୀତ ତାର ଜୀବନ-ଯାତ୍ରା ଅଚଳ ହୋଇପଡ଼େ । ପ୍ରକୃତିର ପଞ୍ଚଭୂତରେ ହିଁ ମନୁଷ୍ୟ ଶରୀର ଦିନେ ବିଲୀନ ହୋଇଯାଏ । ମାତ୍ର ଆମର ଶରୀର ବ୍ୟତୀତ ଭାବଜଗତରେ ନିର୍ମାଣ ପାଇଁ ମଧ୍ୟ ପ୍ରକୃତିର ଏକ ବିଶେଷ ଭୂମିକା ରହିଛି । ଏହି ପ୍ରକୃତି ତତ୍ତ୍ୱର ପୃଷ୍ଠଭୂମି ଉପରେ କବିର ଅନୁଭୂତି ହୁଏ କଳାତ୍ମକ । ପ୍ରକୃତି ହିଁ କବିର ଚିର ଉପାସ୍ୟ ସତ୍ୟ ଓ ସୌନ୍ଦର୍ଯ୍ୟର ଆଧାର ତଥା କଳ୍ପନା ଓ ଚିନ୍ତନର ମୂଳଉତ୍ସ । ତେଣୁ କବିର ଭାବ-ଜଗତକୁ ପ୍ରକୃତି କରେ ସଜୀବ ଓ ଚଳଚଞ୍ଚଳ । କବିର ସେହି କବିତା ମାଧ୍ୟମରେ ଦୃଶ୍ୟମାନ ଜଗତ ସହିତ ଆମର ରାଗାତ୍ମକ ସମ୍ବନ୍ଧ ସ୍ଥାପିତ ହୁଏ । କବିତା ହିଁ ପ୍ରକୃତି ଓ ଆମର ମଧ୍ୟରେ ରହିଥିବା ସ୍ନେହର ପୃଷ୍ଠଭୂମି । ମାନବର ଅନ୍ତରଙ୍ଗ ଅନୁଭୂତି ପ୍ରକୃତିର ସାନ୍ନିଧ୍ୟ ଲାଭ କରି ଉଦ୍‌ବୋଧିତ ହୁଏ । ତେଣୁ ପ୍ରକୃତିର ରୂପ-ସୌନ୍ଦର୍ଯ୍ୟ ମାନବର ଭାବାଲୋକ ମାଧ୍ୟମରେ କାବ୍ୟ, ସଙ୍ଗୀତ, ଚିତ୍ରକଳା ଆଦି ବିଭିନ୍ନ ଲଳିତ-କଳା ଦ୍ୱାରା ପ୍ରତିଫଳିତ ହୁଏ ।

ଆମର ସର୍ବପ୍ରାଚୀନ ସାହିତ୍ୟ ଋଗ୍‌ବେଦ ବିଭିନ୍ନ ପ୍ରକୃତି ତତ୍ତ୍ୱ (ଉଷା, ସବିତା, ଚନ୍ଦ୍ର, ବରୁଣ, ମରୁତ ଆଦି) ମାନଙ୍କୁ ଆଧାର କରି ରଚିତ ହୋଇଥିଲା । ଆଦିମ ମାନବ ପ୍ରକୃତିର କୋମଳ ଏବଂ କର୍କଶ, କମନୀୟ ଏବଂ କରାଳ, ଶାନ୍ତ ଏବଂ ରୁଦ୍ର ରୂପରେ ଉଲ୍ଲସିତ ଓ ଆତଙ୍କିତ ହୋଇ ହୁଏତ କାବ୍ୟୋନ୍ମୁଖ ହୋଇଥିଲା । ମାତ୍ର ଯେଉଁ ପ୍ରକୃତି ବୈଦିକ ମୁନି ଋଷିଙ୍କ ଦୃଷ୍ଟିରେ ଥିଲା ଭୟ ଓ ବିସ୍ମୟର କାରଣ ତାହା ପରବର୍ତ୍ତୀ ପୁରାଣ ତଥା କାବ୍ୟ-ନାଟକ ଯୁଗରେ ରୂପ ଓ ପ୍ରଣୟର ଆଧାର ହୋଇଉଠିଲା । ପ୍ରକୃତିର ସମନ୍ୱୟରେ କବିର କବିତା ହୋଇଉଠିଲା, ମାର୍ମିକ, ଆନନ୍ଦ ପ୍ରଦ ଓ ସୁଖକର । ଆମର ସଂସ୍କୃତ କାବ୍ୟ-ନାଟକ ଯୁଗରେ ଉତ୍ତୀର୍ଣ୍ଣ ପ୍ରାକୃତିକ ଶୋଭାର କଳାତ୍ମକ ବିଭବ ଓଡ଼ିଆ ରୀତି ଯୁଗୀୟ ସାହିତ୍ୟରେ



Digitized by PPRACHIN, SOA

ହୋଇଛୁ କରୁଥା ଅନୁରଞ୍ଜିତ । ଅବଶ୍ୟ ପ୍ରକୃତ ନିରୀକ୍ଷଣ ପାଇଁ ପ୍ରତ୍ୟେକ କଳାକାରଙ୍କ ନିଜସ୍ୱ ଦୃଷ୍ଟିକୋଣ ରହିଛୁ, ଯାହା ତାଙ୍କର ସଂବେଦନାତ୍ମକ ଅନୁଭୂତି ତଥା କଳ୍ପନାତ୍ମକ ମାନସିକ ସ୍ଥିତି ଉପରେ ଆଧାରିତ ।

ଏହି ପରିପ୍ରେକ୍ଷୀରେ ଓଡ଼ିଆ ରୀତି ସାହିତ୍ୟର ସର୍ବଶ୍ରେଷ୍ଠ କୃତିକାର କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରୁ ଋତୁଚନ୍ଦ୍ରର ବିଚାର କରାଯାଇପାରେ । ତାଙ୍କ ରଚନା ଭିତରେ ପ୍ରକୃତିର ପରିସର ହୁଏତ ବ୍ୟାପକ, ମାତ୍ର ଅନେକତ୍ର ସେହି ପ୍ରକୃତି ଷଡ଼ଋତୁ, ଉପବନ, କେଳିସରୋବର, ପ୍ରଭାତ,ସନ୍ଧ୍ୟା, ଚନ୍ଦ୍ରରଜନୀ' ଶୀତଳସମୀର ପ୍ରଭୃତିର ଅବତାରଣାରେ ନିଜର ଯୁକ୍ତିକୁ ସୀମିତ କରିଦେଇଛୁ । ପ୍ରକୃତ ତାଙ୍କର ବିରାଟ କାବ୍ୟ-ସଂସାର ଭିତରେ ଦଳିବ କମ୍ପା ବ୍ୟକ୍ତିତ୍ୱମୟୀ ହୋଇପାରିନାହିଁ । ଭଞ୍ଜ ପ୍ରକୃତ ମୁଖ୍ୟତଃ ନାୟକ-ନାୟିକାଙ୍କ ହୃଦୟଗତ ଭାବର ଉଦ୍ଦୀପକ ଓ ସହାୟକ ତଥା ସେମାନଙ୍କ ସ୍ୱଭାବ ଅନୁକୂଳ । ଯାହାଫଳରେ ସେମାନଙ୍କ ବିରହ ଓ ମିଳନର ଚିତ୍ରକୁ କରିଛୁ ରସାଣିତ । ସ୍ଥାନେ ସ୍ଥାନେ ପ୍ରକୃତ କାବ୍ୟରସର ଅଙ୍ଗ ହୋଇଉଠିଛୁ । ମାତ୍ର ଭଞ୍ଜଙ୍କ ପ୍ରକୃତ ଚିତ୍ରନ ନିତାନ୍ତ ସ୍ୱାଭାବିକ ଓ ଯଥାର୍ଥ । ପୁନଶ୍ଚ କବିତ୍ୱ ଭଙ୍ଗୀରେ ବର୍ଣ୍ଣିତ ପ୍ରକୃତିର ବର୍ଣ୍ଣାଢ୍ୟ ରୂପଶୋଭା ସ୍ଥାନ ବିଶେଷରେ ଯେଭଳି ମନୋଜ୍ଞ ସେଭଳି ମାର୍ମିକ ମଧ୍ୟ । ସେଥିପାଇଁ ସାଧାରଣ ପ୍ରସଙ୍ଗ ମାନ ସୁଦ୍ଧା ଭାବଗର୍ଭକ ହୋଇପଡ଼ିଛୁ ।

'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟର ଷଷ୍ଠ ଛାନ୍ଦରେ କବିସମ୍ରାଟ ବସନ୍ତଋତୁର ଆବିର୍ଭାବ କରାଇଛନ୍ତି । ଏ ବର୍ଣ୍ଣନା ଭିତରେ ବହିର୍ପ୍ରକୃତି ସହିତ ଅନ୍ତର୍ପ୍ରକୃତିର ସରସ ସମନ୍ୱୟ ପରିଲକ୍ଷିତ ହୁଏ । କାମୋଦ୍ଦୀପକ ବସନ୍ତ ମିତ୍ର କନ୍ଦର୍ପକୁ ଶୃଙ୍ଗାରାତ୍ମକ ଭାବରାଜିରେ ପ୍ରବଳ କରାଇ ଚର୍ଚ୍ଚରୀ ଉତ୍ସବ ଆରମ୍ଭ କରିଛୁ । ପୁନଶ୍ଚ ନାଗେଶ୍ୱର ଫୁଲରୂପେ ନିଜର ତନୁକୁ ପ୍ରକାଶ କରି ନାଗେଶ୍ୱର (ହସ୍ତୀଶ୍ରେଷ୍ଠ) ଉପରେ ବିଜୟ ଯାତ୍ରା ଆରମ୍ଭ କରିଛୁ । ହସ୍ତୀ ଉପରେ ଆରୋହଣ ମଧ୍ୟ ଋତୁ ସମ୍ରାଟ ହେବାର ଲକ୍ଷଣ । ନାଗେଶ୍ୱର ଫୁଲର ପରାଗ ହୋଇଛୁ, ତାର ଫଗୁ ଲୀଳାର ସମ୍ଭାର । କବିଙ୍କ ବର୍ଣ୍ଣନାଟି ଲକ୍ଷଣୀୟ—

ଅତି ରସମୟ ବସନ୍ତ ସମୟ ବିଚିତ୍ର ପ୍ରମେୟ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଆଚରି ଚର୍ଚ୍ଚରୀ–ବ୍ୟବହାର
ଆଗତେ, ଆରୋହିଲେ ନାଗେଶ୍ୱରକୁ
ଋତୁରାଜ ପଦୁଁ ଯେ ରଜ ଘେନିଲି ଗ୍ରହିଁ ପ୍ରଫୁଲ୍ଲ କେଶରକୁ ।

॥ ଦୁଇଶହ ଦୁଇ ॥

Digitized by PPRACHIN, SOA

ପ୍ରକୃତିର ମଞ୍ଜୁଳ ବର୍ଣ୍ଣନା ଅପେକ୍ଷା ଏଭଳି ଚମତ୍କାର ଶବ୍ଦ ସଂଯୋଜନା ଓ କଳ୍ପନା ବିଳାସ ବିସ୍ତାରିତ୍ୱ ଭଲି ପାଠକଙ୍କ ଅତିପ୍ରିୟ ହୋଇଉଠିଛି । ପ୍ରକୃତିର ସ୍ୱାଭାବିକ, ସୁନ୍ଦର ଶୋଭା ମଧ୍ୟ ତାଙ୍କ ଲେଖନୀରେ କିଭଳି ମାନବୀୟ ଓ ମନୋଜ୍ଞ ତାହା ଲକ୍ଷ୍ୟ କରାଯାଇପାରେ ।

ଆଲୋଚ୍ୟ କାବ୍ୟର ଅଷ୍ଟାଦଶ ଛାନ୍ଦରେ ଗ୍ରୀଷ୍ମଋତୁର ମଞ୍ଜୁଳ ବର୍ଣ୍ଣନା ଅନୁପ୍ରାସମୟ ହୋଇ ଅଧିକ ଶ୍ରୁତିରଞ୍ଜକ ହୋଇଛି । ସାଧାରଣ ଓ ସ୍ୱାଭାବିକ ଦୃଶ୍ୟ ମଧ୍ୟ କବିସମ୍ରାଟଙ୍କ ଲେଖନୀରେ କାବ୍ୟିକ ତଥା ମାର୍ମିକ ହୋଇଯାଇଛି । ଗ୍ରୀଷ୍ମ କାଳରେ ବଣରେ ବାଉଁଶ ଦେହରେ ନିଆଁ ଲାଗିଲେ ତାର ଗଣ୍ଠିମାନ ଫୁଟି ଉଠିଥାଏ । ଏଭଳି ସାଧାରଣ ଦୃଶ୍ୟକୁ କାବ୍ୟିକ ଛଟାରେ କୁହାଯାଇଛି—

"ନଳିନ ବନ୍ଧୁ ଯେ ମଳିନ କରି ଲୋଡ଼ନ୍ତେ କରେ
ଜ୍ୱଳନ ବଂଶ-ନଳୀ ଗ୍ରନ୍ଥି-ଗୁଳି ଫୁଟାଇ ଖରେ ।"

ଅର୍ଥାତ୍ ନଳିନ ବନ୍ଧୁ (ସୂର୍ଯ୍ୟ) ନିଜ କିରଣରେ ଅଗ୍ନିକୁ ବଳିଯିବା ପାଇଁ ଇଚ୍ଛା କରିବାରୁ ଅଗ୍ନି ବାଉଁଶର ନଳୀ (ବନ୍ଧୁକ) ଏବଂ ବାଉଁଶ ଗଣ୍ଠିକି ଗୁଳିକରି ଶୀଘ୍ର ଫୁଟାଇ ଦେଉଛି । କବିଙ୍କ କଳ୍ପନା ଏଠାରେ ଅତିରଞ୍ଜିତ ହେଲେହେଁ ବର୍ଣ୍ଣନାଟି ତାର ସତ୍ୟତା ଓ ସ୍ୱାଭାବିକତାକୁ ହରାଇନାହିଁ । ସାଧାରଣକୁ ଅସାଧାରଣ କରିବା, ଅସୁନ୍ଦରକୁ ସୁନ୍ଦର କରିବା କିମ୍ବା ରୁଚିହୀନକୁ ରୁଚିଶୀଳ କରାଇବା ତ କବିର ଧର୍ମ । ଯାହା ବାସ୍ତବ ତାହା କଣ ଅବିକଳ ସେହି ଭାବରେ ସାହିତ୍ୟରେ ରୂପାୟିତ ହୁଏ ? କବିର କଳ୍ପ ଜଗତର କମନୀୟତା ଭିତରେ ବାସ୍ତବ ଜଗତରେ ରୁକ୍ଷତା କେତେ ଭାବରେ ଅନୁରଞ୍ଜିତ ହୋଇପାରେ, ତାହାହିଁ କଳାକୁଶଳ କଳାକାରଙ୍କ କଳା-ଶିଳ୍ପର ପରାକାଷ୍ଠା ବୋଲି ବୁଝିବାକୁ ହେବ । ଅନ୍ୟତ୍ର ପର୍ବତ ଗୁହାରେ ଶୋଇଥିବା ଶୁକ୍ଳ ବର୍ଣ୍ଣର ସିଂହକୁ ଦେଖି ହାତୀ ସୁରସରିତ (ଗଙ୍ଗା) ବୋଲି ବିଚାରୁଛି ତଥା ସିଂହର ବାରବାର ପୁଚ୍ଛ ଚାଳନା ତା ମନରେ ଲହରୀର ଭ୍ରମ ସୃଷ୍ଟି କରୁଛି । ସେହିପରି ହାତୀର ବପୁ ଦେଖି ସିଂହ ମନରେ ମେଘର ଭ୍ରମଜାତ ହେଉଛି ତଥା ହାତୀର ମଦଜଳ ଜଳବର୍ଷା ଓ ଦନ୍ତ ବକପଂକ୍ତିର କାନ୍ତିତୁଲ୍ୟ ମନେ ହେଉଛି । ମୃତକ ମଧ୍ୟ ମେଘ ଭ୍ରମରେ ତଳକୁ ଖସିଆସୁଛି । ଏ ବର୍ଣ୍ଣନାଟି ବିଭ୍ରମ ଜନିତ କୌତୁକ ହାସ୍ୟର ପରିଚାୟକ । କୌଣସି ବ୍ୟକ୍ତି, ବସ୍ତୁ କିମ୍ବା ଘଟଣାର ପ୍ରକୃତ ସ୍ୱରୂପ ଜାଣିନପାରି ଅନ୍ୟ କିଛି ମନେକଲେ, ସାଧାରଣତଃ କୌତୁକଭାବ ଜାତ ହୋଇଥାଏ । କବିସମ୍ରାଟଙ୍କ ରଚନା ଶୈଳୀ ଓ କଳ୍ପନା ମାନସ ସ୍ୱାଭାବିକ ଦୃଶ୍ୟକୁ ମଧ୍ୟ କିଭଳି ମନୋଜ୍ଞ କରିଦେଇଛି ଲକ୍ଷଣୀୟ—

॥ ଦୁଇଶହ ଛନ୍ଦ ॥

Digitized by PPRACHIN, SOA

ଦରୀରେ ଶୋଇଲା କେଶରୀ ସୁରସରିତ ସଂର
ବାରବାର ପୁଚ୍ଛ ଚାଳିବା କି ଲହରୀ ବିହର ।
କରି ଆଣ କରି ଆସନ୍ନେ ଶୃଙ୍ଗ ସେ ଘନଭଳି
ଦାନଜଳ ଦାନଜଳ କି ଦନ୍ତ ବିକାଳୀ ଝଳି ।
ନଭ ଭଙ୍ଗକାରୀ ସାରଙ୍ଗ ଅଧୋଗତ ଇଚ୍ଛଇ
ଉପକ୍ଷ୍ୟାତ ପଟେର ବିହ୍ୱାନ ହଂସା ବିଦିତ ହୋଇ ।

ଏହି ପଦମାନ ପାଠ କରୁ କରୁ ଗ୍ରୀଷ୍ମ ଋତୁ କିମ୍ବା ପଦର ଅର୍ଥକୁ ପାଠକେ ଭୁଲିଯାଇ କବିସମ୍ରାଟଙ୍କ ଶବ୍ଦ-ଗୁମ୍ଫନ କୌଶଳ-ଜାଲରେ ବାନ୍ଧିହୋଇ ପଡ଼ନ୍ତି । ଅନୁପ୍ରାସ ଯୁକ୍ତ ସରଳ ତଥା ସୁବୋଧ ପଦମାନଙ୍କର ଯଥାରୂପ ବ୍ୟବହାର କେତେ ମଞ୍ଜୁଳ ଓ ମଧୁର ତାହା ସହଜରେ ଅନୁମେୟ । କବି ସମ୍ରାଟ ହିଂସ୍ର ପ୍ରାଣୀଙ୍କ ହିଂସ୍ରତାକୁ ମଧ୍ୟ ବର୍ଣ୍ଣନା ଭଙ୍ଗୀରେ ବିଲୀନ କରିଦେଇଛନ୍ତି ।

ପୁନଶ୍ଚ ଏ କାବ୍ୟରେ ସ୍ଥାନ ପାଇଥିବା ବର୍ଷାଋତୁର ଚିତ୍ର ମଧ୍ୟ କବିସମ୍ରାଟଙ୍କ ପାଣ୍ଡିତ୍ୟ, ଶାବ୍ଦିକଜ୍ଞାନ, ନୈସର୍ଗିକ କବି ପ୍ରତିଭା, ବର୍ଣ୍ଣନାର ଅନନ୍ୟ ସାଧାରଣ ଚାତୁରୀ ତଥା ତୀବ୍ର ଅନୁଭୂତିର ପରିଚାୟକ । ମାତ୍ର କବିସମ୍ରାଟଙ୍କ କଳ୍ପନା ଓ ଚିନ୍ତନ କୌଣସି କ୍ଷେତ୍ରରେ ଅପ୍ରାସଙ୍ଗିକ କିମ୍ବା ଅସ୍ୱାଭାବିକ ହୋଇନାହିଁ । ବର୍ଷା ବର୍ଣ୍ଣନାର ପ୍ରଥମ ଦୁଇପଦକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ—

ଆସାର ସଘନ କାଳ ହୋଇ ଉଦୟ
ଅସିତ ପରବଳରୁ ଦରଶମୟ ।୧।
ସ୍ତନିତ ହିଁ ସ୍ଫୁଟ କଳକଣ୍ଠ ସରୁ
ଅଚିର ପ୍ରଭା ହିଁ ତାର ଦଶେ ଦଶେତ " ।୨।

ଏହି ବର୍ଷାକାଳର ହିଁ ବର୍ଣ୍ଣନା । ମାତ୍ର ପ୍ରତ୍ୟେକ ପାଦରୁ ଗୋଟିଏ ଗୋଟିଏ ଅକ୍ଷର ବାଦ ଦେଇଦେଲେ ଶୀତ କାଳର ଅର୍ଥ ପ୍ରକାଶିତ ହେବ । ସେହିପରି ଆଉ ଏକ ଅକ୍ଷର ପ୍ରତ୍ୟେକ ପାଦରୁ କାଟିପକାଇଲେ ଗ୍ରୀଷ୍ମକାଳର ଅର୍ଥକୁ ସୂଚିତ କରାଏ ।

ଧାରାପାତ (ଆସାର) ନିବିଡ଼ (ସଘନ) ହୋଇ ବର୍ଷାକାଳର ଉଦୟ ହେବା ସଙ୍ଗେ ଅମାବାସ୍ୟାର ଅନ୍ଧକାର ସଦୃଶ କୃଷ୍ଣବର୍ଣ୍ଣ (ଅସିତ) ପ୍ରବଳ ହେଲା । ମେଘ ଗର୍ଜନ (ସ୍ତନିତ) ହେତୁ ମୟୂରମାନେ (କଳକଣ୍ଠ)ଆନନ୍ଦରେ ସ୍ୱନ ତୋଳିଲେ ତଥା ଦିଗମାନଙ୍କରେ ଉଜ୍ଜ୍ୱଳ ବର୍ଣ୍ଣର ବିଜୁଳି (ଅଚିର ପ୍ରଭା) ସ୍ଫୁରିତ ହେଲା ।

॥ ଦୁଇଶହ ଚାରି ॥

Digitized by PPRACHIN, SOA

ମାତ୍ର ପ୍ରଥମ ଗୋଟିଏ ଗୋଟିଏ ଅକ୍ଷର ପ୍ରତ୍ୟେକ ପାଦରୁ ବାଦ ଦେଇ ଦେଖନ୍ତୁ— ପଦ୍ମନାଶକ ଶୀତକାଳରେ (ସାରସଦ୍ମ-ସାରସ୍ୱଘନ) ପ୍ରବଳ ଶୀତ ହେତୁ କୁହୁଡ଼ି ପଡ଼ିବାରୁ ତାହା ଦର (ଶଙ୍ଖ) ସଦୃଶ ଶୁକ୍ଳବର୍ଣ୍ଣ ଧାରଣ କଲା । ଟଗର ଏବଂ ପାଦପଦ୍ମ (ନତ) ପ୍ରକାଶିତ (ସ୍ଫୁଟ) ହେଲେ । ଶୁକପକ୍ଷୀମାନେ (କଳକଣ୍ଠ) ରାବିବାକୁ (ସରୁତ) ଲାଗିଲେ । ନକ୍ଷତ୍ରମାନେ (ତାର) ସ୍ଥାୟୀଶୋଭା (ଚିରପ୍ରଭା) ଧାରଣ କରି ଆକାଶରେ ଶୋଭାଯୁକ୍ତ ହେଲେ ।

ଆଉ ଗୋଟିଏ ଅକ୍ଷର ବାଦ ଦେଇ ଗ୍ରୀଷ୍ମକାଳର ବର୍ଣ୍ଣନା ମଧ୍ୟ ଲକ୍ଷଣୀୟ— ଜଳନାଶକ ଗ୍ରୀଷ୍ମକାଳ (ରସଘ୍ନ) ଉଦୟ ହେବାରୁ ତପ (ଗ୍ରୀଷ୍ମ) ହେତୁ ଦର (ଭୟ) ଜାତ ହେଲା । ସେତେବେଳେ କୋକିଳମାନେ (କଳକଣ୍ଠ) ଶବ୍ଦ (ସରୁତ) କରିବାକୁ ଲାଗିଲେ । ଦଗେ ଦଗେ ପର୍ବତମାନଙ୍କରେ (ଦଶେ) ଅଗ୍ନି ଜଳି ଉଠିବାରୁ ତାର ଆଲୋକ (ପ୍ରଭା) ଦୂରକୁ ଉଜ୍ଜ୍ୱଳ ଦିଶିଲା ।

ଏହି ବର୍ଣ୍ଣନା ମାନଙ୍କରେ ବର୍ଷାକାଳର ଚିତ୍ରଣରେ ଚମତ୍କାରିତା ସୃଷ୍ଟି ନକରି କବିସମ୍ରାଟ ଶବ୍ଦର ଯାଦୁ ଦେଖେଇ ହେଇଛନ୍ତି । ଯାହା ତାଙ୍କ ଯୁଗ ଗୃହୀତ ଥିଲା । କବିସମ୍ରାଟ ମଧ୍ୟ ଅନ୍ୟ ପକ୍ଷରେ ଶବ୍ଦ ସମ୍ରାଟ ଏକାଧିକ ଅର୍ଥବୋଧକ ଶବ୍ଦମାନ ଚୟନ କରି ଯଥା ସ୍ଥାନରେ ଆଗ୍ରମ କରିବା ତାଙ୍କ ପାଣ୍ଡିତ୍ୟର ନିଦର୍ଶନ । ମ.ନ ଭଞ୍ଜ ପ୍ରକୃତି-ଚିତ୍ରଣ ଭାବ ବ୍ୟଞ୍ଜନା ଅପେକ୍ଷା ଆଲଙ୍କାରିକ ଆବରଣ ଭିତରେ କଳାତ୍ମକ ମୂଲ୍ୟର ଶ୍ରୀବୃଦ୍ଧି ସାଧନ କରିଛି ।



ମୁଖ୍ୟ ଅଧ୍ୟାପକ, ଓଡ଼ିଆ ବିଭାଗ
ଲରମ୍ବା ମହାବିଦ୍ୟାଳୟ, ଲରମ୍ବା
ସମ୍ବଲପୁର ।



Digitized by PPRACHIN, SOA

# ଯେନ ନୈଷଧ ପରାୟେ

ଡକ୍ଟର ହରେକୃଷ୍ଣ ମେହେର



**କବି ପରିଚିତି :**

ଉତ୍କଳର ସାରସ୍ୱତ ମଣ୍ଡଳରେ ଉପେନ୍ଦ୍ରଭଞ୍ଜ ରୀତିଯୁଗୀୟ କବି ରୂପରେ ସୁପରିଚିତ । ଖ୍ରୀଷ୍ଟୀୟ-ସପ୍ତଦଶ-ଶତକ-ଭବ ଏହି ପ୍ରତିଭାଶାଳୀ କବିସମ୍ରାଟ୍ ତଦାନୀନ୍ତନ ସାହିତ୍ୟିକ ପରିବେଶ ଯେଉଁ ନିଜ କାବ୍ୟ-ସୌଧମାନଙ୍କରେ ସଂସ୍କୃତ ସାହିତ୍ୟର ଭିତ୍ତି ପ୍ରତିଷ୍ଠା କରିଥିଲେ । ପରୋକ୍ଷରେ, ପ୍ରାକୃତ ଓଡ଼ିଆ ଭାଷାକୁ ଏକ ସମୃଦ୍ଧ ଓ ସଂସ୍କୃତ-ପ୍ରତିଦ୍ୱନ୍ଦ୍ୱୀ ଉନ୍ନତ ଭାଷା ରୂପରେ ମର୍ଯ୍ୟାଦା ସଂପନ୍ନ କରିବା ଲାଗି ସେ ଲେଖନୀ ଚାଳନା କରିଥିଲେ । ସେ କାଳର ସାହିତ୍ୟିକ ସାହସିକତା, ମାତୃଭାଷା-ପ୍ରୀତି ଓ ସ୍ୱୀୟ ବିଦ୍ୱତ୍ତାର ପରିଚୟ ତାଙ୍କ କାବ୍ୟକବିତାମାନଙ୍କରେ ସୁପରିସ୍ଫୁଟ । କଷ୍ଟିଷ୍ଟ ପଦ ରଚନା ରୀତି ବୋଲି ସାହିତ୍ୟ ଶାସ୍ତ୍ରରେ ବିବେଚିତ । ଭଞ୍ଜକବିଙ୍କ ପ୍ରତିଭା-ପ୍ରସୂତ କୃତିମାନଙ୍କ ମଧ୍ୟରେ ବୈଦେହୀଶ ବିଳାସ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ରସିକ ହାରାବଳୀ, ପ୍ରେମସୁଧାନିଧି, ଚିତ୍ରକାବ୍ୟବନ୍ଧୋଦୟ ପ୍ରଭୃତି କାବ୍ୟ ରୀତି ଯୁଗୀୟ ଶୈଳୀର ନିଦର୍ଶନ । କାଳିଦାସ, ଭାରବି, ମାଘ, ଶ୍ରୀହର୍ଷ ପ୍ରଭୃତି ପ୍ରଖ୍ୟାତଯଶା ସଂସ୍କୃତ ମହାକବିମାନଙ୍କ ଦ୍ୱାରା ସେ ପ୍ରଭାବିତ । କାବ୍ୟଶାସ୍ତ୍ର ପରଂପରାର ଅନୁସରଣରେ ସେ ବିଶେଷରୂପେ ଶ୍ରୀହର୍ଷଙ୍କ କାବ୍ୟାଦର୍ଶ ଦ୍ୱାରା ଅନୁପ୍ରାଣିତ । "କୋଟିବ୍ରହ୍ମାଣ୍ଡ ସୁନ୍ଦରୀ" କାବ୍ୟରେ ଏ ବିଷୟରେ ଉଲ୍ଲେଖ ରହିଛି:—

"ଏ ତ ପରାକୃତ କାବ୍ୟ ଛାନ୍ଦ ପ୍ରାନ୍ତ ସତ
ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛି ବିଶେଷତ
ଯେସନ ନୈଷଧ ପରାୟେ,
ଉପଇନ୍ଦ୍ର କହେ ବୁଧେ ପ୍ରମୋଦ କରାଏ ।"

(କୋ. ୧୧/୩୧)

॥ ଦୁଇଶହ ଛଅ ॥

Digitized by PPRACHIN, SOA

ଶଙ୍କରାଭରଣ-ସର୍ଗରେ ରଚିତ ଏହି ପଦର ଅନୁଶୀଳନ କଲେ ଜଣାଯାଏ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନୈଷଧୀୟ ରୀତି ଅନୁସୃତ ହୋଇଛି । ଖ୍ରୀଷ୍ଟୀୟ-ଦ୍ୱାଦଶ-ଶତକ-ଭବ ମହାକବି ଶ୍ରୀହର୍ଷ 'ନୈଷଧ ଚରିତ' କାବ୍ୟରେ ଯେଉଁ କାବ୍ୟାଦର୍ଶ ପ୍ରଦର୍ଶନ କରିଛନ୍ତି, ଉପେନ୍ଦ୍ରଭଞ୍ଜ ତାର ଯଥାର୍ଥ ଅନୁଗାମୀ ହେବା ପାଇଁ ଚେଷ୍ଟା କରିଛନ୍ତି ସ୍ୱକୀୟ କବି ପ୍ରତିଭାର ମୌଳିକତା ପ୍ରତିପାଦନ ମାଧମରେ । ଭଞ୍ଜକବିଙ୍କ କାବ୍ୟ ସେହି କାବ୍ୟାଦର୍ଶର ସ୍ୱାକ୍ଷର କିପରି ବହନ କରିଛି, ତାହା ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରାଯାଇପାରେ ।

ଉଭୟ ଶ୍ରୀହର୍ଷ ଓ ଉପେନ୍ଦ୍ରଙ୍କ କବି-ପ୍ରତିଭା ଦୈବୀ କୃପାରେ ମହୀୟସୀ । ସ୍ୱୀୟ ପିତା ଶ୍ରୀହୀରଙ୍କୁ କାବ୍ୟଶାସ୍ତ୍ରାଲୋଚନାରେ ପରାସ୍ତ କରିଥିବା ପ୍ରବୀଣ ବିଦ୍ୱାନ୍ ଉଦୟନଙ୍କ ଗର୍ବଚୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ଶ୍ରୀହର୍ଷ ନୈଷଧ କାବ୍ୟ ପ୍ରଣୟନ କରିଥିଲେ ବୋଲି କିମ୍ବଦନ୍ତୀ ରହିଛି । ତାଙ୍କ ଅସାଧାରଣ କବିତ୍ୱ ଚିନ୍ତାମଣି-ମନ୍ତ୍ର-ସାଧନା-ବଳରେ ପରିସ୍ଫୁଟ । ପିତା ଶ୍ରୀହୀର, ମାତା ମାମଲ୍ଲଦେବୀ ତଥା ସ୍ୱୀୟ କବିତ୍ୱର ପରିଚୟ ଦେଇ ସେ କହିଛନ୍ତି:—

"ଶ୍ରୀହର୍ଷଂ କବିରାଜ-ରାଜି-ମୁକୁଟାଲଂକାର-ହୀରଃ ସୁତଂ
ଶ୍ରୀହୀରଃ ସୁଷୁବେ ଜିତେନ୍ଦ୍ରିୟ-ଚୟଂ ମାମଲ୍ଲଦେବୀ ଚ ଯମ୍ ।
ତଚ୍ଚିନ୍ତାମଣି-ମନ୍ତ୍ର-ଚିନ୍ତନ-ଫଳେ ଶୃଙ୍ଗାର-ଭଙ୍ଗ୍ୟା ମହା-
କାବ୍ୟେ ଚାରୁଣି ନୈଷଧୀୟ-ଚରିତେ ସର୍ଗୋଽୟମାଦିର୍ଗତଃ ।।"

(ନୈ. ୧/୧୪୫)

ଉପେନ୍ଦ୍ର ମଧ୍ୟ 'ଲାବଣ୍ୟବତୀ' କାବ୍ୟରେ ସେପରି ସ୍ୱୀୟ ବଂଶ-ପରିଚୟ ସମେତ କବିତ୍ୱର ଉନ୍ମେଷ ବିଷୟରେ ଉଦ୍‌ଘୋଷଣା କରିଛନ୍ତି । ଶ୍ରୀହର୍ଷଙ୍କ ସିଦ୍ଧିର ମୂଳ ହେଉଛି ସରସ୍ୱତୀଙ୍କ ଚିନ୍ତାମଣି ମନ୍ତ୍ର । ଅନ୍ୟପକ୍ଷରେ, ଉପେନ୍ଦ୍ରଙ୍କ ସିଦ୍ଧିର ମୂଳ ଶ୍ରୀରାମଚନ୍ଦ୍ରଙ୍କ ତାରକ ମନ୍ତ୍ର । ଉଭୟେ ଦୈବୀ ଅନୁକମ୍ପା ବଳରେ ମହାକବି ।

### ବିଦଗ୍ଧପାଠକର କବି :—

ଶ୍ରୀହର୍ଷଙ୍କ କାବ୍ୟ ମୁଖ୍ୟରୂପରେ ସହୃଦୟ, ରସିକ ଓ ବିଦ୍ୱଦଗୋଷ୍ଠୀ ପାଇଁ ଉଦ୍ଦିଷ୍ଟ । ବିଜ୍ଞମ୍ମନ୍ୟ ଖଳ ବ୍ୟକ୍ତିମାନଙ୍କ ଅସାର ଗର୍ବ ଚୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ସେ ଜାଣିଜାଣି ନିଜ କାବ୍ୟର ସ୍ଥଳ-ବିଶେଷରେ କ୍ଲିଷ୍ଟତା ଓ ଜଟିଳତାର ସଂଯୋଜନା କରିଛନ୍ତି । ଯେଉଁ ସଜ୍ଜନ ଶ୍ରଦ୍ଧାରେ ଗୁରୁସେବା କରି ଜଟିଳତାର ଗାଢ଼ ଗଣ୍ଠି ଫିଟାଇ ପାରିଛି, ସେ ହିଁ ଏ କାବ୍ୟ-ରସ-ଲହରୀରେ ମଜ୍ଜି ସ୍ନାନାନନ୍ଦ ଅନୁଭବ କରୁ ବୋଲି ଶ୍ରୀହର୍ଷ ଦର୍ଶାଇଛନ୍ତି ।



Digitized by PPRACHIN, SOA

"ଗ୍ରନ୍ଥ-ଗ୍ରନ୍ଥିରିହ କ୍ୱଚିତ୍ କ୍ୱଚିଦପି ନ୍ୟାସି ପ୍ରଯତ୍ନାନ୍ ମୟା
ପ୍ରାଜ୍ଞଂମନ୍ୟମନା ହଠେନ ପଠିତା ମାସ୍ମିନ୍ ଖଳଃ ଖେଳତୁ ।
ଶ୍ରଦ୍ଧାରାଦ୍ଧ-ଗୁରୁ-ଶ୍ଳଥୀକୃତ-ଦୃଢ଼-ଗ୍ରନ୍ଥିଃ ସମାସାଦୟ୍—
ତ୍ୱେତତ୍-କାବ୍ୟ-ରସୋର୍ମି-ମଜ୍ଜନ-ସୁଖ-ବ୍ୟାସଜ୍ଜନଂ ସଜ୍ଜନଃ ।।"

(ନୈ. ୨୨/୧୫୨)

ଉପେନ୍ଦ୍ର ମଧ୍ୟ ଏ ଆଦର୍ଶରେ ପ୍ରଭାବିତ । ଏଦ୍ୱାରା ଉଲ୍ଲେଖ ଯେ ନାମମାତ୍ର, ଏମିତି କଥା ନୁହେଁ । ଉପେନ୍ଦ୍ର ନିଜେ ଅନୁଭବୀ । ବହୁ ସଂଘର୍ଷର ସମ୍ମୁଖୀନ ହୋଇ ସେ ନିଜର କାବ୍ୟ-ଧନକୁ ଖଳ-କବଳରୁ ବଞ୍ଚାଇବାର ଯତ୍ନ କରିଛନ୍ତି । ସେ ନିଜେ ଖଳ ଓ ପଣ୍ଡିତମ୍ମନ୍ୟ ଗର୍ବୀମାନଙ୍କ ଦର୍ପହରଣ ପାଇଁ ଅଗ୍ରସର । ତାଙ୍କ କାବ୍ୟରେ ଖଳର ପ୍ରବେଶ ନିଷିଦ୍ଧ । ଭକ୍ତକବି ସଜ୍ଜନ-ପ୍ରଶଂସା ସହ ଖଳ-ନିନ୍ଦା କରି କହିଛନ୍ତି:—

"ବିଜ୍ଞ ସୁଜନ ରଞ୍ଜନ ପଦମାନ ମାନସେ କରିବ ବିଗ୍ଭର ।
ଅଲ୍ପ ବ୍ୟୁତ୍ପତ୍ତି ଉତ୍ପତ୍ତି ନରପନ୍ତ ବାନର ମୁଷ୍ଟି ପରକାର ।
ଛୁଡ଼ନ୍ତୁ ନାହିଁ ଆମ୍ଭେ ବଡ଼ ଏ ଗର୍ବ ।
ଏ ଗୀତ ସବିତା ପଦ ପ୍ରଭାବରେ ତାମସ ତମସ ନାଶିବ ।"

(କୋ. ୨୮/୧)

ଉଭୟେ ବିଦଗ୍ଧ ପାଠକର କବି । ଶ୍ରୀହର୍ଷ ଅରସିକ ବ୍ୟକ୍ତିମାନଙ୍କୁ ବାଳକ ତୁଲ୍ୟ ମଣିଛନ୍ତି ଓ ନିଜ କବିତାକୁ କମନୀୟା କାମିନୀ ରୂପରେ ଚିତ୍ରଣ କରି କହିଛନ୍ତି:—

"ଯଥା ଯୂନସ୍ତଦ୍ୱତ୍ ପରମ-ରମଣୀୟାପି ରମଣୀ
କୁମାରାଣାମନ୍ତଃକରଣ-ହରଣଂ ନୈବ କୁରୁତେ ।
ମଦୁକ୍ତିଶ୍ଚେଦନ୍ତର୍ମଦୟତି ସୁଧୀଭୂୟ ସୁଧିୟଃ
କିମସ୍ୟା ନାମ ସ୍ୟାଦରସ-ପୁରୁଷାନାଦର-ଭରୈଃ ।।"

(ନୈ. ୨୨/୧୫୦)

ପରମ ସୁନ୍ଦରୀ ହେଲେ ବି ରମଣୀ ଯେପରି ଯୁବକମାନଙ୍କ ଅନ୍ତରକୁ ଆକର୍ଷଣ କରିଥାଏ, ସେପରି ବାଳକମାନଙ୍କ ହୃଦୟକୁ ଆକର୍ଷଣ କରି ନ ଥାଏ । ମୋର ବାଣୀ ଯଦି ସୁଧାମୟୀ ହୋଇ ସୁଧୀଜନଙ୍କୁ ଆନନ୍ଦ ବିତରଣ କରିବ, ତେବେ ଅରସିକ ଲୋକେ ଯେତେ ଅନାଦର କଲେ ବି କିଛି କ୍ଷତି ନାହିଁ ବୋଲି ଶ୍ରୀହର୍ଷ ଦୃଢ଼ ଗମ୍ଭୀର ସ୍ୱରରେ ନିଜ ରସବତୀ କବିତାର ହୃଦୟ-ହାରିତ୍ୱ ଉଲ୍ଲେଖ କରିଛନ୍ତି । ଉପେନ୍ଦ୍ର ମଧ୍ୟ ନିଜ କବିତାର ମାଧୁର୍ଯ୍ୟ, ସରସତା ଓ ସହୃଦୟ-ବେଦ୍ୟତ୍ୱ



Digitized by PPRACHIN, SOA

ପ୍ରତିପାଦନ କରି ଯାଇଛନ୍ତି । ଉଭୟଙ୍କ ଆଦର୍ଶ ଏକପ୍ରକାର ହେଲେ ବି ଉପସ୍ଥାପନରେ ସ୍ୱାତନ୍ତ୍ର୍ୟ ରହିଛି । ଉପେନ୍ଦ୍ର ନିଜ କାବ୍ୟକୁ ସୁରଭିତ ଉତ୍ତମ ଜାଈଫୁଲ ଭାବରେ ଫୁଟାଇଛନ୍ତି । ଏ କାବ୍ୟ-ପୁଷ୍ପର ମାଳି ଗୁଣୀମାନଙ୍କ ହୃଦୟଧାର୍ଯ୍ୟ ଓ ରସିକ ରୂପୀ ଭ୍ରମରମାନଙ୍କ ଦ୍ୱାରା ଏହାର ରସ ଆସ୍ୱାଦନୀୟ । ନିର୍ଗୁଣ ବା ଅରସିକ ବ୍ୟକ୍ତି ଏ କାବ୍ୟ-ଫୁଲରେ ଆଦର କଲେ କି ନ କଲେ କିଛି ଯାଏ ଆସେ ନାହିଁ ।

"ରଚିବି କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଚରିତ ।
ସୁକାନ୍ତି ସୁମନା ଯନ୍ତ୍ର ହୋଇବ ଏ ଗୀତ ॥
ସୁରଭିରେ ମୋହିତ-ମାନସ ହେବେ ଦିବ୍ୟେ ।
ଗୁଣବନ୍ତେ ହୃଦେ ମାଳା କରିଣ ଧରିବେ ॥
ରସିକ-ଭ୍ରମରେ ହେବେ ରସ ଘେନି ବଶ ।
ନିର୍ଗୁଣେ ଘେନିଲେ ନ ଘେନିଲେ ଅଛି କିସ ॥"

(କୋ. ୧/୭୦-୭୨)

ଉପେନ୍ଦ୍ରଙ୍କ କାବ୍ୟରୁ ଉଦ୍ଧୃତ ଏହି ଶେଷ ପଂକ୍ତି, ଶ୍ରୀହର୍ଷ-ଲିଖିତ ପୂର୍ବୋକ୍ତ ଶ୍ଳୋକର ଶେଷ ପଂକ୍ତିର ଭାବ ଆହରଣ କରିଛି । ରସମୟୀ କବି-କୃତି ହେଉଛି ରସଗ୍ରାହୀ ବ୍ୟକ୍ତିର ଆସ୍ୱାଦନ ପାଇଁ । ଏଥିରେ ରସହୀନ ଅଜ୍ଞ ପୁରୁଷର ସ୍ଥାନ ନାହିଁ ।

କାବ୍ୟଶାସ୍ତ୍ର, ଅଳଂକାର, ଅଭିଧାନ ଆଦି ଜ୍ଞାନରେ ପ୍ରବୀଣ ବ୍ୟକ୍ତିମାନେ ହିଁ ଉପେନ୍ଦ୍ରଙ୍କ କାବ୍ୟ ଅଧ୍ୟୟନ ଓ ହୃଦୟଙ୍ଗମ କରିବା ପାଇଁ ସମର୍ଥ । ଭଞ୍ଜକବି ଏ ବିଷୟ ନିଜ କାବ୍ୟମାନଙ୍କର ସ୍ଥଳ-ବିଶେଷରେ ଉଲ୍ଲେଖ କରିଛନ୍ତି ।

"ନାନା ଶବ୍ଦଶାସ୍ତ୍ରେ ଯେ ବିଚକ୍ଷଣ । ଯେହୁ ଜାଣେ ଅଳଂକାର ଲକ୍ଷଣ ।
କରୁ ସେ ଏହି ଗ୍ରନ୍ଥ ବିବେଚନା । ବାଲ୍ୟ ପୌଗଣ୍ଡ ଯୌବନ ରଚନା ।"

(କୋ. ୩/୧)

"ଯେ କବି ଅର୍ଥୀ ପଣ୍ଡିତ ସୁବୁଦ୍ଧି ।
ରସିକ ଯେହୁ ଘେନିମ ଏ ଗ୍ରନ୍ଥ ।"

(କୋ. ୧୨/୧)

"ଏ ଗ୍ରନ୍ଥ ଇକ୍ଷୁ ଲତିକା ରସ ଆସ୍ୱାଦନେ ।
ଅର୍ଥୀ ହେବ ଏଥି ଜ୍ଞାନ-ରଜ ଥିଲେ ଜନେ ॥

(କୋ. ୩୪/୧)



Digitized by PPRACHIN, SOA

## ଭାଷା ଓ ରଚନାଶୈଳୀ :—

ଶ୍ରୀହର୍ଷଙ୍କ ନୈଷଧ କାବ୍ୟ ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟ ସମ୍ପଦର ଏକ ଅମୂଲ୍ୟ ଭଣ୍ଡାର । ଭାରତୀୟ ପଣ୍ଡିତ-ମଣ୍ଡଳୀଙ୍କ ମତରେ ଏହି କାବ୍ୟ ହେଉଛି ବିଦ୍ୱାନ୍ ମାନଙ୍କର ଔଷଧ (ନୈଷଧଂ ବିଦ୍ୱଦୌଷଧମ୍) । ଶ୍ରୀହର୍ଷ ସମୁଚିତ ଶବ୍ଦର ବ୍ୟବହାର ଓ ଅଭୀଷ୍ଟ ଅର୍ଥର ଅଭିବ୍ୟକ୍ତି ବିଷୟରେ ଅବହିତ । ତେଣୁ ସେ ଶବ୍ଦାଡମ୍ବର ଓ ଅର୍ଥଲାଘବକୁ ଭାଷାର ବିଷ-ଯୁଗଳ ବୋଲି ମନ୍ତବ୍ୟ ଦେଇଛନ୍ତି । ଆହୁରି, ତାଙ୍କ ମତରେ ସଂକ୍ଷିପ୍ତ ଓ ସାର ବଚନ ହେଉଛି ବାଗ୍ମିତା (ନୈ. ୯/୮) । କାଳିଦାସଙ୍କ କାଳରେ କାବ୍ୟର ଜଟିଳତାର ଅନୁଭବ ହୋଇ ନ ଥାଏ । କିନ୍ତୁ ତତ୍ପରବର୍ତ୍ତୀ ସାହିତ୍ୟରେ କାବ୍ୟର ଭାବପକ୍ଷ ଅପେକ୍ଷା କଳାପକ୍ଷ ଉପରେ କବିଗଣଙ୍କ ବିଶେଷ ଗୁରୁତ୍ୱ ଆରୋପିତ । ପ୍ରତିଷ୍ଠା ଅର୍ଜନ ଓ ମୌଳିକତା ପ୍ରଦର୍ଶନ ନିମନ୍ତେ କବିମାନଙ୍କ ସ୍ୱତନ୍ତ୍ର କାବ୍ୟ ଶୈଳୀ ଅବଲମ୍ବନ ଏହାର ବିଶେଷ ସମ୍ଭାବିତ କାରଣ । ଆଲଙ୍କାରିକ ଶୈଳୀ, ଶାବ୍ଦିକ-ବିଳାସ, ବିବିଧ ଛନ୍ଦ ପ୍ରୟୋଗ, ଶୃଙ୍ଗାର ବର୍ଣ୍ଣନାଦି ଦ୍ୱାରା କବିମାନଙ୍କ ମଧ୍ୟରେ ସ୍ପର୍ଦ୍ଧା ସୂଚିତ ହୋଇଥାଏ । ସଂସ୍କୃତ ରୀତି ଯୁଗୀୟ ସାହିତ୍ୟର ଅବକ୍ଷୟ କାଳରେ ଶ୍ରୀହର୍ଷଙ୍କ ନୈଷଧ ମହାକାବ୍ୟ-ଦୀପ ଅତ୍ୟନ୍ତ ଦୀପ୍ତିମନ୍ତ ରୂପରେ ପ୍ରଜ୍ଜ୍ୱଳିତ ।

ଭଞ୍ଜଯୁଗରେ ଓଡ଼ିଆ କାବ୍ୟମାନ ସଂସ୍କୃତାନୁସାରୀ ହେବା ଯୋଗୁଁ ତଦ୍ରୂପ ଭାଷାବିନ୍ୟାସ ଉପେନ୍ଦ୍ରଙ୍କ କୃତିରେ ଚରିତାର୍ଥ ହୋଇଛି । ସେ ବିବିଧ ଛନ୍ଦ, ସଂସ୍କୃତ ତତ୍ସମ ଓଡ଼ିଆ ଶବ୍ଦାବଳୀ, ଶ୍ଳେଷ, ଶୃଙ୍ଗାର, କଳ୍ପନା-ବିଳାସ ଆଦିର ସଂଯୋଜନା ଦିଗରେ ସିଦ୍ଧହସ୍ତତା ପ୍ରତିପାଦନ କରିଛନ୍ତି ।

## ଛନ୍ଦ :—

ନୈଷଧ କାବ୍ୟର ମୋଟ ୨୨ ଗୋଟି ସର୍ଗରେ ବଂଶସ୍ଥ, ବସନ୍ତତିଳକ, ଦୋଧକ, ବୈତାଳୀୟ, ଦ୍ରୁତ ବିଲମ୍ବିତ, ପୁଷ୍ପିତାଗ୍ରା, ମାଳିନୀ, ଇନ୍ଦ୍ରବଜ୍ରା, ଉପେନ୍ଦ୍ରବଜ୍ରା, ଉପଜାତି, ମନ୍ଦାକ୍ରାନ୍ତା, ଅନୁଷ୍ଟୁପ୍, ଶିଖରିଣୀ, ରଥୋଦ୍ଧତା, ହରିଣୀ, ଶାର୍ଦ୍ଦୂଳ ବିକ୍ରୀଡ଼ିତ, ସ୍ରଗ୍ଧରା ପ୍ରଭୃତି ଅନେକ ସଂସ୍କୃତ ବୃତ୍ତ ଛନ୍ଦର ମଞ୍ଜୁଳ ପ୍ରୟୋଗ ମାଧ୍ୟମରେ ଶ୍ରୀହର୍ଷ ସୁଧୀଜନଙ୍କ ହୃଦୟରେ ଆହ୍ଲାଦ ଦେବା ସଙ୍ଗେ ସ୍ୱୀୟ ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି । ଶ୍ରୀହର୍ଷଙ୍କ ପରି ଉପେନ୍ଦ୍ର ବିବିଧ ଛନ୍ଦପ୍ରିୟ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ମୋଟ ୩୫ ଗୋଟି ଛାନ୍ଦରେ ବିବିଧ ସାଙ୍ଗୀତିକ ରାଗରାଗିଣୀର ସମାବେଶ କାବ୍ୟର ଶୋଭାଧାୟକ ହୋଇଛି । ଏଥିରେ ମଙ୍ଗଳଗୁଜ୍ଜରୀ, ମାଳବ, କେଦାର, ଗୁଜ୍ଜରୀ, ମଙ୍ଗଳବରାଡ଼ି, ବସନ୍ତ,



Digitized by PPRACHIN, SOA

ରସକୋଚଲ୍, ଦେଶାକ୍ଷ, ମଙ୍ଗଳ, କଉଶିକ, ବରାଡ଼ି, ଟଙ୍କରାଭରଣ, କାମୋଦୀ, ନଳିନୀ ଗୌଡ଼ା, ଘଣ୍ଟାରବ, ଚନ୍ଦ୍ରାକୌଶିକ, କାଳୀ, ରାମକେରୀ, କଳହଂସ କେଦାର, ଭୂପାଳ, କନଡ଼ା, କଲ୍ୟାଣ ଆହାରୀ, ଚନ୍ଦ୍ରାଭୈରବ, ଚନ୍ଦ୍ରାଦେଶାକ୍ଷ, ପାହାଡ଼ିଆ କେଦାର, ବସନ୍ତ ବରାଡ଼ି, ବଚନ ଦେଶାକ୍ଷ, ସିନ୍ଧୁ ଦେଶାକ୍ଷ, ଚନ୍ଦ୍ର ବରାଡ଼ି, କାମ ପଞ୍ଚମ ବରାଡ଼ି, ଭାଟିଆରୀ ଆଦି ଓଡ଼ିଆ ରାଗରାଗିଣୀ ପ୍ରଯୁକ୍ତ ହୋଇଛି ।

ଭକ୍ତକବି ସଂସ୍କୃତ ଛନ୍ଦ ବିଷୟରେ ସଂପୂର୍ଣ୍ଣ ଅବହିତ । ସଂସ୍କୃତ କାବ୍ୟମାନଙ୍କରେ ସାଧାରଣତଃ ପ୍ରତିସର୍ଗର ଶେଷରେ ଅନ୍ୟ ଛନ୍ଦର ପ୍ରୟୋଗ କରାଯାଇଥାଏ । ମାତ୍ର ଓଡ଼ିଆ କାବ୍ୟରେ ଏପରି ପ୍ରୟୋଗ ପ୍ରାୟ ନାହିଁ । ଭକ୍ତ କବି ନିଜ କାବ୍ୟରେ ସଂସ୍କୃତ ଛନ୍ଦୋ ବିଷୟକ ଏକ ଆଭାସ ଦେଇଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନାୟକ-ନାୟିକାଙ୍କ ପରସ୍ପର ଦର୍ଶନରେ ଭାବନା ଜାଗ୍ରତ ହୋଇଛି । ରାତ୍ରିରେ ଉଭୟେ ଏକ ଭାବନାରେ ମଗ୍ନ ରହିଛନ୍ତି । ମାତ୍ର ରାତ୍ରି ଶେଷରେ ଅନ୍ୟ ଭାବର ଉଦ୍ରେକ ହୋଇଛି, ଯେପରି ପ୍ରତିସର୍ଗର ଶେଷରେ ଅନ୍ୟ ଛନ୍ଦର ସମାବେଶ ଘଟିଥାଏ । କବି ସାହିତ୍ୟ ଶାସ୍ତ୍ରର ଏ ବିଷୟକୁ ଏକ ଉପମା ଭାବରେ ଗ୍ରହଣ କରି କହିଛନ୍ତି :—

"ଭାବୁଁ ଦୁହେଁ ହୋଇଲା ନିର୍ମଳ ଭାବ-ଅଶା
ଦେଖି ସୁନ୍ଦରୀ ବୁଦ୍ଧି ଆଜ ଭେଟ ହେବା ଆଶା
ବେନି ଗଲେ ନିଦ୍ରା ଆବେଶେ,
କାବ୍ୟସର୍ଗ ଭଙ୍ଗେ ଯଥା ଆନ ବୃତ୍ତ ବସେ ।"

( କୋ. ୧୧/୩୦ )

ଏ ପରିପ୍ରେକ୍ଷୀରେ ଉପେନ୍ଦ୍ରଙ୍କ ଛନ୍ଦୋନୈପୁଣ୍ୟ ପ୍ରଶଂସାଯୋଗ୍ୟ । ସ୍ୱୀୟ କାବ୍ୟର ପଞ୍ଚବିଂଶ ଛାନ୍ଦରେ ଋତୁବର୍ଣ୍ଣନ ପ୍ରସଙ୍ଗରେ କବିଙ୍କ ଛନ୍ଦ ପ୍ରୟୋଗର ଚମତ୍କାରିତା ଦର୍ଶନୀୟ । ଏ ଛାନ୍ଦ ଗୋଟିଏ ଛାନ୍ଦ ହେଲେହେଁ ଏକ ଏକ ଆଦ୍ୟବର୍ଣ୍ଣ ଲୋପ ଦ୍ୱାରା ତିନୋଟି ଛନ୍ଦରେ ସମନ୍ୱିତ । ଚନ୍ଦ୍ରାଦେଶାକ୍ଷ, କାଫିକାମୋଦୀ ଓ ମାଳବଗୌଡ଼ ରାଗରେ ରଚିତ ପଦମାନ ଯଥାକ୍ରମେ ବର୍ଷା, ଶୀତ ଓ ଗ୍ରୀଷ୍ମ ଋତୁର ବୋଧକ । ଭକ୍ତକବି ମନୋଜ୍ଞ ଓ ବିଚିତ୍ର ଢଙ୍ଗରେ ତିନୋଟି ଛନ୍ଦର ସମନ୍ୱୟରେ ତିନୋଟି ଋତୁର ବର୍ଣ୍ଣନ କରିଛନ୍ତି । ପ୍ରଥମରେ ଚନ୍ଦ୍ରାଦେଶାକ୍ଷ ରାଗରେ ବର୍ଷା ବର୍ଣ୍ଣନା :—

"ଆସାର ସଘନ କାଳ ହେଲା ଉଦୟ । ଅସିତ ଘନବଳରୁ ଦାରୁଣମୟ ।
ସ୍ତନିତ ହିଁ ସ୍ଫୁଟ କଳକଣ୍ଠ ସଚୁତ । ଅଚିର ପ୍ରଭା ହିଁ ତାର କ୍ଷଣେ କ୍ଷଣେ ତ ।"

(୧।୧)



Digitized by PPRACHIN, SOA

ଉକ୍ତ ପଦର ପ୍ରତି ପାଦରୁ ଆଦ୍ୟବର୍ଣ୍ଣ ଲୋପ କଲେ ରାଗ ହେଉଛି କାମୋଦୀ ଓ ଏଥିରେ ରହିଛି ଶୀତଋତୁର ବର୍ଣ୍ଣନା—

"ସାରସ ଘନ କାଳ ହେଲ ଉଦୟ । ସିତ ପରବଳରୁ ଦରଶମୟ ।
କତ ହିଁ ସ୍ଫୁଟ କଳକଣ୍ଠ ସରୁତ । ଶର ପ୍ରଭା ହିଁ ତାର ଦଣେ ଦଣେ ତ ॥"

ଏ ପଦର ପ୍ରତି ପାଦରୁ ଆଦ୍ୟବର୍ଣ୍ଣ ଲୋପରେ ରାଗ ହେଉଛି ମାଳବଗଡ଼ ଓ ଏଥିରେ ରହିଛି ଗ୍ରୀଷ୍ମ ଋତୁର ଚନ୍ଦଣ ।

"ରସ ଘନ କାଳ ହେଲା ଉଦୟ । ତପର ବଳରୁ ଦରଶମୟ ।
ତହିଁ ସ୍ଫୁଟ କଳକଣ୍ଠ ସରୁତ । ରପ୍ରଭା ହିଁ ତାର ଦଣେ ଦଣେ ତ ॥"

ଏ ପ୍ରକାର ନିଭିଙ୍ଗୀ ଛନ୍ଦୋଯୋଜନାରେ ଭଞ୍ଜକବଙ୍କ କାବ୍ୟ-କୌଶଳ ଅପୂର୍ବ । ଏକ ସଙ୍ଗରେ ପ୍ରକୃତିର ମନୋରମ ଚନ୍ଦଣ, ପଦ-ଚାତୁର୍ଯ୍ୟ ଓ କଳ୍ପନା ବିଳାସ ସନ୍ନିବେଶିତ ହୋଇଛି ।

ପୁଣି ବଂଶ ଛନ୍ଦରେ 'କଳହଂସ କେଦାର' ଓ 'ଭୂପାଳ' ରାଗଦ୍ୱୟ ସମାବିଷ୍ଟ । ଏହା କ୍ଷୀର-ନୀର-ଭାବରେ ମିଶ୍ରିତ ଦ୍ୱ୍ୟର୍ଥବୋଧକ । ନାୟକ ଓ ନାୟିକାଙ୍କ ପ୍ରେମାନୁରାଗ କଥନରେ ଶୁକ ଓ ଶାରୀର ବାର୍ତ୍ତାଳାପ ଉଭୟ ରାଗରେ ବର୍ଣ୍ଣିତ । ଶୁକ କଳହଂସ କେଦାର ରାଗରେ ପୁଷ୍ପକେତୁର ଗୁଣଗାନ କରୁଛି ଓ ଶାରୀ ଭୂପାଳ ରାଗରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ପ୍ରଶଂସା କରୁଛି । ଏ ଛନ୍ଦ-ଯୋଜନାରେ ପ୍ରତ୍ୟେକ ପଦ ସମବର୍ଣ୍ଣ—ବିଶିଷ୍ଟ, ଦ୍ୱ୍ୟର୍ଥବୋଧକ ଓ ଶୁକଶାରୀଙ୍କ କଥୋପକଥନ-ସବଳିତ । ଏଥିରୁ ଭଞ୍ଜକବିଙ୍କ ଛନ୍ଦୋବିନ୍ୟାସରେ ବିଚକ୍ଷଣତା, ସୁଦକ୍ଷତା ଓ ସ୍ୱାତନ୍ତ୍ର୍ୟ ଲକ୍ଷ୍ୟ କରାଯାଇପାରେ ।

## ଅଳଂକାର :—

ନୈଷଧ କାବ୍ୟରେ ପ୍ରସଙ୍ଗାନୁକୂଳ ବିଭିନ୍ନ ଶବ୍ଦାଳଙ୍କାର ଓ ଅର୍ଥାଳଂକାର ସଂଯୋଜିତ । ଶ୍ଳେଷ ଓ ଅନୁପ୍ରାସ ଶ୍ରୀହର୍ଷଙ୍କ ପ୍ରିୟ ଅଳଂକାର । ଶ୍ଳେଷର ମାଧୁରୀରେ ଶ୍ରୀହର୍ଷ ଶ୍ଳେଷକବି ରୂପରେ ପ୍ରତିଷ୍ଠିତ । ଉପମା, ଦୀପକ, ରୂପକ, ବକ୍ରୋକ୍ତି, ସମାସୋକ୍ତି, ଇତ୍ୟାଦି ବିବିଧ ଅଳଂକାର ନୈଷଧ କାବ୍ୟରେ ଓତପ୍ରୋତ । ଶ୍ରୀହର୍ଷଙ୍କ ପରି ଉପେନ୍ଦ୍ରଙ୍କ କାବ୍ୟରେ ମଧ୍ୟ ଅଳଂକାର-ବିଳାସ ହୃଦୟାନନ୍ଦ-ଦାୟୀ ହୋଇ ପାରିଛି । ଶ୍ରୀହର୍ଷଙ୍କ ପରି ଉପେନ୍ଦ୍ର ମଧ୍ୟ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ଶ୍ଳେଷ ଓ ଅନୁପ୍ରାସକୁ ମୁଖ୍ୟସ୍ଥାନ ଦେଇଛନ୍ତି । ଅନ୍ୟ ଅଳଙ୍କାର-ମାନ କାବ୍ୟରେଅନୁକୂଳଭାବରେ ଗର୍ଭିତ ହୋଇଛି ।

॥ ଦୁଇଶହ ବାର ॥

Digitized by PPRACHIN, SOA

ଶ୍ଳେଷ :—

ଶ୍ରୀହର୍ଷଙ୍କ ଆଦରଣୀୟ ଅଳଂକାର ହେଉଛି ଶ୍ଳେଷ । ନୈଷଧର କାବ୍ୟାରମ୍ଭରେ ହିଁ ସୂର୍ଯ୍ୟୋପମ ନଳଙ୍କ ବର୍ଣ୍ଣନା ପ୍ରସଙ୍ଗରେ ଶ୍ଳେଷର ଗୁରୁତ୍ୱ ସୁପ୍ରକାଶିତ । ଶ୍ଳେଷ ପ୍ରୟୋଗରେ ବିଚକ୍ଷଣତାର ପରିଚୟ ଦେଇ ଶ୍ରୀହର୍ଷ ନିଜକୁ "ଶ୍ଳେଷକବି" ବୋଲି ଦର୍ଶାଇଛନ୍ତି ହଂସ ମୁଖରେ । କବିଙ୍କ ଭାଷାରେ :—

"ଆତ୍ମନୀ ନ ଶ୍ଳେଷକବେର୍ଭବତ୍ୟା
ଶ୍ଳୋକଦ୍ୱୟାର୍ଥଃ ସୁଧିୟା ମୟା କିମ୍ ?"

(ନୈ· ୩/୬୯)

ପୁନଶ୍ଚ, ନିଜ କାବ୍ୟରେ ବୈଦର୍ଭୀ ରୀତିର ସମାବେଶ ସୂଚନା ଶ୍ଳେଷରେ ପ୍ରକାଶ କରିଛନ୍ତି । ନଳାନୁରାଗିଣୀ ଦମୟନ୍ତୀଙ୍କ ପ୍ରତି ପ୍ରଣୟ-ସନ୍ଦେଶ-ବାହକ ହଂସ ଶ୍ଳେଷ ମାଧ୍ୟମରେ ଦମୟନ୍ତୀଙ୍କ ସଦ୍‌ଗୁଣ ଓ ରାଜା ନଳଙ୍କ ଗୁଣଗ୍ରାହିତାର ପ୍ରଖ୍ୟାପନ କରିଛନ୍ତି । କବିଙ୍କ ଅଭିବ୍ୟକ୍ତିରେ :—

"ଧନ୍ୟାସି ବୈଦର୍ଭି ଗୁଣୈରୁଦାରୈ-
ର୍ଯୟା ସମାକୃଷ୍ୟତ ନୈଷଧୋଽପି ।"

(ନୈ. ୩/୧୧୬)

'ବୈଦର୍ଭୀ' ଶବ୍ଦର ଅର୍ଥ "ବୈଦର୍ଭ କାବ୍ୟ ରୀତି" ଓ "ବିଦର୍ଭ ଦେଶର ରାଜକୁମାରୀ ଦମୟନ୍ତୀ ।" 'ନୈଷଧ' ଶବ୍ଦର ଅର୍ଥ "ନୈଷଧ ଗ୍ରନ୍ଥ" ଓ "ନିଷଧ ଦେଶର ରାଜା ନଳ" । ପ୍ରସଙ୍ଗକ୍ରମେ ପାଣିନିଙ୍କ ବ୍ୟାକରଣ ସୂତ୍ର "ଅପବର୍ଗେ ତୃତୀୟା", ନ୍ୟାୟଦର୍ଶନର ପ୍ରବର୍ତ୍ତକ "ଗୋତମ" ବୈଶେଷିକ ଦର୍ଶନର ପ୍ରତିଷ୍ଠାତା "ଉଲୂକ" ଓ ବେଦାନ୍ତ ଦର୍ଶନ ପ୍ରଯୁକ୍ତ "ହଂସ" ପ୍ରଭୃତି ଶବ୍ଦ କବିଙ୍କ ଶ୍ଳେଷ-ପ୍ରୟୋଗର ନିଦର୍ଶନ । ନବମ ସର୍ଗରେ ବରୁଣଙ୍କ ପ୍ରତି "ଜଳାଧିପ", ଯମଙ୍କ ପ୍ରତି "ପରେତରାଜ", ଇନ୍ଦ୍ରଙ୍କ ପ୍ରତି "ମରୁତ୍ୱାନ୍" ଓ ଅଗ୍ନିଙ୍କ ପ୍ରତି "ଊର୍ଦ୍ଧ୍ୱମୁଖ" ଶବ୍ଦର ବ୍ୟବହାରରେ ଶ୍ଳେଷର ଚମତ୍କାରିତା ସୁସ୍ପଷ୍ଟ । ଦମୟନ୍ତୀଙ୍କ ସ୍ୱୟଂବର ସଭାରେ ସରସ୍ୱତୀଙ୍କ ଦ୍ୱାରା କଥିତ ପଞ୍ଚନଳୀ ବିଷୟକ ଶ୍ଳୋକ (ନୈ. ୧୩/୩୪) ରେ କବିଙ୍କ ଶ୍ଳେଷର ଉତ୍କର୍ଷ ପ୍ରତିପାଦିତ । ନୈଷଧର ପ୍ରାୟ ପ୍ରତ୍ୟେକ ଶ୍ଳୋକରେ ଏକାଧିକ ଅର୍ଥ ପ୍ରକାଶିତ । ଏ ସବୁ ବିଚାର କଲେ ଶ୍ରୀହର୍ଷଙ୍କ "ଶ୍ଳେଷକବି" ଆଖ୍ୟା ବିହିତ ଯଥାର୍ଥ ଓ ସମୀଚୀନ ।

ଭଞ୍ଜକବିଙ୍କ କାବ୍ୟରେ ମଧ୍ୟ ବୈଦର୍ଭୀ ରୀତିର ପ୍ରାଧାନ୍ୟ ଦୃଷ୍ଟିଗୋଚର ହୋଇଥାଏ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ପ୍ରଥମ ଛାନ୍ଦରେ ଶ୍ରୀଜଗନ୍ନାଥଙ୍କ ବର୍ଣ୍ଣନା ପ୍ରସଙ୍ଗରେ ଶ୍ଳେଷର ମହତ୍ତ୍ୱ ଅନଳ୍ପ । ଦ୍ୱିତୀୟ ଛାନ୍ଦରେ, ଚଂପାନଗରୀ

॥ ଦୁଇଶହ ତେର ॥

Digitized by PPRACHIN, SOA

ବର୍ଣ୍ଣନା ଶ୍ଳେଷାତ୍ମିକା ହୋଇଛି । ଏ ନଗରୀ ସ୍ୱର୍ଗପୁରୀ ଅମରାବତୀ ଓ ପାତାଳପୁରୀ ଠାରୁ ଉତ୍କୃଷ୍ଟ ବୋଲି ଶ୍ଳେଷରେ ବର୍ଣ୍ଣାଯାଇଛି । ଏ ଛାନ୍ଦରେ ବଦରିକା ତୀର୍ଥ ମଧ୍ୟ ଶ୍ଳେଷରେ ସ୍ୱର୍ଗନଗରୀର ସାମ୍ୟ ବହନ କରିଛି । ନୈଷଧରେ (୧୦/୧୩୪) ନାୟିକା-ସୌନ୍ଦର୍ଯ୍ୟ ବର୍ଣ୍ଣନା ଅପ୍‌ସରାମୟୀ ହୋଇଛି । ସ୍ମିତରେ ଗୌରୀ, ନେତ୍ରରେ ହରିଣୀ, ମଧୁର କଣ୍ଠରେ ବୀଣାବତୀ, କାନ୍ତିରେ ହେମା, ଅନ୍ୟ ଅଙ୍ଗାଦିରେ ମେନକା ତୁଳିତ ହୋଇଛନ୍ତି ଶ୍ଳେଷ ମାଧ୍ୟମରେ । ଭଞ୍ଜକବି ପଞ୍ଚଦଶ ଛାନ୍ଦରେ ଶ୍ଳେଷମାଧ୍ୟମରେ ନର୍ମଦା, ସୁରତରଙ୍ଗିଣୀ, ଯମୁନା, ସରସ୍ୱତୀ, ଚନ୍ଦ୍ରୋତ୍ପଳା, ରେବା ଓ ବାହୁଦା ନଦୀର ଉପସ୍ଥାପନ କରିଛନ୍ତି । ନାୟିକା ନଦୀମୟୀ ହୋଇଛି । ଷୋଡ଼ଶ ଛାନ୍ଦରେ ନାୟକ ପୁଷ୍ପକେତୁ ଠାରେ ଶ୍ଳେଷାର୍ଥରେ ବିଷ୍ଣୁଙ୍କର ଦଶାବତାର ସଂଯୋଜିତ । ତୃତୀୟ ଛାନ୍ଦରେ ନାୟିକା ଠାରେ ରାମାୟଣ କଥା ଓ ମହାଭାରତ କଥାର ଶ୍ଳେଷାତ୍ମକ ସମାବେଶ ମନୋହାରୀ । ଷଡ଼ବିଂଶ ଛାନ୍ଦରେ ଚନ୍ଦ୍ର ସହିତ ରାମ ଓ କୃଷ୍ଣଙ୍କ ସମାନତା ପ୍ରତିପାଦିତ ହୋଇଛି ଶ୍ଳେଷ ମାଧ୍ୟମରେ । ଏହା ବ୍ୟତୀତ ଶ୍ଳେଷର ଅନେକ ଉଦାହରଣ ପ୍ରସଙ୍ଗାନୁସାରେ ଉପଲବ୍ଧ ହୋଇଥାଏ ।

**ପଦଲାଳିତ୍ୟ :—**

ଶ୍ଳେଷାଲଂକାର ବ୍ୟତୀତ ଲଳିତ ପଦ ବିନ୍ୟାସ ହେଉଛି ମହାକବି ଶ୍ରୀହର୍ଷଙ୍କ ବିଶେଷତ୍ୱ । ନୈଷଧ କାବ୍ୟର ପଦ-ଲାଳିତ୍ୟ ଶ୍ରୀହର୍ଷଙ୍କ ମଞ୍ଜୁଳ ଅକ୍ଷର-ଦକ୍ଷତାର ସୁପରିଚାୟକ । ଭାରତୀୟ ସୂରିଗଣ ଘୋଷଣା କରି ଯାଇଛନ୍ତି:—

"ଉପମା କାଳିଦାସସ୍ୟ ଭାରବେରର୍ଥଗୌରବମ୍
ନୈଷଧେ ପଦଲାଳିତ୍ୟଂ ମାଘେ ସନ୍ତି ତ୍ରୟୋ ଗୁଣାଃ ॥"

ନୈଷଧର ପ୍ରତି ଶ୍ଳୋକରେ ପଦଲାଳିତ୍ୟ ଓ ଅନୁପ୍ରାସର ରମଣୀୟତା ଅନୁଭବ କରାଯାଇପାରେ । କବିଙ୍କ ମତରେ ଶ୍ଳୋକର ଶେଷପାଦରେ ପ୍ରଯୁକ୍ତ ଅନୁପ୍ରାସ ଅତ୍ୟନ୍ତ ଚମତ୍କାର ଜନକ ଓ ହୃଦୟ-ରଞ୍ଜକ (ନୈ ୧୩/୫୪) । ସମ୍ପୂର୍ଣ୍ଣ କାବ୍ୟରେ ଲଳିତ-ପଦ-ସଂଯୋଜନାର ବ୍ୟାପ୍ତି ଯୋଗୁଁ ଶ୍ରୀହର୍ଷ ଯେପରି ସଂସ୍କୃତ ସାହିତ୍ୟରେ ପଦଲାଳିତ୍ୟର କବି ରୂପରେ ଖ୍ୟାତନାମା, ଓଡ଼ିଆ ସାହିତ୍ୟରେ ଉପେନ୍ଦ୍ର ଯେପରି ଗୁଣଯୋଗୁଁ ବିଶିଷ୍ଟ ସ୍ଥାନର ଅଧିକାରୀ । ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ଉତ୍କଳ-ସାହିତ୍ୟରେ ମଧ୍ୟ ପୂର୍ବୋକ୍ତ ସଂସ୍କୃତାନୁରୂପ ଶ୍ଳୋକ ପ୍ରଚଳିତ ଓ ସୁପରିଚିତ ।

"ଉପମା ଭଞ୍ଜବୀରସ୍ୟ ତସ୍ୟୈବ ଗୂଢ଼ାର୍ଥଗୌରବମ୍ ।
କଲ୍ଲୋଳେ ପଦ-ଲାଳିତ୍ୟଂ ସନ୍ତି ଚନ୍ଦ୍ରାମଣୌ ତ୍ରୟଃ॥"

॥ ଦୁଇଶହ ଚଉଦ ॥

Digitized by PPRACHIN, SOA

ଭଞ୍ଜକବିଙ୍କ କାବ୍ୟ କବିତାର ସାମଗ୍ରିକ ସମୀକ୍ଷଣରେ ଉକ୍ତ ଉପମା ଓ ଅର୍ଥଗାମ୍ଭୀର୍ଯ୍ୟର ବିଶେଷତ୍ୱ ନିରୂପିତ ହୋଇଛି । ମାତ୍ର, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-କାବ୍ୟ ଯେତେବେଳେ ନୈଷଧାନୁସାରୀ ହୋଇଛି ଓ ଭଞ୍ଜକବି ନିଜେ ତାର ପ୍ରମାଣ ଦେଇଛନ୍ତି, ଏ କାବ୍ୟରେ ପଦଲାଳିତ୍ୟର ମନୋହର ସନ୍ନିବେଶ ପ୍ରସଙ୍ଗମଧ୍ୟେ ହୃଦୟଙ୍ଗମ କରାଯାଇପାରେ । ଏ ପ୍ରବନ୍ଧରେ ଉଦ୍ଧୃତ ଶ୍ଳୋକ ଓ ପଦମାନଙ୍କରେ ମଧ୍ୟ ପଦ-ବିନ୍ୟାସ-ଚାତୁର୍ଯ୍ୟ ଦର୍ଶନୀୟ ।

ରସ :—

ନୈଷଧ କାବ୍ୟ ଶୃଙ୍ଗାର-ରସ-ପ୍ରଧାନ । "ଶୃଙ୍ଗାର ଭଙ୍ଗ୍ୟା ମହାକାବ୍ୟେ ଚାରୁଣି ନୈଷଧୀୟ-ଚରିତେ ସର୍ଗୋ ନିସର୍ଗୋଜ୍ଜ୍ୱଳଃ"—ଏହି ଉକ୍ତି ନୈଷଧର ବହୁ ସ୍ଥଳେ ପରିଦୃଷ୍ଟ ହୋଇଥାଏ । ମହାଭାରତରେ ବିଷୟବସ୍ତୁକୁ ଉପଜୀବ୍ୟ କରିଥିଲେ ହେଁ କବିଙ୍କ ଉଦ୍ଦେଶ୍ୟ ଥିଲା କେବଳ ଶୃଙ୍ଗାର-ରସର ପ୍ରାଧାନ୍ୟରେ କାବ୍ୟ-ପ୍ରଣୟନ କରିବା । ଏଥିପାଇଁ "ନଳ ଦମୟନ୍ତୀଙ୍କ ପରିଣୟ-ପରବର୍ତ୍ତୀ ବିଷୟମାନ, ଯଥାः— କଳିର ଦୌରାତ୍ମ୍ୟ ଯୋଗୁଁ ଦ୍ୟୂତ-କ୍ରୀଡାରେ ନଳଙ୍କ ପରାଜୟ, ଦମୟନ୍ତୀ ଠାରୁ ନଳଙ୍କ ବିଚ୍ଛେଦ, ପୁନର୍ମିଳନ ଆଦି ଏ କାବ୍ୟରେ ବର୍ଣ୍ଣିତ ହୋଇ ନାହିଁ । ପ୍ରସଙ୍ଗକ୍ରମେ କଳିର ଆବିର୍ଭାବ ଘଟିଥିଲେ ହେଁ ନଳ-ଦମୟନ୍ତୀଙ୍କ ବିବାହ-ପର୍ଯ୍ୟନ୍ତ ଘଟଣା କାବ୍ୟଗାତ୍ରରେ ରଚିତ ।" ଏ ଦୃଷ୍ଟିରୁ ନୈଷଧ ଏକ ସମ୍ପୂର୍ଣ୍ଣ ମହାକାବ୍ୟ । ଶ୍ରୀହର୍ଷଙ୍କ ପରି, ଭଞ୍ଜକବି ମଧ୍ୟ ରସେନ୍ଦ୍ର ଶୃଙ୍ଗାରକୁ କେନ୍ଦ୍ର କରି କାବ୍ୟ ରଚନା କରିଛନ୍ତି । ସ୍ୱୀୟ କାବ୍ୟର ବିଷୟବସ୍ତୁ ବର୍ଣ୍ଣନାରେ ଭଞ୍ଜକବିଙ୍କ କଳ୍ପନା-ବିଳାସ ପ୍ରଣିଧାନ ଯୋଗ୍ୟ । ଦମୟନ୍ତୀଙ୍କ ଅଙ୍ଗ-ବର୍ଣ୍ଣନା ପ୍ରସଙ୍ଗରେ ଶୃଙ୍ଗାର ଅଙ୍ଗୀରସ ରୂପେ ବର୍ଣ୍ଣିତ । ଦମୟନ୍ତୀ ଶୃଙ୍ଗାର-ସାଗର-ସମ୍ଭୂତା ଲକ୍ଷ୍ମୀ ରୂପରେ ଓ ଶୃଙ୍ଗାର-ତରଙ୍ଗିଣୀ ରୂପରେ ଚର୍ଚ୍ଚିତା (ନୈ. ୧୦/୧୬୭) । ଭଞ୍ଜକବିଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ବେଶ ରଚନା ପ୍ରସଙ୍ଗରେ ନାୟିକା ଲାବଣ୍ୟ-ସିନ୍ଧୁ ରୂପରେ ବର୍ଣ୍ଣିତା (କୋ. ୧୨/୧୮) । ଉଭୟ କାବ୍ୟରେ ସମ୍ଭୋଗ ଶୃଙ୍ଗାର ଓ ବିପ୍ରଲମ୍ଭ ଶୃଙ୍ଗାରର ମହତ୍ତ୍ୱ ପ୍ରକଟିତ । ପ୍ରସଙ୍ଗକ୍ରମେ ଅନ୍ୟ ରସ ଓ ଭାବରାଶିର ଅଭିବ୍ୟକ୍ତି ଘଟିଛି ।

ପରିଣୟ ପରବର୍ତ୍ତୀ ବୃତ୍ତାନ୍ତରେ କାବ୍ୟଦ୍ୱୟରେ ସମ୍ଭୋଗ ଶୃଙ୍ଗାର ବିଶେଷ ରୂପେ ଅଭିବ୍ୟକ୍ତ । ଏ ପ୍ରସଙ୍ଗରେ ଶୃଙ୍ଗାରର ଅଶ୍ଳୀଳତା ବିଦ୍ୟମାନ । ନୈଷଧକାର ଦମୟନ୍ତୀଙ୍କ ନଖ-ଶିଖ ବର୍ଣ୍ଣନା ମଧ୍ୟରେ ଅଧମାଙ୍ଗର ଚିତ୍ରଣ କରିବାକୁ ମଧ୍ୟ ଛାଡି ନାହାନ୍ତି । ଉପେନ୍ଦ୍ର ନିଜ କାବ୍ୟରେ ଏତାଦୃଶ ଚିତ୍ରଣର ଉପେକ୍ଷା କରି ନାହାନ୍ତି,



Digitized by PPRACHIN, SOA

ବିଶେଷତଃ ଲାବଣ୍ୟବତୀରେ । ଏ ପରିପ୍ରେକ୍ଷୀରେ ମହାକବି କାଳିଦାସ ମଧ୍ୟ ସ୍ମରଣୀୟ । କୁମାରସମ୍ଭବର ଅଷ୍ଟମ ସର୍ଗରେ ଶିବ-ପାର୍ବତୀଙ୍କ ସମ୍ଭୋଗ ବର୍ଣ୍ଣନା ରହିଛି । ପୂଜ୍ୟ ଦେବଦେବୀଙ୍କ ଶୃଙ୍ଗାର ବର୍ଣ୍ଣନା ଦୋଷାବହ ବୋଲି ମମ୍ମଟ ପ୍ରଭୃତି ଆଳଂକାରିକ ଆଗ୍ରହୀ ସମାଲୋଚନା କରିଛନ୍ତି । ବିବୃତ-ଜଘନା ଚପଳଙ୍କର ଉପେକ୍ଷଣୀୟା ନୁହେ ବୋଲି ମେଘଦୂତର ଉକ୍ତି ମଧ୍ୟ ସ୍ମରଣଯୋଗ୍ୟ । ବିଶ୍ୱନାଥ କବିରାଜ ସ୍ୱୀୟ ସାହିତ୍ୟ ଦର୍ପଣ (୭/୧୬) ରେ ଲେଖିଛନ୍ତି, ସୁରତକ୍ରୀଡ଼ାଦିର ବର୍ଣ୍ଣନା ପ୍ରସଙ୍ଗରେ କାବ୍ୟରେ ଅଶ୍ଳୀଳ ଚିତ୍ରଣ ଦୋଷାବହ ନୁହେ, ବରଂ ତାହା ଏକ ଗୁଣ । ତେବେ ବିଭିନ୍ନ ବିଦ୍ୱାନ୍‌ଙ୍କ ମତ ଶୃଙ୍ଗାର ରସ ବିଷୟରେ ଭିନ୍ନ ହେଲେହେଁ ତତ୍କାଳୀନ ସଂସ୍କୃତ ସାହିତ୍ୟର ପ୍ରଭାବରେ ଉପେନ୍ଦ୍ରଭଞ୍ଜ ନିଜ କାବ୍ୟରେ ସମ୍ଭୋଗ ଶୃଙ୍ଗାରର ସମାବେଶ କରିଛନ୍ତି । ଆଧୁନିକ ସମାଲୋଚକ ଉପେନ୍ଦ୍ରଙ୍କୁ, ଅଶ୍ଳୀଳତାର ଦୋଷ ଦେଇ ନିଜ ଗୌରବ ପ୍ରକଟ କରିବା ପୂର୍ବରୁ ତଦାନୀନ୍ତନ ରୀତି-ସାହିତ୍ୟର ବିଶ୍ଳେଷଣ କରିବା ସର୍ବାଦୌ ଆବଶ୍ୟକ ।

**ଚରିତ୍ର :—**

ଶୃଙ୍ଗାର-ପ୍ରଧାନ କାବ୍ୟମାନଙ୍କରେ ନାୟକ-ନାୟିକାମାନଙ୍କ ଚରିତ୍ର ପ୍ରାୟ ସର୍ବ-ସୁରୁଚି-ସମ୍ପନ୍ନ ହୋଇଥାଏ । ନୈଷଧକାର ଅଳ୍ପ କେତେକ ଚରିତ୍ର ମାଧ୍ୟମରେ ଆଦର୍ଶ ସ୍ଥାନୀୟ ମାନବୀୟ ଗୁଣ ଓ ଅନୁଭୂତିକୁ ନିହିତ କରିଛନ୍ତି । ନିଷଧରାଜ ନଳ ନୈଷଧ ମହାକାବ୍ୟର ନାୟକ । ସେ ପୁଣ୍ୟଶ୍ଳୋକ, ପ୍ରାତଃ-ସ୍ମରଣୀୟ, କାବ୍ୟର ଧୀରୋଦାତ୍ତ ନାୟକ, ବିନୟୀ, ତ୍ୟାଗୀ, ପ୍ରଜାବତ୍ସଳ, ବୁଦ୍ଧିମାନ୍, ଧୈର୍ଯ୍ୟବାନ୍, କଳାପ୍ରବୀଣ, ଶୃଙ୍ଗାର ପ୍ରିୟ, ବୀର, ତେଜସ୍ୱୀ, ଧାର୍ମିକ, ଆତ୍ମଜ୍ଞାନୀ, ଗୁଣଗ୍ରାହୀ ଓ ବିଦ୍ୱତା-ସମ୍ପନ୍ନ । ଭଞ୍ଜକବିଙ୍କ କାବ୍ୟ ନାୟକ ମଧ୍ୟ ପ୍ରାୟ ତଦ୍ରୂପ ରୂପ ଓ ଗୁଣର ଅଧିକାରୀ । କୋଟିବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ରାଜପୁତ୍ର ପୁଷ୍ପକେତୁ କ୍ଷତ୍ରିୟ-କୁଳଜ, ତେଜସ୍ୱୀ, ବିଦ୍ୟାନୁରାଗୀ, କଳାପ୍ରିୟ, ବୀର, ବିନୟୀ, ତ୍ୟାଗୀ ଓ ଅନେକ ସଦ୍‌ଗୁଣ-ବିଭୂଷିତ । ଉଭୟଙ୍କ କାବ୍ୟରେ ନାୟକମାନେ ଶାଳୀନତା, ମହାନୁଭବତା ଓ ରସିକତା ମହତ୍ତ୍ୱ ପ୍ରଶଂସନୀୟ । ଉଭୟଙ୍କ ଅନୁରାଗ ଅଚ୍ୟୁତ ଓ ଅଟଳ । ଉଭୟେ ଆଦର୍ଶ ପ୍ରେମିକ ଓ ଆଦର୍ଶ ଚରିତ୍ର ।

ନାୟିକା ଭାବରେ ମଧ୍ୟ ଶ୍ରୀହର୍ଷଙ୍କ ଦମୟନ୍ତୀ ଓ ଭଞ୍ଜଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ଉଚ୍ଚକୁଳ-ସମ୍ଭୂତା, ସତୀ, ବିଦୁଷୀ, ସୁନ୍ଦରୀ, ମୁଗ୍‌ଧା, ବିନୀତା, ପତିପ୍ରାଣା, ଲଜ୍ଜାବତୀ, ଶୃଙ୍ଗାର ପ୍ରିୟା, କଳାବିଦଗ୍‌ଧା ଓ ସୁଗୁଣବତୀ । ଉଭୟ ନାୟିକାଙ୍କ ଠାରେ ନାରୀସୁଲଭ ସୁଗୁଣ ବିଦ୍ୟମାନ । ବିରହାବସ୍ଥାରେ; ବିହାର-ବେଳାରେ,



Digitized by PPRACHIN, SOA

ସଖୀମେଳରେ ଓ ଅନ୍ୟ ଅବସ୍ଥାରେ ନାୟିକାଯୁଗଳଙ୍କ ସମାନାଚରଣ ଲକ୍ଷିତ ହୋଇଥାଏ ।

ନଳ ବିରହରେ ସନ୍ତପ୍ତା ଦମୟନ୍ତୀଙ୍କର ଚନ୍ଦ୍ର ପ୍ରତି ଭର୍ତ୍ସନାଭରା ଉକ୍ତି ସହିତ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ-କାବ୍ୟରେ ରାଜପୁତ୍ର ପୁଷ୍ପକେତୁଙ୍କ ବିରହାବସ୍ଥା ବର୍ଣ୍ଣନା ତୁଳିତ ହୋଇପାରେ ।

''ବିଧୁରମାନ ତସ୍ୟା ଯଦି ଭାନୁମାନ୍
କଥମହୋ ସ ତୁ ତଦ୍ଦ୍ଵୟଂ ତଥା ।
ଅପି ବିୟୋଗ-ଭରାଷ୍ଟୁଟନ-ସ୍ଫୁଟୀ-
କୃତ-ଦୃଷତ୍ତ୍ଵମକଜ୍ଵଳଦଂଶୁଭିଃ ॥''

(ନୈ. ୪/୬୦)

ବିରହ ସମୟରେ ଚନ୍ଦ୍ରକିରଣ ଦମୟନ୍ତୀଙ୍କ ଅସହ୍ୟ ହୋଇଛି । ତେଣୁ ଚନ୍ଦ୍ର ପ୍ରଖରାଂଶୁ ସୂର୍ଯ୍ୟ ରୂପ ଧାରଣ କରିଛି । ଶୀତଳ ଜ୍ୟୋତ୍ସ୍ନାରେ ମଧ୍ୟ କଠିନ ହୃଦୟ ପଥର ପରି ରହିଛି ଅବିଦୀର୍ଣ୍ଣ ଭାବରେ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ପୁଷ୍ପକେତୁଙ୍କ ବିରହ ଦର୍ଶାଇ ଭଞ୍ଜକବି କହିଛନ୍ତି :—

''ଚନ୍ଦ୍ରମା ଭାନୁ ଚନ୍ଦ୍ରମା ଭାନୁ ସମାନ ତାପୁ ଅଛୁ ।
ଚଉତେ ଶୀଳା ଚଉତେ ଶିଳା ହେବାର ନୋହେଁ କିଛୁ ॥''

(କୋ. ୧୭/୧୧)

ପୁଷ୍ପକେତୁ ପ୍ରତି ଚନ୍ଦ୍ର କିରଣ ଓ କର୍ପୂର ସୂର୍ଯ୍ୟ ସମାନ ଉତ୍ତପ୍ତ ଅନୁଭୂତ ହୋଇଛି । ତେଣୁ ସୁଶୀଳା ସ୍ତ୍ରୀ ନାୟକ ପ୍ରତି ପାଷାଣ ପରି କଠୋର ଆଚରଣ ପ୍ରଦର୍ଶନ ଉଚିତ ନୁହେଁ ବୋଲି ପୁଷ୍ପକେତୁ ମୁଖରେ ଦର୍ଶାଇଛନ୍ତି । ଏଥିରେ ନୈଷଧୀୟ ଭାବର ସାମ୍ୟ ସାମାନ୍ୟ ଥିଲେହେଁ ଭଞ୍ଜ କବିଙ୍କ ବୈଶିଷ୍ଟ୍ୟ ପ୍ରତିପାଦିତ । ନୈଷଧରେ ଦମୟନ୍ତୀଙ୍କ ତାପଶାନ୍ତି ପାଇଁ ଯେପରି ''ନଳଦ'' (ବେଣାଚେର ଓ ନଳପ୍ରଦାନକାରୀ) ଆବଶ୍ୟକ ହୋଇଛି, ଉପେନ୍ଦ୍ରଙ୍କ ଲାବଣ୍ୟବତୀର ତାପଶାନ୍ତି ପାଇଁ ସେପରି ''ଚନ୍ଦ୍ରଭାନୁ'' (ଚନ୍ଦ୍ର କିରଣ ଓ ରାଜପୁତ୍ର ଚନ୍ଦ୍ରଭାନୁ) । ଶ୍ଳେଷାର୍ଥ ପ୍ରସଙ୍ଗରେ ଲାବଣ୍ୟବତୀର ଏ କଥା ସ୍ମରଣୀୟ ।

ନାୟକର ସଦ୍‌ଗୁଣାବଳୀ-ଚୟନରେ ନୈଷଧୀୟ ଭାବର ପ୍ରତିଫଳନ ଭଞ୍ଜଙ୍କ କୃତିରେ ଉପଲବ୍ଧ କରାଯାଇପାରେ । ନଳଙ୍କ ବିଦ୍ୟାନୁରାଗ ଓ କଳା-କୌଶଳ ଦର୍ଶାଇ ଶ୍ରୀହର୍ଷ କହିଛନ୍ତି :—



Digitized by PPRACHIN, SOA

ଅମୁଷ୍ୟ ବିଦ୍ୟା ରସନାଗ୍ର ନର୍ତ୍ତକୀ
ତ୍ରୟୀବ ନୀତାଙ୍ଗଗୁଣେନ ବିସ୍ତରମ୍ ।
ଅଗାହ୍ୱିତାଷ୍ଟାଦଶତାଂ ଜିଗୀଷୟା
ନବଦ୍ୱୟ-ଦ୍ୱୀପ-ପୃଥଗ୍-ଜୟ-ଶ୍ରିୟାମ୍ ॥" (ନୈ ୧/୫)

ଚତୁର୍ବେଦ, ଷଡ଼ଙ୍ଗ, ମୀମାଂସା, ନ୍ୟାୟ, ଧର୍ମଶାସ୍ତ୍ର, ପୁରାଣ, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବ, ଅର୍ଥଶାସ୍ତ୍ର— ଏହି ଅଷ୍ଟାଦଶ ବିଦ୍ୟା ନଳଙ୍କ ଜିହ୍ୱାଗ୍ରରେ ନର୍ତ୍ତକୀ ପରି ବିରାଜିତା । ବ୍ୟାକରଣାଦି ବେଦାଙ୍ଗ ଗୁଣ ଦ୍ୱାରା ବେଦତ୍ରୟୀ ଯେପରି ବିସ୍ତୃତି ଲାଭ କରିଛୁ, ସେହିପରି ଶିକ୍ଷା, ଅଭ୍ୟାସ ଆଦି ଗୁଣ ଦ୍ୱାରା ନଳଙ୍କ ବିଦ୍ୟା ପ୍ରସାରିତ ହୋଇଛି । ନଳଙ୍କ ଜୟଲକ୍ଷ୍ମୀ ଅଷ୍ଟାଦଶ ଦ୍ୱୀପରେ ସ୍ୱତନ୍ତ୍ର ଭାବରେ ଅବସ୍ଥାନ କରିଥିବାରୁ ସେ ଦ୍ୱୀପସବୁକୁ ଜୟ କରିବା ଲାଗି ନଳଙ୍କ ବିଦ୍ୟା ସତେକି ଅଷ୍ଟାଦଶ ପ୍ରକାର ପରିତେ ହୋଇଛି ବୋଲି ଶ୍ରୀହର୍ଷ କଳ୍ପନା କରିଛନ୍ତି ।

ଭଞ୍ଜକବି ରାଜପୁତ୍ର ପୁଷ୍ପକେତୁଙ୍କ ବିଜ୍ଞତା ଓ ବିଦ୍ୟାନିପୁଣତା ବର୍ଣ୍ଣନା କରି କହିଛନ୍ତି :—

"କର୍ତ୍ତା ପରି ବ୍ୟାକରଣେ । ପାଣିନିସ୍ୱ ମନେ ଗୁଣେ ।
କହିବା ଏହା ସଙ୍ଗତି । ହେବ ବ୍ୟୁତ୍ପତ୍ତି ଯେ ॥
ମୀମାଂସା ବେଦ ବେଦାନ୍ତେ । ଟୀକା ପୁସ୍ତକ ଏ ସତେ ।
ଜୈମିନି ବିଖନ ବ୍ୟାସ । ପ୍ରଶଂସି ତୋଷ ଯେ ॥
କଣ୍ଠାଣେ କଟ ଅଞ୍ଜଳି । କରେ ଚପଟଞ୍ଜଳି ।
ବଇଶେଷିକ ସାଂଖ୍ୟରେ । ସାକ୍ଷୀ ପ୍ରକାରେ ଯେ ॥
ବେକରୂପେ ନ୍ୟାୟବନ୍ତ । ଏହିରୂପେ ଜାଣେ ମନ୍ତ ।
ଅଲଙ୍କାର ଅଲଙ୍କାର । ଦୁଇପ୍ରକାର ସେ ॥"
(କୋ. ୪/୩୦-୩୩) ଇତ୍ୟାଦି ।

ଲାବଣ୍ୟବତୀର ପ୍ରଥମ ଛାନ୍ଦର ଶେଷଭାଗରେ (୧୨୫-୨୮) ଚନ୍ଦ୍ରଭାନୁଙ୍କ ପାଣ୍ଡିତ୍ୟ-ପ୍ରସଙ୍ଗ ମଧ୍ୟ ଭଞ୍ଜ କବିଙ୍କ ଏତାଦୃଶ ଛନ୍ଦରେ ସାମ୍ୟଅର୍ଜନ କରିଛି ।

ଭଞ୍ଜଙ୍କ ନାୟକର ଅଙ୍ଗ ବର୍ଣ୍ଣନାରେ ମଧ୍ୟ ନୈଷଧୀୟ ଭାବ ପରିଫଳିତ । ନିଷଧରାଜ ନଳଙ୍କ ଦୃଢ଼ ବାହୁ ଓ ପ୍ରଶସ୍ତ ବକ୍ଷର ବର୍ଣ୍ଣନା କରି ଶ୍ରୀହର୍ଷ କହିଛନ୍ତି :—

"ଅମୁଷ୍ୟ ଦୋର୍ଭ୍ୟାମରିଦୁର୍ଗ-ଲୁଣ୍ଠନେ
ଧ୍ରୁବଂ ଗୃହୀତାର୍ଗଲ-ଦୀର୍ଘ-ପୀନତା ।
ଉରଃଶ୍ରିୟା ତତ୍ର ଚ ଗୋପୁର-ସ୍ଫୁରତ୍—
କପାଟ ଦୁର୍ଦ୍ଧର୍ଷ-ତିରଃ ପ୍ରସାରିତା ॥" (ନୈ. ୧/୨୨)



Digitized by PPRACHIN, SOA

କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ନାୟକ ପୁଷ୍ପକେତୁଙ୍କର ବକ୍ଷ ବର୍ଣ୍ଣନା ମଧ୍ୟ ତଦ୍ରୂପ । ସଖୀଗଣଙ୍କ ବାର୍ତ୍ତାଳାପ ପ୍ରସଙ୍ଗରେ ଭଞ୍ଜକବି କହିଛନ୍ତି ।

"ବିସ୍ତାର ଉର କି ବିପୁଟ କପାଟ ରମା ଚିତ୍ତ-ବନ୍ଦୀ-ଦୁର୍ଗ,
ବୟସୀ ଭଣି ମନାସି ଆସିଥିଲି ତୋ ସ୍ତନ-ସଂପୁଟ ଯୋଗ
ରେ ବାଳା । ଅଚ୍ଛି ପ୍ରବାଳ ବଉଳ ମାଳା ।
ଦେଇଗଲି ପଦକ-ଝିରୁଳା । ଶୁଣି ହସିଲି ଆନ କହିଲି ।"

(କୋ. ୧୬/୧୪)

ପୁଷ୍ପକେତୁଙ୍କର ପ୍ରଶସ୍ତ ବକ୍ଷ ଯାଉଁଳି କବାଟ ପରି । ତାହା ରମଣୀମାନଙ୍କର ମନକୁ ବନ୍ଦୀ କରିଥିବା ଦୁର୍ଗର କବାଟ ତୁଲ୍ୟ । ସଖୀ ହାସ-ଛଳରେ ଉତ୍ତର ଦେଇ ଅନ୍ୟ କଥା କହିଛି । କବାଟରେ ଫରୁଆ ପରି ବଉଳମାଳା ଓ ଝିରୁଳା ଯେପରି ଖୋଲା ହୋଇଥାଏ, ତା' ସଙ୍ଗେ ସୁନ୍ଦରୀର ସ୍ତନ-ସାମ୍ୟ ପ୍ରଦର୍ଶିତ । ଏଥିରେ ଭଞ୍ଜକବିଂକ ମୌଳିକତାର ସମନ୍ୱୟ ଘଟିଛି ।

ନଳଙ୍କର ବୀରତ୍ୱ, ବଦାନ୍ୟତା, ଧାର୍ମିକନିଷ୍ଠା ଆଦିର ବର୍ଣ୍ଣନାରେ ଭଞ୍ଜକବି ନୈଷଧ ଦ୍ୱାରା ପ୍ରଭାବିତ । ରାଜା ବିଶ୍ୱାନନ୍ଦନଙ୍କ ଏତାଦୃଶ ଗୁଣାବଳୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ (୨/୨୪-୨୫) ରେ ଲକ୍ଷ୍ୟ କରିଯାଇପାରେ । ଯୁଦ୍ଧଯାତ୍ରାକାଳୀନ ସେନାଙ୍କ ଅଶ୍ୱଖୁରୋତ୍ଥିତ ଧୂଳି ଅମୃତ-ସମୁଦ୍ରରେ ପତିତ ହେବା ଯୋଗୁଁ ତାହା ଅମୃତ-ସାଗର-ସମ୍ଭୂତ ଚନ୍ଦ୍ରଂକ କଳଂକ ରୂପେ ପରିଣତ ହୋଇଛି ବୋଲି ଶ୍ରୀହର୍ଷ କଳ୍ପନା କରିଛନ୍ତି (ନୈ. ୧/୮) । ଭଞ୍ଜକବି ରାଜା ବିଶ୍ୱାନନ୍ଦଙ୍କ ବୀରତ୍ୱ ଓ ତେଜସ୍ୱିତାର ବର୍ଣ୍ଣନା ପ୍ରସଙ୍ଗରେ ପୂର୍ବୋକ୍ତ ନୈଷଧୀୟ ଭାବରେ ସାମାନ୍ୟ ପ୍ରଭାବିତ (କୋ. ୨/୩୩-୩୪) । ବିଶ୍ୱାନନ୍ଦଙ୍କ ସେନାବାହିନୀର ଯାତ୍ରା ସମୟରେ ଉଦ୍‌ଗତ ଧୂଳି ସୂର୍ଯ୍ୟତେଜକୁ ଗ୍ରାସ କରିବା ଯୋଗୁଁ ଜ୍ୟୋତିଷ ସମ୍ମତ ରାହୁଗ୍ରସ୍ତ ସୂର୍ଯ୍ୟୋପରାଗ ପରି ପରିଲକ୍ଷିତ ହୋଇଛି । ଏତଦ୍‌ବ୍ୟତୀତ ଅନ୍ୟ ବହୁସ୍ଥଳରେ ନୈଷଧର ପ୍ରଭାବ ସୁଧୀଜନ-ଭାବ୍ୟ ।

## ନାୟିକାର ସୌନ୍ଦର୍ଯ୍ୟ :—

କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ସୌନ୍ଦର୍ଯ୍ୟ-ଚିତ୍ରଣ ପ୍ରସଙ୍ଗରେ ଭଞ୍ଜକବି ଶ୍ରୀହର୍ଷଙ୍କ ଭାବ ଆହରଣ କରି ସ୍ୱାତନ୍ତ୍ର୍ୟର ସଂଯୋଜନାରେ କାବ୍ୟ-ବର୍ଣ୍ଣନକୁ ସୁନ୍ଦରତର କରିଛନ୍ତି । ନିମ୍ନ କେତେକ ଉଦାହରଣରୁ ଭାବ-ସାମ୍ୟ ଓ ସ୍ଥଳେ ସ୍ଥଳେ ଶୈଳୀ ସାମ୍ୟ ଲକ୍ଷ୍ୟ କରିଯାଇପାରେ ।

॥ ଦୁଇଶହ ଷଣଇଶ ॥

Digitized by PPRACHIN, SOA

ଦମୟନ୍ତୀଙ୍କ ଯେଉଁ କେଶକଲାପ ରହିଛି, ତାହା ପଶୁର ପଶ୍ଚାଦ୍‌ଭାଗର ଚାମର ପୁଚ୍ଛ ସହିତ ତୁଳନୀୟ ନୁହେଁ ।

"ଚକୁର-ପ୍ରକରଂ ଜୟନ୍ତ ତେ
ବିଦୁଷୀ ମୂର୍ଦ୍ଧ୍ନି ସା ବିଭର୍ତି ଯାନ୍ ।
ପଶୁନାପ୍ୟପୁରସ୍କୃତେନ ତତ୍
ତୁଳନାମିଚ୍ଛତୁ ଚାମରେଣ କଃ ॥"

(ନୈ. ୨/୨୦)

ଉପେନ୍ଦ୍ର ସମଗ୍ରତରେ କହିଛନ୍ତି :—

"ବର୍ଣ୍ଣିନୁ ଆଇଟି ଗୁରୁ ଚକୁର । ବିବନ୍ଧୁ ଯା ସମ ଶ୍ୟାମ ଚାମର ।
ବନ୍ଧନ ଉଦ୍ୟମେ ଧରିବା ବେଳେ । ମୟୂର ପୁଚ୍ଛ ଲକ୍ଷ୍ୟ କାହା ତୁଲେ ସେ
ଏ ଲକ୍ଷ୍ୟ ନ କଲେ ପଛ ଯେ,
ତେବେ ମୃଗ ଖଗ ବିବେକରୁ ଆମ୍ଭ ବିବେକ ହୋଇବ ତୁଚ୍ଛ ଯେ ॥"

(କୋ. ୭/୧୩)

କୋଟିବ୍ରହ୍ମାଣ୍ଡ ସୁନ୍ଦରୀର କେଶ ମୁକୁଳା ବେଳେ କଳା ଚାମର ଏବଂ ବାନ୍ଧିବା ପାଇଁ ହସ୍ତରେ ଧାରଣ କଲାବେଳେ ମୟୂରପୁଚ୍ଛ ସହିତ ସମାନ ନୁହେ । କାରଣ, ପଶୁପକ୍ଷୀ ଚାମର ଓ ପୁଚ୍ଛକୁ ପଛରେ ବହନ କରିବାର ନିକୃଷ୍ଟତା ହେତୁ, ତା' ସଙ୍ଗେ ଉତ୍କୃଷ୍ଟ କେଶ ତୁଳନୀୟ ନୁହେ । ଦମୟନ୍ତୀଙ୍କ କେଶ ସହିତ ମୟୂର ପୁଚ୍ଛର ସାମ୍ୟ-ଅଯୋଗ୍ୟତା (ନୈ. ୭/୨୨) ·ଏ ପ୍ରସଙ୍ଗରେ ସ୍ମରଣୀୟ । ସୁଭଦ୍ରା ପରିଣୟ କାବ୍ୟରେ ମଧ୍ୟ ସୁଭଦ୍ରାଙ୍କ କେଶ ପାଶର ବର୍ଣ୍ଣନାରେ ଉକ୍ତ ମୟୂର ପୁଚ୍ଛ ବିଷୟକ ନୈଷଧୀୟ ଭାବର ପ୍ରତ୍ୟକ୍ଷ ପ୍ରଭାବ ଅନୁଭୂତ ହୋଇଥାଏ ।

ଦମୟନ୍ତୀଙ୍କ ମୁଖ ଚନ୍ଦ୍ର ସହିତ ତୁଳିତ । ଏହି ମୁଖରୂପୀ ଚନ୍ଦ୍ର ପଦ୍ମର ସଙ୍କୋଚକାରୀ ବା ଲେପକାରୀ ।

"ନିଃଶଙ୍କ-ସଙ୍କୋଚିତ-ପଙ୍କଜୋଽୟମ୍
ଅସ୍ୟାମୁଦୀତୋ ମୁଖମିନ୍ଦୁରସ୍ତୁ ।"

(ନୈ. ୭/୬୭)

ଭକ୍ତକବି ନାୟିକାର ମୁଖ-ଚିତ୍ରଣରେ, ପଦ୍ମର ବଦନ-ସାମ୍ୟ-ହୀନତା ଦର୍ଶାଇ କହିଛନ୍ତି :—

"ମୁଖ ଛବି ଧ୍ୟାନରେ ଲୀନ । ସଙ୍କୋଚେ ନଳିନ ମଳିନ ।"

(କୋ. ୫/୧୦)

ପାଟଳୀପୁରର ରାଜପୁତ୍ର ପୁଷ୍ପକେତୁଙ୍କ ଆଗରେ କବିଯୁଗଳ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ବର୍ଣ୍ଣନା କରିଛନ୍ତି ।

॥ ଦୁଇଶହ କୋଡ଼ିଏ ॥

Digitized by PPRACHIN, SOA

"ରବିକର-କଞ୍ଜ ଛବି ବଦନ । ଦୁଇଗୁଣ କରି ନାହିଁ ସଦନ ।
କମଳ-ଦର୍ପଣ-ଚନ୍ଦ୍ର-ବଦନା । ବୋଇଲେ ତେବେ ହେଉ ସମ୍ଭାବନା ସେ
ଏ ଉପଲକ୍ଷଣା ଛନ୍ଦ ସେ ।
କେବଳ ସୁକୃତ ଥିଲାକୁ ଚରଣ ଆଗରେ ପଡ଼ିଛି ପଦ୍ମ ସେ ।"

(କୋ ୭/୧୦)

ଭଞ୍ଜକବିଙ୍କ ମତରେ, ପଦ୍ମ, ଦର୍ପଣ ଓ ଚନ୍ଦ୍ର ପ୍ରକୃତରେ ମୁଖର ଉପମା ନୁହନ୍ତି । ପଦ୍ମଠାରେ କଳା ଓ ଆହ୍ଲାଦ ନ ଥିବାରୁ ସେ ସୁନ୍ଦରୀର ମୁଖ-ସାମ୍ୟ ବହନ କରିବାରେ ଅଯୋଗ୍ୟ । ପୁଣ୍ୟବଳରୁ ସେହି ପଦ୍ମ ସୁନ୍ଦରୀର ପାଦ ସହିତ ତୁଳ୍ୟ । ପୁଷ୍ପକେତୁଙ୍କ ସୁନ୍ଦରୀ-ଦର୍ଶନାନୁଚିନ୍ତା ପ୍ରସଙ୍ଗରେ ମଧ୍ୟ ପଦ୍ମଠାରୁ ମୁଖର ଉତ୍କର୍ଷ ଦର୍ଶାଇ ଭଞ୍ଜକବି କହିଛନ୍ତି :—

"କୋଟି ଅମ୍ବୁଜକୁ ନିନ୍ଦୁଥିବ ସେ ଲପନ ।"

(କୋ ୧୧/୪)

ନୈଷଧରେ ପଲ୍ଲବ, ପଲାଶ ପ୍ରଭୃତି ଶବ୍ଦର ସଙ୍ଖ୍ୟା ନିରୂପଣ କରିବାରେ ଶ୍ରୀହର୍ଷ ଦକ୍ଷତା ପ୍ରଦର୍ଶନ କରିଛନ୍ତି । ଭଞ୍ଜକବି ସେ ସ୍ଥଳରେ ମୁକ୍ତା, ମଧୁ, ଆନନ ପ୍ରଭୃତି ଶବ୍ଦର ସଙ୍ଖ୍ୟା ନିରୂପଣ କରିଛନ୍ତି । 'ଆନନ' ଶବ୍ଦ ମୁଖର ପର୍ଯ୍ୟାୟ-ବାଚକ ସଂସ୍କୃତ ଶବ୍ଦ ହେଲେହେଁ ତାକୁ ଓଡ଼ିଆ ସ୍ଥଳରେ "ଆନନ" ବୋଲି ପ୍ରତିପାଦନ କରିଛନ୍ତି । ମୁଖର ଉପମା 'ଅନ୍ୟ ନୁହେ' । ତେଣୁ ମୁଖ ଅନୁପମ ଓ ଅଦ୍ୱିତୀୟ ।

ନୈଷଧରେ ଦମୟନ୍ତୀଙ୍କ ଅଧର ସହିତ ବିମ୍ବଫଳ ସମାନ ହୋଇପାରି ନାହିଁ (ନୈ. ୨/୨୪ ଓ ୭/୩୯) । ବିଦ୍ରୁମ ବା ପ୍ରବାଳ ସହିତ ଅଧରର ସାମ୍ୟ ବର୍ଣ୍ଣିତ । ତେଣୁ ବିମ୍ବଫଳର ଅଧରତ୍ୱ ବା ନିକୃଷ୍ଟତ୍ୱ କଳ୍ପିତ । ପୁନଶ୍ଚ, ଦନ୍ତ ହେଉଛି ପ୍ରବାଳ ନିହିତ ମୁକ୍ତା ସଦୃଶ (ନୈ. ୭/୪୭) । ଭଞ୍ଜକବି ନୈଷଧୀୟ ରୀତିରେ ସୁନ୍ଦରୀର ଅଧର ଓ ଦନ୍ତ ଚିତ୍ରଣ କଲେହେଁ ସ୍ୱକୀୟତା ସହିତ କହିଛନ୍ତି :—

"ଦଶନ ଲକ୍ଷ୍ୟକୁ ପାଇ ନ ପାଇ । ମୁକ୍ତ ହୋଇ ସିନା ମୁକ୍ତା ବୋଲାଇ ।
ମଧୁର ନୋହେ ମଧୁ ଓଷ୍ଠ ପରି । ସରଘା ଉଚ୍ଛିଷ୍ଟେ ସେ ଶବ୍ଦ ଧରି ସେ
ଦେବତା ପ୍ରତିଷ୍ଠା ବହି ସେ
ଅରୁଣ ଅଧରେ ଅରୁଣ ଅଧରି ଜବା ଦବିତଳେ ରହି ସେ ।"

(କୋ ୭/୫)

॥ ଦୁଇଶହ ଏକୋଇଶି ॥

Digitized by PPRACHIN, SOA

ମୁକ୍ତା ଶାମୁକାରେ ଥାଏ । ସୁନ୍ଦରୀର ଦନ୍ତ ସଙ୍ଗେ ସମାନ ହୋଇ ନପାରି ମୁକ୍ତ ହୋଇ ସେ ମୁକ୍ତା ନାମ ଧାରଣ କରନ୍ତି । ମଧୁ, ମର୍ଦ୍ଧିକାର ଉତ୍କୃଷ୍ଟ, ପୁଷ୍ପରସ ମଧୁ ସୁନ୍ଦରୀର ଓଷ୍ଠ ସହ ସମାନ ନୁହେଁ । ପ୍ରଭାତ-ସୂର୍ଯ୍ୟ ସୁନ୍ଦରୀର ଅଧର ଆଗରେ ଅଧର ବା ନ୍ୟୂନ ହୋଇଛି । ମନ୍ଦାର ଫୁଲ ପାଦତଳେ ରହିଛି ଅର୍ଥାତ୍ ସୁନ୍ଦରୀର ପାଦତଳ ମନ୍ଦାର ପରି ରକ୍ତିମ ହୋଇଛି । ଭଞ୍ଜକବି ତାମ୍ର, ପ୍ରବାଳ ଆଦି ନୈଷଧୀୟ ଭାବ ଗ୍ରହଣ ନ କରି ପ୍ରଭାତ-ସୂର୍ଯ୍ୟ ଓ ମନ୍ଦାରକୁ ସ୍ଥାନ ଦେଇଛନ୍ତି ।

ସୁନ୍ଦରୀର ସ୍ତନ-ବର୍ଣ୍ଣନାରେ ମଧ୍ୟ ଉପେନ୍ଦ୍ର ନୈଷଧୀୟ ଉପାଦାନ ସଂଗ୍ରହ କରିଛନ୍ତି । ଶ୍ରୀହର୍ଷ କହିଛନ୍ତି :

"ପୁଷ୍ପେଷୁଶ୍ଚିକୁରେଷୁ ତେ ଶରଚୟଂ ତ୍ୱଦ୍‌ଭାଲ ମୂଲେ ଧନୁ
ରୌଦ୍ରେ ଚକ୍ଷୁଷି ତର୍କିତ-ସ୍ତନୁମନୁଭ୍ରାଷ୍ଟ୍ରଂ ଚ ସନ୍ଧିକ୍ଷିପେ ।
ନିର୍ବିଦ୍ୟାଶ୍ରୟଦାଶ୍ରୟଂ ସ ବତନୁସ୍ତ୍ୱଂ ତତ୍କୟାସ୍ୟାଧୁନା
ପଦ୍ମାଳିସ୍ତ୍ୱଦୁରୋଜ-ଶୈଳ-ନିଳୟା ତତ୍ପର୍ଣ୍ଣ-ଶାଳାୟତେ ।"

(ନୈ. ୩/୧୨୮)

ପ୍ରସଙ୍ଗ କ୍ରମେ ଦମୟନ୍ତୀଙ୍କୁ ହଂସ କହୁଛି : "ହେ ରାଜକୁମାରୀ ! ଲାବଣ୍ୟରେ ନଳଦ୍ୱାରା ପରାସ୍ତ କାମଦେବ ଆତ୍ମଗ୍ଲାନି ଯୋଗୁଁ ତୁମ କେଶପାଶରେ ଫୁଲଶର ଗୁଡ଼ିକୁ ଓ ତୁମର ଭ୍ରୂଦ୍ୱୟରେ ନିଜ ଧନୁକୁ ଫିଙ୍ଗି ଦେଇଛି ଏବଂ ମହାଦେବଙ୍କ ତୃତୀୟ ନେତ୍ରରେ ନିଜ ଶରୀରକୁ ନିକ୍ଷେପ କରିଛି । ଏବେ ସେହି କାମଦେବ ନଳଙ୍କୁ ଜୟ କରିବା ଆଶାରେ ତୁମ ଶରୀର ରୂପୀ ତପୋବନରେ ଗୁପ୍ତ ଭାବରେ ରହି ତପସାଧନ କରୁଛି । ତାର ପର୍ଣ୍ଣଶାଳା ହେଉଛି ତୁମର ସ୍ତନରୂପୀ ପର୍ବତରେ ରଚିତ ପଦ୍ମାବଳୀ ।"

ଉପେନ୍ଦ୍ର ଭଞ୍ଜ ସୁନ୍ଦରୀର ସୌନ୍ଦର୍ଯ୍ୟ ବର୍ଣ୍ଣନାରେ ନୈଷଧୀୟ ଭାବ ସମେତ ମୌଳିକତାର ସମନ୍ୱୟ କରିଛନ୍ତି । ସୁନ୍ଦରୀର କଟିରୂପୀ ସିଂହକୁ ଶିକାର କରିବା ଉଦ୍ଦେଶ୍ୟରେ କାମଦେବ ସୁନ୍ଦରୀର ପଦ୍ମାବଳୀରେ ଆବୃତ ସ୍ତନରୂପୀ ପର୍ଣ୍ଣଶାଳାରେ ଗୁପ୍ତ ଅବସ୍ଥାନ କରିଛି ।

ମନସିଜ ବେନି କୁଟି ଉଆଇ । ପଦ୍ମାବଳୀରେ ଯତନେ ଛୁଆଇଁ ।
ରଞ୍ଜିକ ଖ୍ୟାତ ନଳୀ ଅଛି ଯୋଖି । ମନୋହର ନାଭି-ପଲ୍ୱଳ ଦେଖି ଯେ
ମଧ୍ୟରେ କେଶରୀ ବୋଲି ଯେ ।
ଛନ୍ନେ ଶର ଅଛି କାହିଁ ପଳାଇଛି ମୁହିଁ କଟିଦ୍ୱେଷୀ ଭାଳି ଯେ ।"

(କୋ. ୭/୨୧)

॥ ଦୁଇଶହ ବାଇଶି ॥

Digitized by PPRACHIN, SOA

ନୈଷଧର ଦ୍ୱିତୀୟ ଓ ସପ୍ତମ ସର୍ଗରେ ଶ୍ରୀହର୍ଷ ଦମୟନ୍ତୀଙ୍କ ନେତ୍ରର ଉତ୍କର୍ଷ ପ୍ରତିପାଦନ କରିଛନ୍ତି ମୃଗନେତ୍ର, ପଦ୍ମ, ଖଞ୍ଜନ, ନୀଳୋତ୍ପଳ ଓ ଚକୋର ପକ୍ଷୀର ନିକୃଷ୍ଟତା ମାଧ୍ୟମରେ ।

“ନଳିନଂ ମଳିନଂ ବିବୃଣ୍ୱତୀ
ପୃଷତୀମସ୍ପୃଶତୀ ତଦୀକ୍ଷଣେ ।
ଅପି ଖଞ୍ଜନମଞ୍ଜନାଞ୍ଚିତେ
ବିଦଧାତେ ରୁଚି-ଗର୍ବ-ଦୁର୍ବିଧମ୍ ।”
(ନୈ. ୨/୨୩)

ଭଞ୍ଜକବି ସୁନ୍ଦରୀ-ନେତ୍ରର ତାଦୃଶ ଶ୍ରେଷ୍ଠତ୍ୱ ଦର୍ଶାଇଛନ୍ତି ।

“କୁବଳୟ ଦର୍ପ ପକାଇ ନାଶି । କାଣ୍ଡ ଶୁକ୍ଳକାଣ୍ଡ ପରିସ୍ଥେ ବଶି ।
ମୃଗ ଖଞ୍ଜନଙ୍କୁ ହାସି ଯେ ।
ଦେଖିଲର ଆଖି ଚକୋର ପକ୍ଷୀଙ୍କ ଯେମନ୍ତ ପୀୟୂଷ ରାଶି ଯେ ।”
(କୋ. ୭/୮)

ଶ୍ରୀହର୍ଷଙ୍କ କାବ୍ୟରେ ଦମୟନ୍ତୀଙ୍କ ଭ୍ରୂ କାମଦେବଙ୍କ ଧନୁରୂପରେ ଚିତ୍ରିତ (ନୈ ୨/୨୮ ଓ ୭/୨୪-୨୫) । ଭଞ୍ଜକବି ଅନୁରୂପ ଆଦର୍ଶରେ, ଭ୍ରୂ ଚିତ୍ରଣ କରିଛନ୍ତି ।

“ଚଞ୍ଚଳ ଭୂରୁ ନର୍ତ୍ତିନୁ । ଏ ଲକ୍ଷ୍ୟ ନ ଛୁଡ଼େ ମନୁ ।
କି ପାଞ୍ଚ ଆଞ୍ଚ କଜ୍ଜଳଗୁଣେ ରଚି ଅତନୁ ଅତସୀଧନୁ ।।
ଏ ବେନ ଚଞ୍ଚଳ ଦୃଷ୍ଟି । ଛଳେ ନୀଳୋତ୍ପଳ ବୃଷ୍ଟି ।
ଅନ୍ତରଙ୍ଗରୁ ଉତ୍ସୁକୁ ଅନାଇଲା ଭାବ କି ଗଲାଣି ଫୁଟି ।।
(କୋ. ୧୪/୧୬-୧୭)

ରାଜପୁତ୍ର ସୁନ୍ଦରୀର ଭ୍ରୂଦ୍ୱୟକୁ କାମଦେବଙ୍କ ଅତସୀ ଫୁଲର ଧନୁ ବୋଲି ଭାବୁଛନ୍ତି । ସେ କାମଧନୁରେ ଚଞ୍ଚଳ ଦୃଷ୍ଟିପାତ ଛଳରେ ନୀଳୋତ୍ପଳ ରୂପୀ ଶର ବର୍ଷଣ କରୁଛି କି ବୋଲି ଉତ୍ପ୍ରେକ୍ଷା କରାଯାଇଛି ।

ଦମୟନ୍ତୀଙ୍କ କଣ୍ଠସ୍ୱର ସରସ୍ୱତୀଙ୍କ ବୀଣାସ୍ୱର । ସତେ କି ସପତ୍ନୀ କମଳାଙ୍କୁ ଜିଣିବା ଉଦ୍ଦେଶ୍ୟରେ କମଳ-ବଦନା ଦମୟନ୍ତୀଙ୍କ କଣ୍ଠରେ ବିରାଜିତ ହୋଇ ବୀଣାପାଣି ମଧୁର ଧ୍ୱନି କରୁଛନ୍ତି ଓ ସେହି ବୀଣାଧ୍ୱନି ବାଣୀରୂପରେ ପରିଣତ ହୋଇ ଶ୍ରବଣରେ ସୁଧା ସଞ୍ଚାର କରୁଛି ।



Digitized by PPRACHIN, SOA

କଣ୍ଠେ ବସନ୍ତୀ ଚତୁର୍‌ର ଯଦସ୍ୟାଃ
ସରସ୍ୱତୀ ବାଦଯତେ ବିପଞ୍ଚୀମ୍ ।
ତଦେବ ବାଗ୍‌ଭୂସ୍ତ ମୁଖେ ମୃଗାକ୍ଷ୍ୟାଃ
ଶ୍ରୋତୁଃ ଶ୍ରୁତୌ ଯାତି ସୁଧାରସତ୍ୱମ୍ ॥"
(ନୈ. ୭/୫୦)

ଭକ୍ତକବି ଶ୍ରୀହର୍ଷଙ୍କ ଭାବର ଅନୁସରଣରେ ସୁନ୍ଦରୀର କଣ୍ଠ ଚିତ୍ରଣ କରିଛନ୍ତି । ରାଜପୁତ୍ର ପୁଷ୍ପକେତୁ ନିଜ ପ୍ରେରିତ ପତ୍ରରେ ସୁନ୍ଦରୀର କଣ୍ଠ ବର୍ଣ୍ଣନା କରି କହିଛନ୍ତି :—

"ନୋହି ସଂଗୀତ ସାହିତ୍ୟେ ସମାନ । ପଳାଇଛି ସାରଦା ଅନୁମାନ ।
କେଳି ପ୍ରବୀଣା କିଶୋରୀ କଣ୍ଠେ ବୀଣା ପାସୋରି ଗଲି କି ଛନ୍ଦରେ ।"
(କୋ ୨୨/୪)

ଶ୍ରୀହର୍ଷ ଦମୟନ୍ତୀଙ୍କ କଣ୍ଠସ୍ୱନକୁ ସରସ୍ୱତୀଙ୍କ ବୀଣାସ୍ୱନ ସହିତ ସମାନ କରି ଦର୍ଶାଇଥିବା ସ୍ଥଳେ ଉପେନ୍ଦ୍ର କୋଟିବ୍ରହ୍ମାଣ୍ଡ ସୁନ୍ଦରୀର କଣ୍ଠସ୍ୱରକୁ ସରସ୍ୱତୀଙ୍କ ବୀଣାସ୍ୱନ ଠାରୁ ମଧ୍ୟ ଉତ୍କୃଷ୍ଟ ଓ ମଧୁରତର ଭାବରେ ବର୍ଣ୍ଣନା କରିଛନ୍ତି । ଏଥିରେ ଆହରଣ ଓ ମୌଳିକତାର ସମ୍ମିଶ୍ରଣ ଘଟିଛି ।

ଶ୍ରୀହର୍ଷ କଳ୍ପନା କରିଛନ୍ତି ଯେ ଯଦି କଦଳୀ ଅଧୋମୁଖରେ ତପସ୍ୟା ଆଚରଣ କରି ନିଜର ଜଡ଼ତା ଓ ଅସାର ତ୍ୟାଗ କରନ୍ତା, ତେବେ ଯାଇ ଦମୟନ୍ତୀଙ୍କ ସୁନ୍ଦର ଊରୁ ସହ ସମାନ ହୋଇପାରନ୍ତା (ନୈ. ୭/୯୪) । ଭକ୍ତକବି ଏ ଭାବର ସାମାନ୍ୟ ଆହରଣ କରି କହିଛନ୍ତି :—

"ଫଳେ ଅଧୋମୁଖ ହେଲି କଦଳୀ" ।
(କୋ. ୩/୩୫)

ଉଭୟ କବିଙ୍କ ବର୍ଣ୍ଣନାରେ ନାୟିକାମାନଙ୍କ ଊରୁ କଦଳୀ ଠାରୁ ଶ୍ରେଷ୍ଠ ।

ଶ୍ରୀହର୍ଷ ଦମୟନ୍ତୀଙ୍କ ପାଦକୁ ପଦ୍ମ ସହିତ ତୁଳନା କରିଛନ୍ତି । ସେଥିରେ ପୁଣି ପଦ୍ମର ପୁଣ୍ୟବଳ । ସୂର୍ଯ୍ୟଙ୍କୁ ସେବା କରି ପଦ୍ମଦ୍ୱୟ ଦମୟନ୍ତୀଙ୍କ ପାଦରେ ପରିଣତ ହୋଇଛନ୍ତି ଓ ବିଧାତାଙ୍କୁ ସେବା କରି ମରାଳ-ଦମ୍ପତି ସେହି ପାଦରେ ନୂପୁର ଧ୍ୱନି କରିଛନ୍ତି । ଏଥିରୁ ପ୍ରତୀତ ହେଉଛି ପାଦ ହେଉଛି ପଦ୍ମତୁଲ୍ୟ ଓ ନୁପୂରନାଦ ହଂସଧ୍ୱନି ସଦୃଶ (ନୈ. ୨/୩୮) । ଶ୍ରୀହର୍ଷ ପୁନଶ୍ଚ ଦର୍ଶାଇଛନ୍ତି, ପଦ୍ମର


Digitized by PPRACHIN, SOA

ସରୋବର ଓ ନଦୀମାନଙ୍କରେ ଯୋଗ ସମାଧି ଆଚରଣ କରିଥିବାରୁ ସୁକୃତ ବଳରେ ପଦ୍ମ ଦମୟନ୍ତୀଙ୍କ ପାଦ ହୋଇ ପାରିଛି (ନୈ. ୨/୩୧) । ଅନ୍ୟସ୍ଥଳରେ, କୁହାଯାଇଛି, ରକ୍ତପଦ୍ମ ନିଜ ସୁକୃତ ବଳରୁ ଦମୟନ୍ତୀଙ୍କ ପାଦ ଲାଭ କରିଛି (ନୈ. ୭/୧୦୬) । ନୈଷଧୀୟ ସମସ୍ତ ସାରକୁ ଏକତ୍ର କରି ଭଞ୍ଜକବି କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ପାଦ ବର୍ଣ୍ଣନରେ ତଦ୍ରୂପ ଭାବ ଫୁଟାଇଛନ୍ତି ।

"ଏ ଉତ୍ତମଲକ୍ଷଣା ଛନ୍ଦ ଯେ,
କେବଳ ସୁକୃତ ଥିଲାକୁ ଚରଣ ଆଗରେ ପଡ଼ିଛି ପଦ୍ମ ଯେ ।"
(କୋ· ୭/୧୦)

ଦମୟନ୍ତୀଙ୍କ ନାସିକା ତିଳପୁଷ୍ପଠାରୁ ଉତ୍ତମ । କବି ଶ୍ରୀହର୍ଷ ଶ୍ଳେଷ ମାଧ୍ୟମରେ ଏହି ନାସାକୁ 'ତିଳୋତ୍ତମା', ଭ୍ରୂକୁ 'ଚନ୍ଦ୍ରଲେଖା' ଓ ଉରୁକୁ 'ରମ୍ଭା' ରୂପରେ ବର୍ଣ୍ଣନା କରି ତିଳୋତ୍ତମା, ଚନ୍ଦ୍ରଲେଖା, ରମ୍ଭା ପ୍ରଭୃତି ଅପ୍ସରାମାନଙ୍କର ସମାବେଶ କରାଇଛନ୍ତି (ନୈ· ୭/୯୦) । ଉପେନ୍ଦ୍ରଙ୍କ ଭାବ କାବ୍ୟ ନାୟିକା ଦେବୀରୂପରେ ବର୍ଣ୍ଣିତା । ସ୍ୱର୍ଗର ମନୋରମା, ଚନ୍ଦ୍ରଲେଖା, ରମ୍ଭା ଆଦି ଅପ୍ସରା ସମେତ ପାରିଜାତ ପୁଷ୍ପର ଅବତାରଣା କରାଯାଇଛି ।

"ମନେ କଲି ଏ ଦେବ- ସଭା ତ ମୋତେ ଦେବ
ଗଢ଼ି ଜଗତ ବ୍ୟାଜ ମେରୁ,
ଖେଳାଇ ମନୋରମା ତୋଳା ନୋହି ଉପମା
ନଗୃହି ଚନ୍ଦ୍ରରେଖା ଭ୍ରୂରୁ ସେ, ଗୁପ୍ତବାସ
ପିଧାନେ ରମ୍ଭାକରଭୋରୁ । ପାରିଜାତକ ଗନ୍ଧଭରୁ ।
ସୁଖ ଅନେକ ନେନେ ଦେଉଅଛି ବଚନେ
ମୁଁ ମିଳେ କି ଭାଗ୍ୟବଶରୁ ।"
(କୋ. ୧୩/୧୯)

ନାୟିକାର ସୌନ୍ଦର୍ଯ୍ୟ ଚିତ୍ରଣରେ ଉପମାମାନଙ୍କର ନିକୃଷ୍ଟତା ପ୍ରତିପାଦନ କରିବାକୁ ଯାଇ ଭଞ୍ଜକବି ନୈଷଧୀୟ ଉପସ୍ଥାପନ ଶୈଳୀର ଅନୁବର୍ତ୍ତୀ ହେବାକୁ ପ୍ରୟାସ କରିଛନ୍ତି । ଏହାର ଭିନ୍ନ ଭିନ୍ନ ଉଦାହରଣ ପ୍ରସଙ୍ଗାନୁସାରେ ଦ୍ରଷ୍ଟବ୍ୟ । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର କାବ୍ୟ (୩/୧୨-୩୬ ଓ ୭/୪-୬) ରେ ଏହାର ବହୁ ଦୃଷ୍ଟାନ୍ତ ଲକ୍ଷ୍ୟ କରାଯାଇପାରେ । ଭାବଦ୍ୱାରା ହେଉ ବା ନ ହେଉ, ଶୈଳୀ ଦ୍ୱାରା ଉପେନ୍ଦ୍ର ନିଷ୍ଚୟ ଶ୍ରୀହର୍ଷଙ୍କ କୃତ ସହିତ ନିଜ କୃତିର ସାମଞ୍ଜସ୍ୟ ଦର୍ଶାଇବାରେ ସମର୍ଥ ହୋଇଛନ୍ତି ।

॥ ଦୁଇଶହ ପଚାଶ ॥

Digitized by PPRACHIN, SOA

ନଗରୀ :—

ନଗରୀ ବର୍ଣ୍ଣନାରେ ନୈଷଧବର୍ଣ୍ଣିତ କୁଣ୍ଡିନପୁରୀ ଓ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଚଂପାନଗରୀର ବୈଭବ ବର୍ଣ୍ଣନରେ ଉପସ୍ଥାପନ ଶୈଳୀର ସାମ୍ୟ ରହିଛି । କୁଣ୍ଡିନପୁରୀ ତ୍ରିଭୁବନର ଶୋଭା ବହନ କରିଛି । ସେ ପୁରୀର ଚନ୍ଦ୍ରଶାଳା ହେଉଛି ସ୍ୱର୍ଗ, ଅଟ୍ଟାଳିକା ହେଉଛି ମର୍ତ୍ତ୍ୟ ଓ ଭୂମିଭବନ ହେଉଛି ରସାତଳ ।

"ବ୍ରଜତେ ଧ୍ୱବ ଯଦ୍ ଗୃହାବଳୀ-
ଚଳ-ଚେଳାଞ୍ଚଳ-ଦଣ୍ଡ-ତାଡ଼ନାଃ ।
ବ୍ୟଚରନ୍ନରୁଣାସ୍ୟ କଟ୍ରମଂ
ସ୍ଫୁଜତେ ହେଳ-ହୟାଳି-କାଳନାମ୍ ।।"
(ନୈ. ୨/୮୦)

କୁଣ୍ଡିନପୁରୀରେ ଉଚ୍ଚ ସୌଧମାଳାର ଉପର ଭାଗରେ ଲମ୍ବିତ ପତାକାମାନ ପବନ-ବେଗରେ ଆନ୍ଦୋଳିତ ହୋଇ ରବିଙ୍କ ଅଶ୍ୱ ସମୂହଙ୍କୁ ଚଳାଇ ତ୍ୱରାନ୍ୱିତ କରିଥାନ୍ତି ଏବଂ ଏହା ଫଳରେ ସୂର୍ଯ୍ୟଙ୍କ ସାରଥି ଅରୁଣ ବିଶ୍ରାମ ଲାଭ କରିଥାନ୍ତି । ଶ୍ରୀହର୍ଷଙ୍କ ଏତାଦୃଶ ଭାବନା ଉପେନ୍ଦ୍ରଙ୍କ ଚଂପା-ନଗରୀ-ବର୍ଣ୍ଣନରେ, ସାମାନ୍ୟ ପ୍ରତିଫଳିତ ହୋଇଛି ।

ବଢ଼ନ୍ତି ବଢ-ଶ୍ରୀ ଜନମ ଜରେ । ହରିହୟ ହରି-ହୟ ଲିଭରେ ।।
ବଇଜୟନ୍ତକୁ ଜିଣିବ ବୋଲି । ବଇଜୟନ୍ତୀରେ ଛନ୍ଦ ନ ଭାଳି ।।"
(କୋ. ୨/୪)

ଚଂପାପୁରୀର ଉଚ୍ଚ ଅଟ୍ଟାଳିକା ସମୂହ ଉଡ୍ଡୀୟମାନ ଧ୍ୱଜାରାଜି ଦ୍ୱାରା ଇନ୍ଦ୍ରପୁରୀ ଅମରାବତୀର ବୈଜୟନ୍ତ ପ୍ରାସାଦକୁ ଜୟ କରିବାର କୌଶଳରେ ଇନ୍ଦ୍ର-ମନରେ ଭୟ ସୃଷ୍ଟି କରିଛନ୍ତି ଓ ସୂର୍ଯ୍ୟଙ୍କ ଅଶ୍ୱମାନଙ୍କୁ ଛନ୍ଦିବାର ଭୟ ଜାତ କରନ୍ତି ।

ଅନ୍ୟସ୍ଥଳରେ:—

"ପତଙ୍ଗେ-ହୟ ମତଙ୍ଗ ଯେ ଆତଙ୍କ ଦେଖି ଚଗଳ ଦଣ୍ଡ ପନ୍ତ
ଛନ୍ଦ ହେବା ବନ୍ଦୀ ହେବା ପାଶ ନଳ ଭ୍ରମେ ଉଦ୍‌ବେଗ ବେଗ ଗତି
ପାଦାନ୍ତ, ବଳ ପ୍ରବଳରେ ଗମନ୍ତେ ।
ରେଣୁଏ ଅଣୁଏ ଛିଦ୍ର ନ ରଖିଲେ ଆକାଶ ପ୍ରକାଶ ନମନ୍ତେ ।"
(କୋ. ୧୮/୩)

କୁଣ୍ଡିନ ନଗରୀର ରତ୍ନମଣି-ଧାତୁ-ପୂର୍ଣ୍ଣିତା ଓ ସମୃଦ୍ଧିଶାଳୀ ବିପଣିର ବର୍ଣ୍ଣନା ନୈଷଧର ଦ୍ୱିତୀୟ ସର୍ଗରେ ଦୃଷ୍ଟିଗୋଚର ହୋଇଥାଏ ।

॥ ଦୁଇଶହ ଛବିଶ ॥

Digitized by PPRACHIN, SOA

"ସିତ-ଦୀପ୍ର-ମଣି-ପ୍ରକଳ୍ପିତେ
ଯଦଗାରେ ହସଦଙ୍କ-ରୋଦସି ।
ନିଖିଳାନ୍ନିଶି ପୂର୍ଣ୍ଣିମା ତିଥୀ-
ନୁପତସ୍ଥେଽତିଥିରେକିକା ତିଥିଃ ।"

(ନୈ. ୨/୭୭)

ଶୁଭ୍ର ଓ ଦୀପ୍ତିମାନ୍ ରତ୍ନମଣି-ମଣ୍ଡିତ ଭବନମାନଙ୍କରେ, ଦ୍ୟୁଲୋକ ଓ ମର୍ତ୍ତ୍ୟଲୋକର ଅନ୍ତରାଳରେ ସୁପ୍ରକାଶ ଯୋଗୁଁ, ପ୍ରତିରାତ୍ରିରେ ପୂର୍ଣ୍ଣିମାର ଶୋଭା ବିଲସିତ । ପୁନଶ୍ଚ ବିପଣିର ବର୍ଣ୍ଣନରେ :—

ବହୁକମ୍ବୁ ମଣିର୍ବରାଟିକା
ଗଣନାଟତ୍କରକର୍କଟୋତ୍କରଃ ।
ହିମବାଲୁକୟାଚ୍ଛ-ବାଲୁକଃ
ପଟୁ ଦଧ୍ୱାନ ଯଦାପଣାର୍ଣ୍ଣବଃ ॥"

(ନୈ. ୨/୮୮)

କୁଣ୍ଡିନର ବିପଣି ରତ୍ନାକରର ସୌନ୍ଦର୍ଯ୍ୟ ବହନ କରିଛି ବହୁ ମଣି ଶଙ୍ଖ, କପର୍ଦ୍ଦ ଆଦି ଧାରଣ କରି । କପର୍ଦ୍ଦ ଗଣନାରେ ଲିପ୍ତଥିବା ଚଞ୍ଚଳ ହସ୍ତମାନ କର୍କଟ ସଦୃଶ । ସମୁଦ୍ରର ସ୍ୱଚ୍ଛସିକତା ପରି ବିପଣୀରେ ଶୁଭ୍ର କର୍ପୂର ରହିଛି । ଚଂପାନଗରୀ ବର୍ଣ୍ଣନାରେ .—

"ବିତାନ ଏସନ ପ୍ରସନ୍ନ ଧରେ । ଯେସନ ଗଗନ ନିଶାକାଳରେ ।
ଚନ୍ଦ୍ରମଣ୍ଡଳ କରେ ପ୍ରକାଶିତ । ପୁଣି ତାର ତାର-ରାଜି ରଜିତ ॥"

(କୋ. ୨/୫)

ପାତାଳପୁରୀରୁ ବଳି ଚଂପାନଗରୀର ମଣିସମୃଦ୍ଧି ଦର୍ଶାଇ ଭଞ୍ଜକବି ପୁଣି କହିଛନ୍ତି :—

"ଅନନ୍ତ ମଣିରେ ସେ ଜ୍ୟୋତି ନାହିଁ । ଅନନ୍ତ ମଣି କିଣା ବିକା ଯହିଁ ।"

(କୋ. ୨/୮)

"ନିଶାନ୍ତ ରତନ ଜ୍ୟୋତି ପ୍ରକାଶେ । ନିଶାନ୍ତ ପ୍ରାୟ ସବୁବେଳେ ଦିଶେ ।"

(କୋ. ୨/୧୪)

ନାୟକ ପୁଷ୍ପକେତୁର ଜନ୍ମସ୍ଥାନ ମଗଧ ଦେଶର ବର୍ଣ୍ଣନା ମଧ୍ୟ ଅତ୍ୟନ୍ତ ଆକର୍ଷଣୀୟ । ଗଙ୍ଗାର ପବିତ୍ରନୀରରେ ମଣ୍ଡିତ ଏ ଦେଶର ମଣିମୁକ୍ତାଦି ଐଶ୍ୱର୍ଯ୍ୟ ବହୁଳତା ବର୍ଣ୍ଣିତ :—



Digitized by PPRACHIN, SOA

"ଚ୍ଚହେ ମଣିମୟ ଗୃଳ । ବଉଳ ହେର ପ୍ରବାଳ।
ମହାରଜତ ରଜତ । ବାଡ ନର୍ମିତ ଯେ ॥
ମାଣିକ୍ୟ ମର୍କତ ମିହ୍ନା । ମିଲୁଳୀ ଶନ୍ଧ ରଚନା ।
ଲତା ମହୀରୁହ ଡ଼ାଳୀ । ତହିଁରେ ଝଳ ଯେ ॥
କଳଶ ହୀର ବୈଡ଼ୁର୍ଯ୍ୟ । ପ୍ରକାଶମାନ ଯେ ତେଜ ।
କି ଶ୍ୱେତ ପୀତ ପତାକା । ଏମନ୍ତ ଶଙ୍କା ଯେ ॥
ନୀଳମଣି ସ୍ଫଟିକର । ଯହିଁ ପାବଚ୍ଛ ଚତ୍ୱର ।
ମୁକୁତା ଗୁଚ୍ଛା ଗୁମର । ବତାନ ତାର ଯେ "

(କୋ. ୪/୧୫-୧୮)

ଏହିପରି ଅନ୍ୟସ୍ଥଳରେ ଅନେକ ଉଦାହରଣ ନୈଷଧୀୟ ଗୀତରେ ବର୍ଣ୍ଣିତ ହୋଇଥିବାର ଲକ୍ଷ୍ୟ କରାଯାଇପାରେ । ବିଶେଷରୂପେ ଚଂପାନଗରୀ ଓ ପାଟଳିପୁର ନଗରୀ ବର୍ଣ୍ଣନ ପ୍ରସଙ୍ଗରେ ଭଞ୍ଜକବି ଶ୍ରୀହର୍ଷଙ୍କ ବର୍ଣ୍ଣନା ଭଙ୍ଗୀକୁ ଅନୁସରଣ କରିଛନ୍ତି ।

**ପ୍ରକୃତି :—**

ମାନବ ସହିତ ପ୍ରକୃତିର ସମ୍ପର୍କ ଅବିଚ୍ଛେଦ୍ୟ ଓ ଚିରନ୍ତନ । ବ୍ୟାବହାରିକ ତଥା କାବ୍ୟିକ ଦୃଷ୍ଟିକୋଣରୁ ପ୍ରକୃତିର ସ୍ଥାନ ମହତ୍ତ୍ୱପୂର୍ଣ୍ଣ । ନୈଷଧକାବ୍ୟ ଶୃଙ୍ଗାର ରସ-ପ୍ରଧାନ ଥିବାରୁ ଏଥିରେ ପ୍ରକୃତି ଜୀବନ୍ତ, ଶୃଙ୍ଗାରମୟୀ ହୋଇ ଉଠିଛି । ନୈଷଧର ପ୍ରଥମ ସର୍ଗରେ ଉପବନାଦିର ବର୍ଣ୍ଣନ, ଊନବିଂଶ ସର୍ଗରେ ପ୍ରଭାତବର୍ଣ୍ଣନ ଓ ଦ୍ୱାବିଂଶ ସର୍ଗରେ ସନ୍ଧ୍ୟା-ଚନ୍ଦ୍ର ପ୍ରଭୃତିର ଆଲେଖ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଉପେନ୍ଦ୍ରଙ୍କ କାବ୍ୟରେ ମଧ୍ୟ ବାୟୁ, ପୁଷ୍ପଲତା, ବନ, ସୂର୍ଯ୍ୟାସ୍ତ, ଚନ୍ଦ୍ର, ତାରା, ଅନ୍ଧକାର, ଚନ୍ଦ୍ରିକା ଆଦିର ବର୍ଣ୍ଣନ ହୃଦୟ-ରଞ୍ଜକ ହୋଇଛି । ଉଭୟଙ୍କ କାବ୍ୟରେ ପ୍ରକୃତି ସଜୀବ ଓ ମାନବୀୟ ଅନୁଭୂତିର ସମ୍ବେଦନଶୀଳ । ଦୁହେଁ ନିଜ ନିଜ କାବ୍ୟରେ କେତେବେଳେ ପ୍ରକୃତିରେ ମାନବୀୟ ରୂପ ଆଣି ଥୋଇଛନ୍ତି ତ, କେତେବେଳେ ମାନବରେ ପ୍ରକୃତିର ରୂପ-ସମ୍ଭାରକୁ ଝଙ୍କି ଦେଇଛନ୍ତି । ଉଭୟଙ୍କ କଳ୍ପନାବିଳାସ ଓ ବର୍ଣ୍ଣନା-ଚାତୁର୍ଯ୍ୟ ଆଶ୍ଚର୍ଯ୍ୟକର ।

ପ୍ରଭାତ ଓ ସନ୍ଧ୍ୟାବର୍ଣ୍ଣନା ପ୍ରସଙ୍ଗରେ ଉଭୟ କବିଙ୍କ ଲେଖନୀରେ ଭାବ ସାମ୍ୟ ପରିଲକ୍ଷିତ ହୋଇଥାଏ । ଅନ୍ଧକାର ଓ ଚନ୍ଦ୍ର ମଧ୍ୟରେ ସଂଗ୍ରାମ ଦର୍ଶାଇ ଶ୍ରୀହର୍ଷ କହିଛନ୍ତି :—



Digitized by PPRACHIN, SOA

ଅମହତତରସ୍ତାଦ୍ଭୂତ୍ ତାରା ନ ଲୋଚନ-ଗୋଚରା-
ସ୍ତରଣି-କରଣା ଦ୍ୟାମଞ୍ଚନ୍ତି କ୍ରମାଦପରସ୍ପରାଃ ।
କଥୟତ ପରିତ୍ରାନ୍ତଂ ରାଜୀଃସ୍ତମଃ ସହୟୁଧ୍ୱନା–
ମୟ୍ୟମପି କରତ୍ରାଣ-ପ୍ରାଣସ୍ତମୋଽଦଧ୍ୱିତନ୍ତୁପାମ୍ ॥”

(ନୈ ୧୯/୪)

ପ୍ରଭାତବେଳାରେ ତାରାମାନେ କ୍ଷୀଣ ହେବାରୁ ନେତ୍ରର ଅନ୍ତରାଳରେ ରହିଛନ୍ତି । ସୂର୍ଯ୍ୟକିରଣ କ୍ରମେ କ୍ରମେ ବ୍ୟୋମଦେଶରେ ବ୍ୟାପ୍ତିଲାଭ କରିଛି । ରାତ୍ରିର ଅନ୍ଧକାର ସହିତ ଯୁଦ୍ଧ ଚଳାଇ ଚନ୍ଦ୍ର କ୍ଳାନ୍ତ ହୋଇ ପଡ଼ିଛନ୍ତି ଓ ତାଙ୍କ ଶିଥିଳ ରଶ୍ମି ଯୁଦ୍ଧ ଜନିତ କ୍ଳାନ୍ତିକୁ ବ୍ୟକ୍ତ କରୁଛି । ଶ୍ରୀହର୍ଷଙ୍କ ଏପରି କଳ୍ପନାର ସାମାନ୍ୟ ଆହରଣ କରି ଭଞ୍ଜକବି ସନ୍ଧ୍ୟାର ଏକ ଚମତ୍କାର ଦୃଶ୍ୟ ବର୍ଣ୍ଣନା କରିଛନ୍ତି । ମନ୍ତ୍ରୀପୁତ୍ର ସହ ରାଜପୁତ୍ରର ବାର୍ତ୍ତାଳାପ ପ୍ରସଙ୍ଗରେ ସେ କହିଛନ୍ତି:—

“ହେ, ଏ ସମୟେ ସନ୍ଧ୍ୟା ଅନ୍ତର ଭୁବନେ ତିମିର ରହିଲା ପୂରି
ମିଶିଗଲା ଶଶୀପ୍ରଭା ବେନିମଲ୍ଲ ହୋଇଲେ କି ଧରାଧରି
ପ୍ରହରନ୍ତେ ଧ୍ୱନିକାରୀ । କପୋତ ହୁ କୂଟେ କରି ।”

(କୋ· ୬୯/୧୮)

ରାତ୍ରିର ଆଗମନରେ ସଂସାର ଅନ୍ଧକାରାଚ୍ଛନ୍ନ ହୋଇଛି । ଚନ୍ଦ୍ରାଲୋକ ଓ ଅନ୍ଧକାରର ମିଶ୍ରଣ ଘଟିଛି । ମଲ୍ଲଦ୍ୱୟ ବଳ କଷାକଷି ହେଲାବେଳେ ହୁଁକାର କଲାପରି ଚନ୍ଦ୍ରାଲୋକ ଓ ଅନ୍ଧକାର କପୋତ ପକ୍ଷୀର ଧ୍ୱନି ଛଳରେ କରୁଛନ୍ତି । ଅନ୍ୟ ପଦରେ :—

“ହେ, ପଲ୍ଲବ ଗୁଞ୍ଜି କିରଣ ଝଲି ଦୁଇ ବନଭୂମି ଚିତ୍ର ଦିଶି
ସେ କି ଶିଷ୍ୟଗଣ କରନ୍ତି ବିନ୍ଧାଣ ବଳବାନ କଷାକଷି
ପ୍ରକମ୍ପ ପବନେ ତହିଁ । କେ କାହାକୁ ଠେଲି ଦେଇ ।”

(କୋ. ୬୯/୧୯)

ପତ୍ରଗୁଚ୍ଛ ଓ ଚନ୍ଦ୍ରକିରଣ ଯୋଗୁଁ ବନଭୂମି ଚିତ୍ରିତ ହେଲାପରି ଦିଶୁଛି । ଉଭୟେ ଦୁଇମଲ୍ଲଙ୍କ ଶିଷ୍ୟ ଭାବରେ କଳ୍ପିତ । ନିଜ ଭିତରେ କିଏ ବଳବାନ୍, ଏ କଥା ଜାଣିବା ଲାଗି ସତେ କି ଯେ ଦୁହେଁ ମଲ୍ଲକ୍ରୀଡ଼ା ପ୍ରଦର୍ଶନ କରୁଛନ୍ତି ।” ପବନର ପ୍ରବାହରେ ପତ୍ରକମ୍ପନ ଯୋଗୁଁ ମନେ ହୋଇଛି, ସେ ଦୁହେଁ ମାଲବିନ୍ଧାଣ କରି ଠେଲାଠେଲି ହୋଇଛନ୍ତି । ଅନ୍ଧକାର ଓ ଚନ୍ଦ୍ରର ବର୍ଣ୍ଣନରେ ଭଞ୍ଜକବି ପୂର୍ବୋକ୍ତ ପଦଦ୍ୱୟରେ ନୈଷଧ ଦ୍ୱାରା ପ୍ରଭାବିତ ହେଲେହେଁ ସ୍ୱକୀୟତା ମାଧ୍ୟମରେ ନିଜ କବି ଚାତୁରୀ ପ୍ରକଟ କରିଛନ୍ତି ।



Digitized by PPRACHIN, SOA

ଶ୍ରୀହର୍ଷ ସନ୍ଧ୍ୟାବର୍ଣ୍ଣନାରେ କହୁଛନ୍ତି :—

"କାଳଃ କିରାତଃ ସ୍ଫୁଟ-ପଦ୍ମକସ୍ୟ
ବଧଂ ବ୍ୟଧାଦ୍ୟସ୍ୟ ଦିନ-ଦ୍ୱିପସ୍ୟ ।
ତସ୍ୟେବ ସନ୍ଧ୍ୟା ରୁଚିରାସ୍ରଧାରା
ତାରାଶ୍ଚ କୁମ୍ଭସ୍ଥଳ-ମୌକ୍ତିକାନି ॥"

(ନୈ. ୨୨/୯)

ସନ୍ଧ୍ୟା ଓ ଅରୁଣିମାର ରମଣୀୟତା ଏଥିରେ ପ୍ରକାଶିତ । କାଳରୂପକ କିରାତ ଦିବସ ରୂପକ ଗଜକୁ ବଧ କରିବାରୁ ସେହି ମୃତ ଗଜର ରୁଧିର-ଧାର ସନ୍ଧ୍ୟା ରୂପରେ ବ୍ୟାପ୍ତ ହୋଇଛି ଏବଂ ଗଜ-କୁମ୍ଭ-ସ୍ଥଳର ମୁକ୍ତା ସମୂହ ତାରକା ରୂପରେ ଆକାଶରେ ବିଚ୍ଛୁରିତ ହୋଇଯାଇଛି । ଭଞ୍ଜକବି ଉକ୍ତ ଭାବଦ୍ୱାରା ଅନୁପ୍ରାଣିତ ହେଲେ ସୁଦ୍ଧା ମୌଳିକତା ଦର୍ଶାଇ ଅନୁରୂପ ଶୈଳୀରେ ସ୍ୱୀୟ ଭାବ ଉପସ୍ଥାପନ କରିଛନ୍ତି ।

"ସନ୍ଧ୍ୟା ଘୋଟିଗଲା ରକ୍ତ-ଜ୍ୟୋତି ନାଶ ଯାଏ ।
କାଳିକା ଗ୍ରାସ ବଶରୁ ରକ୍ତବୀର୍ଯ୍ୟ ପ୍ରାୟେ ॥"

(କୋ. ୩୩/୩)

ଭଞ୍ଜକବି କଳ୍ପନା ସ୍ୱାତନ୍ତ୍ର୍ୟରେ ଏକ ପୌରାଣିକ ଉପମା ଦେଇ କହୁଛନ୍ତି ଯେ ଦୁର୍ଗାଦେବୀଙ୍କ ମୁଖ କବଳରେ ପଡି ରକ୍ତ-ବୀର୍ଯ୍ୟ ଅସୁରର ଯେପରି ନାଶ ହୋଇଥିଲା, ସେହିପରି ସନ୍ଧ୍ୟା-ଆବୃତରେ ପଡି ସୂର୍ଯ୍ୟଙ୍କ ରକ୍ତ ଜ୍ୟୋତି ନଷ୍ଟ ହୋଇଛି ।

ଚନ୍ଦ୍ର, ତାରା ଓ ରାତ୍ରିର ଚିତ୍ରଣ ଉଭୟ କବି-କୃତରେ ମନୋରମ ହୋଇଛି । ନୈଷଧକାର କହୁଛନ୍ତି :—

"ଉଡୁପରିଷଦଃ କିଂ ନାର୍ହତ୍ତ୍ୱଂ ନିଶଃ କିମୁ ନୌରିତି
ପତିରିହ ନ ଯଦ୍ ଦୃଷ୍ଟସ୍ତାଭ୍ୟାଂ- ଗଣେଷ୍ୱରୁଚୀଗଣଃ ।
ସ୍ଫୁଟମୁଡୁପତେରାସ୍ମଂ ବକ୍ଷଃ ସ୍ଫୁରନ୍-ମଳିନାଶ୍ମନଃ
ଛବି ଯଦନୟୋ-ର୍ବିଚ୍ଛେଦୋଽପି ଦ୍ରୁତଂ ବତ ନ ଦ୍ରୁତମ୍ ॥"

(ନୈ ୧୯/୧୯)

ପ୍ରଭାତ ବେଳାରେ କ୍ଷୀଣକାୟ ପତି ଚନ୍ଦ୍ରମାଙ୍କୁ ତାରାମାନେ ଦେଖିପାରି ନାହାନ୍ତି, ରାତ୍ରି ମଧ୍ୟ ନିଜ ପତି ଚନ୍ଦ୍ରମାର ଦର୍ଶନ କରି ନାହିଁ । ଚନ୍ଦ୍ରମାର ବକ୍ଷ ମଳିନ ପ୍ରସ୍ତର ପରି କଳଙ୍କିତ ରୂପରେ ପାଷାଣରେ ନିର୍ମିତ । ନୋହିଲେ ନିଜ ପତ୍ନୀ



Digitized by PPRACHIN, SOA

ରାତ୍ରି ଓ ତାରାମାନଙ୍କ ଦେହରେ ଚନ୍ଦ୍ର-ହୃଦୟ ବର୍ଣ୍ଣ ହୋଇ ନଥାନ୍ତା କି ବୋଲି ଶ୍ରୀହର୍ଷ କଳ୍ପନା କରିଛନ୍ତି । ଏ କଥାକୁ ଆଦର୍ଶ ଭାବରେ ରଖି ଏକ ରମ୍ୟ ଆଲେଖ୍ୟ ଦେଇ ଭକ୍ତକବି ସ୍ୱକୀୟ କଳ୍ପନା-କୌଶଳ ମାଧ୍ୟମରେ କହିଛନ୍ତି :—

"ମେହେନ୍ଦପୂର୍ଣ୍ଣରେ ଚନ୍ଦ୍ର ଚନ୍ଦ୍ର-ଚୂର୍ଣ୍ଣରେ ଖେଳିଲେ ତାରାଳୀ ସଙ୍ଗତେ,
ତ୍ରିଯାମା ରାମା ଶ୍ୟାମା ଅତିଶୟରେ କସ୍ତୁରିକା ଦଳି ଫିଙ୍ଗନ୍ତେ
ସେ ଧୂଳି, ସେହି ଲେଉଟାଇ ମାଇଲେ ।
ନିଃଶଙ୍କେ ଚନ୍ଦ୍ରିକା ଅଙ୍ଗ କରି ଅଙ୍କେ ନୀଳା ବୋଲାସେ କି ଥୋଇଲେ ॥"

(କୋ. ୬/୧୦)

ମହେନ୍ଦ୍ର-ମନ୍ଦରର ପ୍ରିୟତମ ଚନ୍ଦ୍ର ତାରାମାନଙ୍କ ଦେହରେ କର୍ପୂରଚୂର୍ଣ୍ଣ ଖେଳିଛନ୍ତି । ରାତ୍ରିରୂପିଣୀ ଶ୍ୟାମା ରମଣୀ ଚନ୍ଦ୍ର ପ୍ରତି ଅତିଶୟ କସ୍ତୁରୀଚୂର୍ଣ୍ଣ ଫିଙ୍ଗିବାରୁ ଚନ୍ଦ୍ର ତା' ବଦଳରେ କର୍ପୂରଚୂର୍ଣ୍ଣ ଲେଉଟାଇ ଫିଙ୍ଗିଛନ୍ତି । ରାତ୍ରି ଓ ଚନ୍ଦ୍ର ପରସ୍ପର ଦ୍ୱନ୍ଦ୍ୱରେ ଏ ଚୂର୍ଣ୍ଣଖେଳା କରିଛନ୍ତି । ଫଳରେ ଚନ୍ଦ୍ର-ଦେହରେ କସ୍ତୁରୀ କଳଙ୍କ ରୂପରେ ରହିଛି ଓ ରାତ୍ରି-ଦେହରେ ଶୁଭ୍ର କର୍ପୂରଚୂର୍ଣ୍ଣ ଚନ୍ଦ୍ରିକା ରୂପରେ ଶୋଭା ପାଉଛି । ଭକ୍ତକବିଙ୍କ ଏପରି କଳ୍ପନା ଅତ୍ୟନ୍ତ ସ୍ୱାନ୍ତରଞ୍ଜିନୀ ଓ ପ୍ରେମୋଦ୍‌ଗାରିଣୀ ହୋଇଛି । କବି ଶ୍ରୀହର୍ଷ ଅନ୍ଧକାରକୁ କସ୍ତୁରୀ ବୋଲି କଳ୍ପନା କରିଛନ୍ତି (ନୈ, ୨୨/୨୯) । ସେହି ଅନ୍ଧକାର ହେଉଛି ଉତ୍ତର ଦିଗରେ ଉଦୀଚୀ ନାୟିକାର କୁବେର ବନ "ଚୈତ୍ରରଥ"-ନାମ୍ନୀ ଚିତ୍ର-ରଚନାର ଉପକରଣ ରୂପ କସ୍ତୁରୀ ସମୂହ । ଶ୍ରୀହର୍ଷଙ୍କ କାବ୍ୟରେ ଅନ୍ଧକାର କସ୍ତୁରୀ ହେବା ସ୍ଥଳେ ଭକ୍ତକବିଙ୍କ କୃତିରେ ଚନ୍ଦ୍ରଙ୍କ କଳା କଳଙ୍କ କସ୍ତୁରୀ ଦ୍ରୁତ ହୋଇଛି । ତେବେ ଉଭୟ କବିଙ୍କ ବର୍ଣ୍ଣନ-ସ୍ୱାତନ୍ତ୍ର୍ୟ ଏଥିରେ ଉପଭୋଗ୍ୟ ହୋଇପାରିଛି ।

ନୈଷଧର ପ୍ରଥମ ସର୍ଗରେ ପୁଷ୍ପଲତା, ଉପବନାଦିର ସ୍ୱରୁଚିର, ଊନବିଂଶ ସର୍ଗରେ ପ୍ରଭାତ ଓ ଦ୍ୱାବିଂଶ ସର୍ଗରେ ସନ୍ଧ୍ୟା-ଚନ୍ଦ୍ରାଦିର ଚିତ୍ରଣ ଚିତ୍ତାକର୍ଷକ । କବି ଶ୍ରୀହର୍ଷ ପ୍ରକୃତିରେ ମାନବୀୟ ଅନୁଭୂତିର ମଧୁର ସନ୍ନିବେଶ ପୂର୍ବକ ଜୀବନ୍ତ କରି ଗଢ଼ିତୋଳିଛନ୍ତି । କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ସଖୀ ସଙ୍ଗରେ ବନବିହାର ପ୍ରସଙ୍ଗରେ ଉପବନରେ ପକ୍ଷୀମାନଙ୍କ ମଧୁର କାକଳି, ପୁଷ୍ପରାଜିର ବିକାଶ, ଲତାକୁଞ୍ଜ, ଭ୍ରମର, ପବନ, ପଲ୍ଲବ ଆଦିର ରମ୍ୟ ପରିବେଶରେ ରତିଦେବୀ ଓ କାମଦେବଙ୍କ ଉପସ୍ଥିତିର ବର୍ଣ୍ଣନା କରାଯାଇଛି (କୋ. ୨୩/୫-୯) । ମାନବ-ସମାଜ-ଗତ ଆଚାର-ବ୍ୟବହାରର ଅନୁପ୍ରବେଶ ମାଧ୍ୟମରେ ମାନବ ଓ ପ୍ରକୃତି ମଧ୍ୟରେ ଏକତ୍ୱ ପ୍ରତିପାଦିତ । ଅନ୍ୟତ୍ର ଚମ୍ପାପୁରର ଉଦ୍ୟାନ ସ୍ୱର୍ଗର ନନ୍ଦନ ବନର ସୌନ୍ଦର୍ଯ୍ୟ ଆହରଣ କରିଛି ଶ୍ଳେଷଯୋଗରେ (କୋ. ୨୮/୯-୧୦) । ଷଷ୍ଠ ଛାନ୍ଦରେ ବସନ୍ତ ଋତୁ-



Digitized by PPRACHIN, SOA

ବର୍ଣ୍ଣନାରେ ଫଳପୁଷ୍ପାଦି ବଗିଚାମାନଙ୍କ ସମାବେଶରେ ପ୍ରକୃତି ସଜୀବ ଓ ଶୃଙ୍ଗାରମୟୀ ରୂପରେ ସଜ୍ଜିତା । ଏହା ବ୍ୟତୀତ ପଦ-ଲାଳିତ୍ୟ ଓ ଅନୁପ୍ରାସର ସଂଯୋଜନାରେ ଗ୍ରୀଷ୍ମ ବର୍ଣ୍ଣନା (କୋ. ୧୮/୧-୧୮), ଶ୍ଳେଷାର୍ଥକ ଓ ସତରଞ୍ଜ ଖେଳର ସାଦୃଶ୍ୟ-ସମ୍ପନ୍ନ ବସନ୍ତ ଋତୁ ବର୍ଣ୍ଣନ (କୋ. ୧୦/୪), ଚଉତ୍ରିଂଶ ଛାନ୍ଦରେ ନାୟକ-ନାୟିକାଙ୍କ ମିଳନ ପ୍ରସଙ୍ଗରେ ଶ୍ଳେଷାର୍ଥକ ଶରଦ୍‌ଋତୁ-ବର୍ଣ୍ଣନା ପ୍ରଭୃତି ଭଞ୍ଜକବିଙ୍କ ଋତୁ-ବର୍ଣ୍ଣନ-ଚାତୁର୍ଯ୍ୟର ସ୍ୱାକ୍ଷର ବହନ କରେ । ଅଲୋଚିତ ସନ୍ଧ୍ୟା-ତାରା-ଚନ୍ଦ୍ର-ଅନ୍ଧକାର ପ୍ରଭୃତି ବ୍ୟତୀତ ଅନ୍ୟ ଅନେକ ସ୍ଥଳରେ ଶ୍ରୀହର୍ଷ ଓ ଭଞ୍ଜକବିଙ୍କ ଭାବର ତୁଳନା କରାଯାଇପାରେ ।

**ହଂସ ପ୍ରସଙ୍ଗ :—**

ନୈଷଧ କାବ୍ୟରେ ନଳ ଓ ଦମୟନ୍ତୀଙ୍କ ପ୍ରଣୟ-ବାର୍ତ୍ତାବହ ରୂପରେ ହଂସର ଅବତାରଣା ପରିଦୃଷ୍ଟ ହୋଇଥାଏ । ଏହି ସ୍ୱର୍ଗସ୍ଥ ସ୍ୱର୍ଣ୍ଣହଂସ ରାଜା ନଳଙ୍କ ଦ୍ୱାରା ପ୍ରଥମେ ଧୃତ ଓ ପରେ ମୁକ୍ତ ହୋଇ ଉପକାର ସୁଝିବା ଉଦ୍ଦେଶ୍ୟରେ ଦମୟନ୍ତୀଙ୍କ ସମାଚାର ଜଣାଇଛି । ଉଭୟ ନାୟକ ଓ ନାୟିକାଙ୍କ ନିକଟରେ ପରସ୍ପରର ଅନୁରାଗ ବ୍ୟକ୍ତ କରି ଦୁହିଁଙ୍କ ପରିଣୟ ସମ୍ପାଦନରେ ହଂସର ମୁଖ୍ୟ ଭୂମିକା ରହିଛି । ଦେବଦୂତ ନଳ ଦମୟନ୍ତୀଙ୍କ ଅନ୍ତଃପୁରରେ ଆତ୍ମ-ପରିଚୟ ପ୍ରଦାନ ଯୋଗୁଁ ଆତ୍ମଗ୍ଲାନିରେ ମ୍ରିୟମାଣ ହେବା ବେଳରେ ଉପଯୁକ୍ତ ଅବସର ଜାଣି ହଂସ ଉପସ୍ଥିତ ହୋଇଛି ଓ ରାଜାଙ୍କ ଦୌତ୍ୟାଚରଣରେ ନିର୍ଦ୍ଦୋଷିତ୍ୱ ପ୍ରତିପାଦନ ପୂର୍ବକ ସାନ୍ତ୍ୱନା ପ୍ରଦାନ କରିଛି ।

ଉପେନ୍ଦ୍ର ଭଞ୍ଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନୈଷଧୀୟ ଶୈଳୀର ଅନୁରୂପରେ ହଂସ-ପ୍ରସଙ୍ଗ ଉପସ୍ଥାପନ କରିଥିବାର ପ୍ରତୀତ ହୁଏ ।

ଅନ୍ୟସ୍ଥଳରେ, ଶୁକ ଓ ଶାରୀ ମାଧ୍ୟମରେ ନାୟକ ପୁଷ୍ପକେତୁ ଓ ନାୟିକା କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ପ୍ରେମାନୁରାଗ ଅଭିବ୍ୟକ୍ତ ପ୍ରସଙ୍ଗରେ ଭଞ୍ଜକବି ପକ୍ଷୀମାନଙ୍କ ବାର୍ତ୍ତାବହତ୍ୱ-ଶକ୍ତି ବିଷୟରେ ସୂଚନା ଦେଇଛନ୍ତି । ରାଜପୁତ୍ର ପୁଷ୍ପକେତୁ ପକ୍ଷୀମାନଙ୍କ ଶକ୍ତି ସମ୍ପର୍କରେ ଭାବନା କରିବା ପ୍ରସଙ୍ଗରେ ଭଞ୍ଜକବି ନଳ-ଦମୟନ୍ତୀଙ୍କ ହଂସଦୂତର ଦୃଷ୍ଟାନ୍ତ ଉପସ୍ଥାପନ କରିଛନ୍ତି ।

"ମନେ ମନେ ଧ୍ୟାୟି ଯାଏ ସେହି ସେହି ଉକ୍ତି ।
ଯେନ ଲେ କି କଥା ଏ ପକ୍ଷୀଙ୍କ ଏତେ ଶକ୍ତି ଯେ ॥
ପୁଣି ଶୁଣିଲେ ଏ ବିଧି ପଢ଼ାଇବା ଖଗ ।
ହୋଇଥିଲେ ପୂର୍ବେ ହଂସଦୂତ ଅତି ଅଙ୍ଗ ଯେ ॥

॥ ଦୁଇଶହ ବତିଶ ॥

Digitized by PPRACHIN, SOA

ନଳ-ଦମୟନ୍ତୀ କାମଦେବ-ପ୍ରଭାବରୁ ।
ରାଜ-ରକ୍ଷପୁରରେ ମିଳି କରିଦେଲେ ପ୍ରୀତି ଯେ ॥
(କୋ· ୨୧/୪-୭)

ନୈଷଧରେ ହଂସ ଯେପରି ପରୋପକାରୀ, ବିଜ୍ଞ, ସତ୍ୟବାଦୀ, ବିନୟୀ, ମିଷ୍ଟଭାଷୀ ଓ ସୁଗୁଣ ସମ୍ପନ୍ନ ପ୍ରେମଦୂତ ହୋଇଛି, କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ମଧ୍ୟ ହଂସ ଚରିତ୍ରର ଅନୁରୂପ ପ୍ରମାଣ ଉପଲବ୍ଧ ହୋଇଥାଏ । ଭଞ୍ଜକବି ଶ୍ରୀହର୍ଷଙ୍କ ହଂସ ଦୂତକୁ ଆଖି ଆଗରେ ରଖି ନିଜ କାବ୍ୟରେ ଏକ ହଂସ ପ୍ରସଙ୍ଗର ସମାବେଶ କରିଥିବାର ଲକ୍ଷ୍ୟ କରାଯାଏ । ମାତ୍ର ଉଭୟ କାବ୍ୟରେ ହଂସର ଭୂମିକା ସ୍ୱତନ୍ତ୍ର ଭାବରେ ବିଦ୍ୟମାନ । ଭଞ୍ଜକବି ନୈଷଧୀୟ ଆଦର୍ଶରେ ସ୍ୱକୀୟ ମୌଳିକ ଛବି ଦର୍ଶାଇ ହଂସର ଚିତ୍ରଣ କରିଛନ୍ତି ।

## ବିବିଧ ଶାସ୍ତ୍ରର ସମନ୍ୱୟ :—

ଶ୍ରୀହର୍ଷଙ୍କ କୃତିର ଆଦର୍ଶରେ ଅନୁପ୍ରାଣିତ ଉପେନ୍ଦ୍ର ନୈଷଧ ସଦୃଶ ନିଜ କାବ୍ୟରେ ମଧ୍ୟ ପ୍ରସଙ୍ଗାନୁସାରେ ବିଭିନ୍ନ ଶାସ୍ତ୍ରର ଆବଶ୍ୟକ ଓ ସମୁଚିତ ବିଷୟ ଶ୍ଳେଷାଦି ମାଧ୍ୟମରେ ସଂଯୋଜନ କରିଛନ୍ତି ।

ନୈଷଧରେ, କାମଦେବଙ୍କ ଜନ୍ମ-ଜାତକର ମଙ୍ଗଳ-ଅଷ୍ଟବର୍ଗ ଲେଖା ପାଇଁ ଦମୟନ୍ତୀଙ୍କ ବିମ୍ବ-ପାଟଳ ଅଧର ଭୂର୍ଜପତ୍ର ରୂପରେ ଚିତ୍ରିତ ହୋଇଛି (ନୈ. ୯/୧୧୯) । ଉପେନ୍ଦ୍ରଙ୍କ କାବ୍ୟରେ ଜ୍ୟୋତିଷ ଶାସ୍ତ୍ରର ଅନେକ ସୂଚନା ଦେଖିବାକୁ ମିଳେ । ଯଥା, କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ବକ୍ଷୋଜରେ ଜ୍ୟୋତିଷ-ମତ ଷଡ଼ଗ୍ରହକୂଟର ସମାବେଶ (କୋ. ୮/୧୧) । ଶ୍ଳେଷ ମାଧ୍ୟମରେ ଗୁରୁ, ଶନି, ଶୁକ୍ର, ମଙ୍ଗଳ, ରାହୁ ଓ ଚନ୍ଦ୍ରଙ୍କର ଉଲ୍ଲେଖ ରହିଛି । ସୁନ୍ଦରୀର ସୌନ୍ଦର୍ଯ୍ୟରାଶି ଗ୍ରହଚକ୍ରର ଦ୍ୱାଦଶ ରାଶି ସହିତ ତୁଳିତ ହୋଇଛି । ସୁନ୍ଦରୀର ମୁକ୍ତାମାଳ ନକ୍ଷତ୍ରମାଳ ପରି ଶୋଭିତ(କୋ.୧୨/୧୭) । ଶ୍ରବଣାନକ୍ଷତ୍ର ପୁଞ୍ଜର ତିନିଗୋଟି ନକ୍ଷତ୍ର ପରି ଅଚ୍ୟୁତ, ଉପାଧ୍ୟାୟୀ ଓ ପୋଟା ବିରାଜିତ (କୋ· ୧୫/୧୫) । ପୁନଶ୍ଚ, ମେଷ ବୃଷାଦି ଦ୍ୱାଦଶ ରାଶିର ନାମ ସଂଯୋଜନାରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ସୌନ୍ଦର୍ଯ୍ୟ ବର୍ଣ୍ଣିତ (କୋ. ୨୭/୯-୧୧) ।

ସାହିତ୍ୟ ଶାସ୍ତ୍ରର ତତ୍ତ୍ୱରାଶି ଉଭୟ କବିଙ୍କ କାବ୍ୟରେ ନିହିତ । ନୈଷଧର ନବମ ସର୍ଗରେ ଧ୍ୱନିର ସ୍ୱତନ୍ତ୍ର ଉଲ୍ଲେଖ ରହିଛି । ବିଦଗ୍ଧ-ନାରୀର ବଦନ ଧ୍ୱନିର ଆଧାର ରୂପେ ଚିତ୍ରିତ । ଧ୍ୱନିକାବ୍ୟ ଓ କାକୁବକ୍ରୋକ୍ତିର ସୂଚନା ଦମୟନ୍ତୀଙ୍କ ମୁଖରେ ପ୍ରଦତ୍ତ ହୋଇଛି (ନୈ. ୯/୫୦) । ଏହାଛଡ଼ା ବିନ୍ଦୁଚ୍ୟୁତକ-ଗୂଢ଼ୋକ୍ତି ମଧ୍ୟ ଅଶ୍ରୁବିନ୍ଦୁ ପତନ ପ୍ରସଙ୍ଗରେ ସୂଚିତ (ନୈ. ୯/୧୦୪) । ଉପେନ୍ଦ୍ରଙ୍କ କାବ୍ୟର



Digitized by PPRACHIN, SOA

ବସ୍ତୁସ୍ଥଳେ ଅଳଂକାର, ଧ୍ୱନି, ଲୁପ୍ତବର୍ଣ୍ଣ ଆଦିର ସୂଚନା ରହିଛି । କବି ପ୍ରସଙ୍ଗକ୍ରମେ ଅଷ୍ଟ ଲକ୍ଷଣା ନାୟିକାର ଉଲ୍ଲେଖ କରିଛନ୍ତି । ଏଥିରେ ମୁଗ୍ଧା, ବିପ୍ରଲବ୍ଧା, ଅଭିସାରିକା, ବିରହୋତ୍କଣ୍ଠିତା, କଳହାନ୍ତରିତା, ଖଣ୍ଡିତା, ସ୍ୱାଧୀନ-ଭର୍ତ୍ତୃକା ଓ ବାସକସଜ୍ଜା ରମଣୀର ବିଷୟ ଉଲ୍ଲିଖିତ (କୋ. ୨୭/୫୨-୫୭) ନୈଷଧରେ ସାହିତ୍ୟଶାସ୍ତ୍ର ଓ କାମଶାସ୍ତ୍ରଗତ ବିଷୟ ବହୁଧାବର୍ଣ୍ଣିତ । ଶୃଙ୍ଗାରର ପ୍ରାଧାନ୍ୟ ଯୋଗୁଁ ବିଭିନ୍ନ କାମକଳା, କାମଦଶା ଆଦି ବିଶେଷ ସ୍ଥାନ ଅଧିକାର କରିଛି । ନୈଷଧରେ ଦମୟନ୍ତୀଙ୍କ ବିରହ ଓ କାମଦଶା ବର୍ଣ୍ଣନା ସହ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ସୁନ୍ଦରୀର ବିଭିନ୍ନ ମନୋଭାବର ଆଲେଖ୍ୟ ରହିଛି । ଅଷ୍ଟ ସାତ୍ତ୍ୱିକ ଭାବ ସୁନ୍ଦରୀଙ୍କ ବିରହ ପ୍ରସଙ୍ଗରେ ଅଷ୍ଟାଦଶ ଛାନ୍ଦରେ ବର୍ଣ୍ଣିତ । ସ୍ତମ୍ଭ, ବୈବର୍ଣ୍ଣ୍ୟ, ରୋମାଞ୍ଚ, କମ୍ପ, ସ୍ୱେଦ, ଅଶ୍ରୁ, ସ୍ୱରଭଙ୍ଗ ଓ ପ୍ରଳୟ ଏଥିରେ ଗର୍ଭିତ । ଊନବିଂଶ ଛାନ୍ଦରେ ପୁଷ୍ପକେତୁର କାମଦଶା ବର୍ଣ୍ଣନା ପ୍ରସଙ୍ଗରେ ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକୀର୍ତ୍ତନ, ଉଦ୍‌ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି ଆଦି ଦଶା ସୂଚିତ ।

ନୈଷଧର ନବମ ସର୍ଗରେ ଦମୟନ୍ତୀ ରୋମାବଳୀ-ସୂତ୍ରଧାରିଣୀ ମନ୍ମଥ-ନାଟିକା ଭାବରେ ଚର୍ଚ୍ଚିତା । କବି ଶ୍ରୀହର୍ଷ ସୂତ୍ରଧାର, ନାୟକ, ବିଦୂଷକ ଆଦି ନାଟ୍ୟ ଶାସ୍ତ୍ରଗତ ଶବ୍ଦରାଶି ନେଇ ନାଟିକା ଓ ଦମୟନ୍ତୀଙ୍କ ସାମ୍ୟ ପ୍ରଦର୍ଶନ କରିଛନ୍ତି (ନୈ' ୯/୧୧୮) । ଉପେନ୍ଦ୍ରଙ୍କ କାବ୍ୟରେ ନାଟ୍ୟ ଓ ସଂଗୀତଶାସ୍ତ୍ରର କିଛି ସୂଚନା ମିଳିଥାଏ । ନାଟ୍ୟ ଶାସ୍ତ୍ରଗତ ନାନ୍ଦୀ, ସଙ୍ଗୀତ ଶାସ୍ତ୍ରଗତ ସ୍ୱର ଓ ମାତ୍ରା ଆଦିର ଉଲ୍ଲେଖ ଏକବିଂଶ ଛାନ୍ଦରେ ରହିଛି ।

ନୈଷଧରେ ଯୋଗଶାସ୍ତ୍ରର କେତେକ ଭାବ ପ୍ରକଟିତ । ବିଦର୍ଭ-ଦେଶର ରାଜଧାନୀ କୁଣ୍ଡିନପୁରୀ ଯୋଗିନୀ ରୂପରେ ବର୍ଣ୍ଣିତ ହୋଇଛି (ନୈ. ୨/୭୮) । ଯୋଗସିଦ୍ଧି ମଧ୍ୟରେ ଆକାଶ ଗମନ (ନୈ ୫/୩', ବଶୀକାର (ନୈ. ୫/୪-୫) ଆଦି ସୂଚିତ । ଅଦୃଶ୍ୟ ଭବନ, କାୟବ୍ୟୂହ ରଚନ ଓ ପରକାୟ ପ୍ରବେଶ ପ୍ରସଙ୍ଗରେ ରାଜା ନଳ ଯୋଗୀ ତୁଲ୍ୟ ଚର୍ଚ୍ଚିତ (ନୈ ୬/୪୭) । ଉପେନ୍ଦ୍ରଙ୍କ କାବ୍ୟରେ ସୁନ୍ଦରୀର ସୌନ୍ଦର୍ଯ୍ୟ ପ୍ରସଙ୍ଗରେ ଶ୍ଳେଷ ମାଧ୍ୟମରେ ଯୋଗ ଐଶ୍ୱର୍ଯ୍ୟର ସୂଚନା ରହିଛି । ସୁନ୍ଦରୀ ଅଷ୍ଟ-ଐଶ୍ୱର୍ଯ୍ୟମୟୀ ରୂପରେ ବର୍ଣ୍ଣିତା (କୋ· ୧୩/୨') । ଏହା ବ୍ୟତୀତ ସୁନ୍ଦରୀ ଅଷ୍ଟନିଧିମୟୀ ବା ମଣିମୟୀ ଭାବରେ ଶ୍ଳେଷରେ ଚର୍ଚ୍ଚିତା (କୋ. ୧୩/୨୦) । ନର୍ମଦା, ସୁରତରଙ୍ଗିଣୀ, କାଳିନ୍ଦୀ, କୃଷ୍ଣବେଣୀ, ଚନ୍ଦ୍ରଭାଗା, ଚିତ୍ରୋତ୍ପଳା, ସରସ୍ୱତୀ, ରେବା, ବାହୁଦା ଆଦି ଶବ୍ଦର ସମାବେଶରେ ସୁନ୍ଦରୀଙ୍କୁ ନଦୀମୟୀ ବା ତୀର୍ଥମୟୀ ଭାବରେ କବି ସଜାଇଛନ୍ତି (କୋ. ୧୫/୧୦-୧୧) । କାବ୍ୟର ପ୍ରସଙ୍ଗାନୁସାରେ ଅନ୍ୟାନ୍ୟ ଶାସ୍ତ୍ର ସୂଚନା ସୁଧୀଜନଗ୍ରାହ୍ୟ ।

॥ ଦୁଇଶହ ଚଉଦତରଶ ॥

Digitized by PPRACHIN, SOA

ନୈଷଧର ବିଭିନ୍ନ ସ୍ଥଳେ ପୌରାଣିକ ଓ ଐତିହାସିକ କଥାବଳୀର ସନ୍ନିବେଶ କାବ୍ୟ ସୌନ୍ଦର୍ଯ୍ୟର ବର୍ଦ୍ଧକ ହେବା ସଙ୍ଗେ ଶ୍ରୀହର୍ଷଙ୍କ ବ୍ୟାପକ ଜ୍ଞାନର ସୂଚକ ହୋଇପାରିଛି । ଶ୍ରୀହର୍ଷ କେତେକ ଅପ୍ରଚଳିତ କଥା ମଧ୍ୟ ସୃଷ୍ଟି କରିଛନ୍ତି । ସ୍ଥଳବିଶେଷରେ ଅପରିଚିତ ଓ ଅପ୍ରଚଳିତ କଥାର ଉଲ୍ଲେଖ କବିଙ୍କ କାବ୍ୟ-ନିପୁଣତାର ପରିଚାୟକ । ମଦନଭସ୍ମ, ତ୍ରିପୁରାସୁର ବଧ, ଅନିରୁଦ୍ଧ ଜନ୍ମ, ତ୍ରିପୁର ଦହନ, ମୈନାକ ପର୍ବତର ସମୁଦ୍ରବାସ, ପ୍ରଳୟରେ ମାର୍କଣ୍ଡେୟ ମୁନିଙ୍କ ବିଷ୍ଣୁ ଗର୍ଭରେ ପ୍ରବେଶ, ବିଷ୍ଣୁଙ୍କ ଦଶାବତାର, ଅଗସ୍ତି ମୁନିଙ୍କ ସାଗର-ଶୋଷଣ, ଜରାସନ୍ଧ ଜନ୍ମ, ଅନ୍ଧକାସୁର ବଧ, ଦଧୀଚିଙ୍କ ଅସ୍ଥିଦାନ, ପୃଥୁଚରିତ, ସାମ୍ବ ଚରିତ, ପାରିଜାତ ହରଣ, କଚଙ୍କୁ ଶୁକ୍ରଙ୍କ ସଞ୍ଜୀବନୀ ମନ୍ତ୍ର ପ୍ରଦାନ, ବିଶ୍ୱାମିତ୍ରଙ୍କ ଦ୍ୱାରା ତ୍ରିଶଙ୍କୁ ରାଜାଙ୍କ ସଶରୀର ସ୍ୱର୍ଗପ୍ରେରଣ, ବାଲ୍ମୀକିଙ୍କ ଆଦିଶ୍ଳୋକ ସ୍ଫୁରଣ, ଇନ୍ଦ୍ର-ଅହଲ୍ୟା କଥା, ବ୍ୟାସ ଜନ୍ମ, ଅଗସ୍ତିଙ୍କ ବଚନରେ ବିନ୍ଧ୍ୟପର୍ବତର ନମ୍ରଗତି ଓ ଅଚଳ ଅବସ୍ଥାନ, ପରଶୁରାମଙ୍କ ଦ୍ୱାରା କ୍ଷତ୍ରିୟ-ଧ୍ୱଂସ, ଦାରୁବନରେ ଶମ୍ଭୁ-ବିଳାପ, ସୂର୍ଯ୍ୟ ଦ୍ୱାରା ମନ୍ଦେହ-ରାକ୍ଷସଗଣଙ୍କ ଦୈନନ୍ଦିନ ପରାଜୟ ଓ ଅନ୍ୟ ଅନେକ ଆଖ୍ୟାନ ପ୍ରସଙ୍ଗାନୁକୂଳ ଭାବରେ ପରିବେଷିତ ହୋଇଛି ।

ଉପେନ୍ଦ୍ରଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ମଧ୍ୟ ବିବିଧ ଆଖ୍ୟାନର ସମାବେଶ ରହିଛି । ରାମାୟଣ ଓ ମହାଭାରତରେ କାହାଣୀମାନ ଶ୍ଳେଷ ମାଧ୍ୟମରେ ଖଚିତ । ରାଜପୁତ୍ର ଦୁଷ୍ଟକେତୁବନ୍ଧୁଙ୍କର ଦଶାବତାର ରୂପରେ ବର୍ଣ୍ଣିତ (କୋ. ୧୬/୧୮) । ସୁନ୍ଦରୀଠାରେ ରାମାୟଣ କଥା (୩/୧୫-୧୭) ଓ ମହାଭାରତ କଥା (୩/୧୮-୨୯) ର ଶ୍ଳେଷାତ୍ମକ ସଂଯୋଜନ ହୃଦୟଗ୍ରାହୀ ହୋଇଛି । ତଦ୍ରୂପ ଯାଦବ ରାମ ଓ କୃଷ୍ଣଙ୍କ ସାମ୍ୟ ପ୍ରଦର୍ଶିତ ହରିବଂଶ ଗ୍ରନ୍ଥରେ । ଶ୍ରୀହରି-ଉଦରରେ ମାର୍କଣ୍ଡେୟ ଦ୍ୱାରା ତ୍ରିଭୁବନ ଦର୍ଶନ (୨/୨୧), ବିରାଟ ଗୋଧନ ହରଣ ବେଳେ ଅର୍ଜୁନ-ଶରରେ ଭୀଷ୍ମ-ସମ୍ମୋହନ (୭/୯), କୁବ୍ଜା-ତାରଣ (୮/୮ ଏବଂ ୧୬/୧୩), ବିଶ୍ୱାମିତ୍ରଙ୍କ ତପୋଭଙ୍ଗ (୧୧/୨୩), ପୂତନା-ମର୍ଦ୍ଦନ (୧୦/୨୩), ସମୁଦ୍ର ମନ୍ଥନ (୨୧/୯ ଓ ୨୪/୧୦), ଭଗୀରଥଙ୍କ ଗଙ୍ଗାଆନୟନ (୨୨/୫), ରାବଣର ମସ୍ତକଚ୍ଛେଦୀ ତପସ୍ୟା (୨୨/୭), ବଳୀର ପାତାଳ ଗମନ (୨୪/୧୨), ଗଣେଶଙ୍କ ଗଜମସ୍ତକ ଧାରଣ (୨୪/୨୨), ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା (୨୬/୧୦), ଅହଲ୍ୟା ଉଦ୍ଧାର (୨୬/୧୨ ଓ ୨୯/୩୧), ଜଟାୟୁ-ତାରଣ (୨୬/୧୨), ମହାଭାରତ ଯୁଦ୍ଧରେ ଶିଖଣ୍ଡୀ ଆଗରେ ଭୀଷ୍ମଙ୍କ ଧନୁତ୍ୟାଗ (୨୭/୬୬), ପୁରାଣକର୍ତ୍ତା ବ୍ୟାସ (୨୭/୫), ଶିବଧନୁଭଙ୍ଗ (୨୭/୬), ବିଷ୍ଣୁଙ୍କ ମୋହିନୀରୂପ ଧାରଣ, ରାହୁ ଶିର ଛେଦନ, ଇନ୍ଦ୍ରଙ୍କ ଅଦିତି ଗର୍ଭରେ ପବନକୁ ଖଣ୍ଡଖଣ୍ଡ କରଣ (୨୭/୭), ଅଗସ୍ତିଙ୍କ ସମୁଦ୍ର-ଶୋଷଣ, ବିନ୍ଧ୍ୟପର୍ବତର ଉଚ୍ଚତା-ରୋଧ ଓ ଅଗସ୍ତିଙ୍କ



Digitized by PPRACHIN, SOA

ଦକ୍ଷିଣ ଗମନ (୧୭/୪), ରାଧାକୃଷ୍ଣ ପ୍ରେମ (୧୭/୨୨), କର୍ଣ୍ଣାର୍ଜୁନ-ଯୁଦ୍ଧ (୨୧/୨), ସୀତାଙ୍କ ସ୍ୱୟମ୍ବର ଓ ଧନୁର୍ଭଙ୍ଗ (୨୧/୨୦), ଅର୍ଜୁନଙ୍କ ସୁଭଦ୍ରାମୋହନ (୩୨/୨୪) ଜରାସନ୍ଧର ବାଣମୃଗ ଯୁଦ୍ଧ ଯାତ୍ରା (୩୫/୫)ଆଦି ବିବିଧ ପୌରାଣିକ କଥାର ମଞ୍ଜୁଳ ସଂଯୋଜନାରେ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ ମଣ୍ଡିତ ହୋଇଛି ।

ନୈଷଧରେ ସାମଦାନଦଣ୍ଡ ଭେଦାଦି ରାଜନୀତି ବର୍ଣ୍ଣନ, ସାମୁଦ୍ରିକ ଶାସ୍ତ୍ର, ଧନୁର୍ବେଦ, ସଙ୍ଗୀତ ଶାସ୍ତ୍ର, ମନ୍ତ୍ରତନ୍ତ୍ର, ଚତୁଃଷଷ୍ଟିକଳା, ଅଶ୍ୱ ଲକ୍ଷଣ, ପାକ-ଶାସ୍ତ୍ର, ଚିତ୍ରକଳା, ମାଣିକ୍ୟ ଜ୍ଞାନ, ପକ୍ଷୀ ବିଜ୍ଞାନ ପ୍ରଭୃତି ବିଷୟ ସ୍ଥିତ । ଉପେନ୍ଦ୍ରଙ୍କ କାବ୍ୟରେ ମଧ୍ୟ ଏ ବିଷୟମାନ ଭୂରି ଅଧିକ ସଂକେତିତ । ଶ୍ରୀହର୍ଷଙ୍କ ଆଦର୍ଶକୁ ସମ୍ମୁଖରେ ରଖି କବିସମ୍ରାଟ୍ ଉପେନ୍ଦ୍ର ବିଭିନ୍ନ ଆଖ୍ୟାନ ମାଧ୍ୟମରେ କାବ୍ୟ ବର୍ଣ୍ଣିତ ତଥ୍ୟାବଳୀର ପୁଷ୍ଟିସାଧନ କରିଛନ୍ତି । କେତେକ ସ୍ଥଳେ ସେ ନୈଷଧରେ ବର୍ଣ୍ଣିତ ଆଖ୍ୟାନକୁ ଉପକାବ୍ୟ କରି ନିଜ କାବ୍ୟରେ ସ୍ଥାନ ଦେଇଛନ୍ତି । ତା'ସହିତ ଅନ୍ୟାନ୍ୟ ଅନେକ କାହାଣୀ-ସଂଯୋଜନା କରି, ଶ୍ରୀହର୍ଷଙ୍କ ପରି ନିଜ ବହୁ ଶାସ୍ତ୍ରଜ୍ଞତା, ବିଦଗ୍ଧତା ଓ କାବ୍ୟ-କୁଶଳତାର ପରିଚୟ ପ୍ରଦାନ କରିଛନ୍ତି ।

**ଉପସଂହାର :—**

ଉପର୍ଯ୍ୟୁକ୍ତ କେତେକ ମୁଖ୍ୟ ଦିଗର ଆଲୋଚନାରୁ ସ୍ପଷ୍ଟ ପରିଲକ୍ଷିତ ହୁଏ ଯେ ଭଞ୍ଜକବି ନୈଷଧୀୟ ଶୈଳୀର ଅନୁବର୍ତ୍ତନ ଦ୍ୱାରା ସ୍ୱୀୟ ଓଡ଼ିଆ କାବ୍ୟରେ ସ୍ଥଳବିଶେଷରେ ସଂସ୍କୃତ କବିଙ୍କ ଭାବର ସଂଯୋଜନା କରିଛନ୍ତି ଓ ତାହା ସଙ୍ଗେ କଳ୍ପନାଦି ଦୃଷ୍ଟିରୁ ମୌଳିକତାର ସମାବେଶ ମଧ୍ୟ କରିଛନ୍ତି । ନୈଷଧ-ମହାକାବ୍ୟର ଆଦର୍ଶ କେବଳ କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟରେ ନୁହେଁ, ଭଞ୍ଜକବିଙ୍କ ଲାବଣ୍ୟବତୀ, ସୁଭଦ୍ରାପରିଣୟ, ବୈଦେହୀଶ ବିଳାସ ଆଦି ଅନ୍ୟ ପ୍ରମୁଖ କାବ୍ୟମାନଙ୍କରେ ମଧ୍ୟ କେତେକାଂଶରେ ଗୃହୀତ । ସଂସ୍କୃତର କାବ୍ୟାଦର୍ଶ ସଙ୍ଗେ ଉତ୍କଳୀୟ ସଂସ୍କୃତିର ସମନ୍ୱୟ ସାଧନ କରି ଓଡ଼ିଆ ଜାତି, ଭାଷା, ସଂସ୍କୃତି ଓ ପରମ୍ପରାର ମର୍ଯ୍ୟାଦା ପ୍ରଦର୍ଶିତ କରିଛନ୍ତି । ସେ ସଂସ୍କୃତ କାବ୍ୟ ଭଳି ଓଡ଼ିଆ କାବ୍ୟ ରଚନାକରି ଓଡ଼ିଆ ଭାଷାକୁ ଏକ ସମୃଦ୍ଧ ଭାଷା ରୂପରେ ଭାରତୀୟ ସାହିତ୍ୟରେ ପରିଚିତ କରାଇବା ଲାଗି ଭଞ୍ଜକବିଙ୍କ ସାହିତ୍ୟିକ ଅବଦାନ ଚିରସ୍ମରଣୀୟ ।



ଅଧ୍ୟାପକ, ସଂସ୍କୃତ ବିଭାଗ
ପଞ୍ଚାୟତ ମହାବିଦ୍ୟାଳୟ
ବରଗଡ଼, ଜି: ସମ୍ବଲପୁର ।

॥ ଦୁଇଶହ ଛତିଶ ॥

Digitized by PPRACHIN, SOA

"ରଚିଲ କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ' ଚରିତ
ସୁକାନ୍ତି ସୁମନା ପରି ହୋଇଲ ଏ ଗୀତ ହେ
ସୁରଭିରେ ମୋହିତ ମାନସ ହେବେ ଭବ୍ୟ
ଗୁଣବନ୍ତ ହୃଦେ ମାଳା କରିଣ ଧରିବେ ହେ"

—କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ :
ପ୍ରଥମ ଛନ୍ଦ ଏକଷଠୀ ପଦ ।

"ଏତ ପରକୃତ କାବ୍ୟ ଛନ୍ଦ ହାନି ସତ
ଦୃଷ୍ଟ ଦୃଷ୍ଟାନ୍ତର ଏଥି ଅଛି ବିଶେଷ ତ
ଯେସନ ନୈଷଧ ପଦ୍ୟେ
ଉପଇନ୍ଦ୍ର କହେ ବୁଧ ପ୍ରମୋଦ କରଏ" ।

—କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ
ଏକାଦଶ ଛାନ୍ଦ ଏକତ୍ରିଂଶ ପଦ ।

ତରଣୀ କୂଳଉ ସାର
ଆଶ୍ରୟରୁ ନିରନ୍ତର
କହେ ଉପଇନ୍ଦ୍ର, ଲଙ୍ଘି ମୁଁ ଲଭିଛି
ଶବଦ ସମୁଦ୍ର ପାର ।"

କୋ. ବ୍ର. ସୁନ୍ଦରୀ :
ଚତୁର୍ଦ୍ଦଶ ଛାନ୍ଦ ଅଷ୍ଟବିଂଶ ପଦ ।

Digitized by PPRACHIN, SOA

*With best compliments from :*

# M/s. L. PALO & SONS

**Phone : 72**

**PALO COLONY**

**BHANJANAGAR : GANJAM**

Pin-761126

**KIRLOSKAR**

Distributor & Govt. Order Supplier
Industrial & Agricultural Machinaries



ଓଡ଼ିଶାର ଅଗଣିତ ଗ୍ରାହକଙ୍କୁ ଆମର
ଶୁଭ ଅଭିନନ୍ଦନ

## ମେସର୍ସ ଏଲ୍ ପାଳ ଏଣ୍ଡ ସନ୍ସ

ଫୋନ୍—୭୨

**କିର୍ଲୋସ୍କାର**

ଡ଼ିଷ୍ଟ୍ରିବ୍ୟୁଟର୍, ଓ ଗଭର୍ଣ୍ଣମେଣ୍ଟ୍ ଅର୍ଡ଼ର ସପ୍ଲାୟାର୍
ଶିଳ୍ପ ଓ କୃଷି ଯନ୍ତ୍ରପାତିର ନିର୍ଭରଯୋଗ୍ୟ ଏବଂ ବିଶ୍ୱସ୍ତ ଅନୁଷ୍ଠାନ
ପାଲ କଲୋନୀ : ଭଂଜନଗର-୭୬୧୧୨୬ : ଗଞ୍ଜାମ



ଭଂଜ ଯୁବ ସାହିତ୍ୟ ସଂସଦ ତରଫରୁ ଶ୍ରୀ ଏ. ବିଶ୍ୱନାଥ ପାତ୍ରଙ୍କ
ଦ୍ୱାରା ପ୍ରକାଶିତ ଏବଂ ବ୍ରହ୍ମପୁର ଭାରତ ପ୍ରେସରେ ମୁଦ୍ରିତ ।

ମୂଲ୍ୟ—ଦଶ ଟଙ୍କା

ସଂପାଦକ—ନିଶାକର ପାଢ଼ୀ


Digitized by PPRACHIN, SOA